# ଉତ୍କଳ ପ୍ରସଙ୍ଗ

The Utkal Prasanga

December- 2018

୭୫ ଭାଗ ୫ମ ସଂଖ୍ୟା ମାର୍ଗଶିର–ପୌଷ ଡିସେମ୍ବର – ୨୦୧୮

**ସଂଜୟ କୁମାର ସିଂ,** ଆଇ.ଏ.ଏସ୍
କମିଶନର ତଥା ଶାସନ ସଚିବ

**ଲକ୍ଷ୍ମୀଧର ମହାନ୍ତି,** ଓ.ଏ.ଏସ୍.
ନିର୍ଦ୍ଦେଶକ

**ଡ. ଲେନିନ୍ ମହାନ୍ତି**
ସମ୍ପାଦକ
(ଭାରପ୍ରାପ୍ତ)

ସମ୍ପାଦନା ସହଯୋଗୀ
**ଗୋବିନ୍ଦ ଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ–ଆଉଟ୍ ଡିଜାଇନିଂ
**ମାନସ ନାୟକ**

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ
**ହେମନ୍ତ କୁମାର ସାହୁ**
**ସୁମିତ୍ରା କର**

ଫଟୋ :
**କିଶୋର କୁମାର ସିହ୍ନା, ରାଜୁ ସିଂ**
**ମନୋରଂଜନ ମହାନ୍ତି, ନିରଞ୍ଜନ ବରାଳ**


---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।


ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧



ପ୍ରତିଖଣ୍ଡ : ଟ. ୫.୦୦




ଡିସେମ୍ବର – ୨୦୧୮








ବର୍ଷଟିଏ ଆସେ ଓ ଯାଏ । ନୂତନତ୍ୱ ଥାଏ କିନ୍ତୁ ପରିବର୍ତ୍ତନରେ । ଏହି ପରିବର୍ତ୍ତନ ସକାରାତ୍ମକ ହେଲେ ଦୁନିଆ ଆଲୋକିତ ହୁଏ । ଜଗତର ନାଥ ଜଗନ୍ନାଥଙ୍କ ଅପାର କରୁଣାରୁ ୨୦୧୮ ବର୍ଷଟି ରାଜ୍ୟ ଓ ରାଜ୍ୟବାସୀଙ୍କ ନିମନ୍ତେ ଏକ ସଫଳତମ ବର୍ଷ ସାବ୍ୟସ୍ତ ହୋଇଛି । ଜାତୀୟ ସ୍ତର ସହ ତାଳ ଦେଇ ତଥା ସ୍ଥଳବିଶେଷରେ ଆମ ରାଜ୍ୟ କେତେକ କ୍ଷେତ୍ରରେ ଅଗ୍ରଣୀ ହୋଇପାରିଛି । ସମଗ୍ର ଓଡ଼ିଶାବାସୀଙ୍କ ଆଶା ଓ ଆଶ୍ୱାସନାର କେନ୍ଦ୍ରବିନ୍ଦୁ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦିଗ୍‌ଦର୍ଶନକ୍ରମେ ୨୦୧୮ ବର୍ଷରେ ସକାରାତ୍ମକ ଦୃଷ୍ଟିଭଙ୍ଗୀ ସହ ଅନେକ କାର୍ଯ୍ୟକ୍ରମ ସଫଳତା ପୂର୍ବକ ରୂପାୟିତ ହୋଇପାରିଛି ।

ରାଜ୍ୟ ସରକାରଙ୍କ ମାସିକ ପତ୍ରିକା 'ଉତ୍କଳ ପ୍ରସଙ୍ଗ' ପ୍ରକାଶନ ଦିଗରେ ନିରବଚ୍ଛିନ୍ନ ଆନ୍ତରିକ ସହଯୋଗ ନିମନ୍ତେ ଏହି ନବବର୍ଷ ଅବସରରେ ଆମେ ମାନ୍ୟବର ମନ୍ତ୍ରୀ ଶ୍ରୀ ପ୍ରତାପ ଜେନା, କମିଶନର ତଥା ଶାସନ ସଚିବ ଶ୍ରୀ ସଂଜୟ କୁମାର ସିଂ, ନିର୍ଦ୍ଦେଶକ ଶ୍ରୀ ଲକ୍ଷ୍ମୀଧର ମହାନ୍ତି ଏବଂ ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ନିରଞ୍ଜନ ସେଠୀଙ୍କ ନିକଟରେ ଚିର ଋଣୀ ।

ଉତ୍କଳ ପ୍ରସଙ୍ଗରେ ଥିବା ମୋର ସହଯୋଗୀ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମଲ୍ଲିକ, ଶ୍ରୀ ସଚ୍ଚିଦାନନ୍ଦ ବାରିକ, ଶ୍ରୀମତୀ ସୁମିତ୍ରା କର ଏବଂ ଶ୍ରୀ ଅମୂଲ୍ୟ ଚନ୍ଦ୍ର ସେଠୀଙ୍କ କର୍ତ୍ତବ୍ୟପରାୟଣତା ନିମନ୍ତେ ସେମାନଙ୍କୁ ମୁଁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଉକ୍ତ ପତ୍ରିକା ପ୍ରକାଶନରେ ସହାୟତାର ହସ୍ତ ପ୍ରସାର କରିଥିବା ବିଭାଗର ଫଟୋ ଶାଖା ଓ ପ୍ରକାଶନ ପରିଚାଳକଙ୍କ ସହ କଟକସ୍ଥିତ ଓଡ଼ିଶା ସରକାରୀ ମୁଦ୍ରଣାଳୟର ନିର୍ଦ୍ଦେଶକ, ଉପ ନିର୍ଦ୍ଦେଶକ, ସହକାରୀ ନିର୍ଦ୍ଦେଶକ ଏବଂ ସମସ୍ତ କର୍ମଚାରୀଙ୍କୁ ନୂତନ ବର୍ଷ ଅବସରରେ ଅଭିନନ୍ଦନ ଜଣାଉଛି ।

## ଉତ୍କଳ ପ୍ରସଙ୍ଗ ପରିବାର

ଏହାର ସମସ୍ତ ଲେଖକ/ଲେଖିକା, ପାଠକ/ପାଠିକା ଓ ପୃଷ୍ଠପୋଷକମାନଙ୍କୁ
ନବବର୍ଷ ୨୦୧୯ ଉପଲକ୍ଷେ ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।
ନବବର୍ଷ ସମସ୍ତଙ୍କ ପାଇଁ ସୁଖ ଓ ସମୃଦ୍ଧିର ବର୍ଷ ହେଉ, ଏତିକି କାମନା ।




# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି





ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ



# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର





# ସୁନ୍ଦର ଜାଗା, ଭଲ ଲୋକ

**ନବୀନ ପଟ୍ଟନାୟକ**



ଗତ କେତେ ସପ୍ତାହ ଧରି ଓଡ଼ିଶା ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ତଥା ପ୍ରସିଦ୍ଧ ଅନେକ ବ୍ୟକ୍ତିଙ୍କୁ ଆତିଥେୟତା ପ୍ରଦାନ କରିଛି । ଭୁବନେଶ୍ୱରରେ ଅନୁଷ୍ଠିତ ମେକ୍-ଇନ୍-ଓଡ଼ିଶା କାର୍ଯ୍ୟକ୍ରମରେ ବିଶିଷ୍ଟ ଭାରତୀୟ ଶିଳ୍ପପତିମାନେ ଏକାଠି ହୋଇଥିଲେ । ସେହିପରି ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନ, ବିଶ୍ୱ ପ୍ରସିଦ୍ଧ କଳାକାର, ସାଂସ୍କୃତିକ ତଥା କ୍ରୀଡ଼ା ଜଗତର ଖ୍ୟାତନାମା ବ୍ୟକ୍ତିତ୍ୱ, ବିଭିନ୍ନ ଦେଶର ରାଷ୍ଟ୍ରଦୂତ, ୧୬ଟି ଦେଶର ଖେଳାଳି, କର୍ମକର୍ତ୍ତା ତଥା ଉଚ୍ଚ ପଦାଧିକାରୀମାନେ ମଧ୍ୟ ଏହି ସମୟରେ ଓଡ଼ିଶା ଭ୍ରମଣରେ ଆସିଛନ୍ତି । ନିକଟରେ ସ୍ମାର୍ଟ ସିଟି ଭୁବନେଶ୍ୱରରେ ଏକ ବର୍ଣ୍ଣାଢ଼୍ୟ ପରିବେଶରେ ଉଦ୍‌ଘାଟିତ ପୁରୁଷ ହକି ବିଶ୍ୱ କପ୍ ସଫଳତାର ସହ ଶେଷ ହୋଇଛି । ଏସବୁ କାର୍ଯ୍ୟକ୍ରମ ମଧ୍ୟରେ ମୁଁ ଓଡ଼ିଶା ତରଫରୁ ଏହି ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଯେତେବେଳେ ଭେଟିଛି, ସେତେବେଳେ ସମସ୍ତଙ୍କ ମୁହଁରେ ଗୋଟିଏ କଥା ବାରମ୍ବାର ପ୍ରତିଧ୍ୱନିତ ହୋଇଛି, 'କେତେ ସୁନ୍ଦର ଏ ଜାଗା, କେତେ ଭଲ ଲୋକ ।' ଘନ ଅରଣ୍ୟାନୀ, ସ୍ନିଗ୍ଧ, ମନୋରମ ବେଳାଭୂମି ଏବଂ କାଳଜୟୀ କୀର୍ତ୍ତିରାଜିରେ ବିମଣ୍ଡିତ ଓଡ଼ିଶା ବାସ୍ତବିକ ଧରାପୃଷ୍ଠରେ ଏକ ସୁନ୍ଦର ଭୂମି– ବାସ୍ତବିକ ଏହା ଈଶ୍ୱରଙ୍କର ଉପହାର । ତା' ସହିତ ଓଡ଼ିଆ ଜାତିର ଭଲପଣିଆ... ଏହା ମୋତେ ଭାବପ୍ରବଣ କରିଦେଇଛି ।

ଭଲ ଲୋକଙ୍କ ସାନ୍ନିଧ୍ୟ ସବୁବେଳେ ଉତ୍ସାହପ୍ରଦ । ଏହା ଏକ ଅନନ୍ୟ ଅନୁଭବ । ଭଲପଣ ମଣିଷକୁ ସହଜ କରିବା ସହିତ ବ୍ୟକ୍ତି ଭିତରେ ଥିବା ସର୍ବୋତ୍କୃଷ୍ଟ ଗୁଣକୁ ପ୍ରକାଶ କରିବା ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଥାଏ । ଓଡ଼ିଶା ଆସୁଥିବା ଲୋକମାନେ ଆମର ଭଲ ଗୁଣ ଦ୍ୱାରା ଏତେ ଗଭୀର ଭାବରେ ପ୍ରଭାବିତ ଯେ ସେମାନେ ଅନ୍ୟ ସ୍ଥାନକୁ ଗଲେ ଏହି ଭଲ ପାଇବାର ଅଭାବକୁ ଅନୁଭବ କରି ଆମକୁ ସେମାନଙ୍କ ସହିତ ତୁଳନା କରିବସୁଛନ୍ତି । ଏହି ଭଲ ପାଇବାର ଅଭାବ ଦ୍ୱାରା ମଣିଷପଣିଆର କ୍ଷତି ହେଉଛି ।

ମୁଁ ଭାବେ ଆମ ଓଡ଼ିଆଙ୍କ ବ୍ୟବହାରର ୪ଟି ମୌଳିକ ଦିଗ ଆମର ଭଲ ପଣିଆର ପରିପ୍ରକାଶ କରେ । ପ୍ରଥମଟି ହେଉଛି, ଅନ୍ୟମାନଙ୍କ ପ୍ରତି ଆମର ସମ୍ମାନବୋଧ । ଆମର ପୂର୍ବପୁରୁଷମାନଙ୍କର ସମସ୍ତଙ୍କ ପ୍ରତି ଗଭୀର ସମ୍ମାନ ରହିଥିଲା –

ସେ ସଜୀବ ହେଉ ବା ନିର୍ଜୀବ । ଏହା ସେମାନଙ୍କ ବୌଦ୍ଧିକ ଜ୍ଞାନ ବା ପାଣ୍ଡିତ୍ୟର ଉଦାହରଣ ନଥିଲା ବରଂ ଏହା ସେମାନଙ୍କ ଆଧ୍ୟାତ୍ମିକ ଅନୁଭବରୁ ହିଁ ଆସିଥିଲା । ଆଧ୍ୟାତ୍ମିକ ଅନୁଭୂତିରୁ ଆମେ ଜାଣୁ ଯେ ଆମର ସମସ୍ତ ବସ୍ତୁ ସହିତ ସମ୍ପର୍କ ରହିଛି, ତେଣୁ ଆମେ ସମସ୍ତଙ୍କୁ ସମ୍ମାନର ସହିତ ଦେଖିବା ଉଚିତ ।

ଆମର ବ୍ୟବହାରର ପରବର୍ତ୍ତୀ ଦିଗଟି ହେଉଛି ବିନମ୍ରତା । ଦେଖିବାକୁ ଗଲେ, ବିନମ୍ରତା ବିନା କେହି ଅନ୍ୟର ସମ୍ମାନଭାଜନ ହୋଇପାରିବ ନାହିଁ । ଦୁର୍ଭାଗ୍ୟବଶତଃ, ବିନମ୍ରତାକୁ ଅନେକ ସମୟରେ ଭୟାଳୁ ଓ ଆଜ୍ଞାବହ ସ୍ୱଭାବର ପରିପ୍ରକାଶ ବୋଲି ଧରି ନିଆଯାଏ । ମୋ ମତରେ କିନ୍ତୁ, ଏହା ଠିକ୍ ନୁହେଁ । ଆମର ଗଭୀର ଆତ୍ମବିଶ୍ୱାସରୁ ହିଁ ବିନମ୍ରତାର ଜନ୍ମ । ବିନମ୍ରତାର ଏପରି ଏକ ଶକ୍ତି ରହିଛି ଯାହାକି ପରିଶେଷରେ ସମସ୍ତଙ୍କୁ ପ୍ରଭାବିତ କରିଥାଏ । ବାସ୍ତବରେ, ବିନମ୍ରତା ହେଉଛି ଅଧିକ ଶକ୍ତିଶାଳୀ । ବିନମ୍ରତା ନଥିଲେ ଆମେ ଭଲ କଥା ଗ୍ରହଣ କରିବାର ଶକ୍ତି ହରାଇଥାଉ । କଥାରେ ଅଛି, ଗିରିଶୃଙ୍ଗ ଯେତେ ଉଚ୍ଚ ଓ ଦୃଢ଼ ହେଲେ ବି, ବୁନ୍ଦାଏ  ବର୍ଷାଜଳ ଧାରଣ କରିବାର କ୍ଷମତା ତାହାର ନଥାଏ । ଅପରପକ୍ଷରେ ଉପତ୍ୟକାରେ ଥିବା ହ୍ରଦ ହିଁ କେବଳ ବର୍ଷାଜଳ ଧାରଣ କରିପାରେ । ତେଣୁ କୌଣସି ଉତ୍ତମ ବିଚାର ଧାରଣ କରିବାକୁ ହେଲେ, ଆମର ମନ ହ୍ରଦ ଭଳି ହେବା ଆବଶ୍ୟକ ।

ତୃତୀୟ ମୌଳିକ ଦିଗଟି ହେଉଛି ସରଳତା । ଓଡ଼ିଆ ଲୋକ ସରଳ । ସରଳ ହେବା ଅର୍ଥ ନିର୍ବୋଧ ନୁହେଁ । ଏହା କୁହାଯାଇପାରେ ଯେ ଶ୍ରେଷ୍ଠ ବ୍ୟକ୍ତି ହିଁ ସବୁଠାରୁ ସରଳ । ନମ୍ରତା ଆକର୍ଷିତ କରେ । ଉଚ୍ଚ ଆଦବକାଇଦା ମଣିଷ ମଧ୍ୟରେ ଦୂରତା ସୃଷ୍ଟି କରେ । ଏସବୁ ବ୍ୟତୀତ, ମୋ ବିବେଚନାରେ ଚତୁର୍ଥ ଦିଗଟି ହେଉଛି ଶିଷ୍ଟାଚାରୀ ହେବା ପାଇଁ ଆମ ମଧ୍ୟରେ କିଛି ପରିମାଣର କ୍ଷମା ଗୁଣ ମଧ୍ୟ ରହିବା ଜରୁରୀ । ଭଲ ଲୋକମାନେ ସହଜରେ କ୍ଷମା କରିଦିଅନ୍ତି । କ୍ଷମାର ଆତ୍ମଶୋଧନ ଶକ୍ତି ରହିଛି । ମଣିଷପଣିଆ କାଳେ କାଳେ ବଞ୍ଚିରହିଛି । କାରଣ କେବେ କେବେ କେଉଁଠି ନା କେଉଁଠି ଆମେ କ୍ଷମା ଦେଇଛୁ । ଆମେ ଯେତେବେଳେ କ୍ଷମା କରିବାର ଶକ୍ତି ହରାଇ ବସୁ, ସେତେବେଳେ ପରିବାର, ସମାଜ ଓ ଦେଶ ଭାଙ୍ଗିଯାଏ ।

ମୁଁ ଚାହେଁ ଆମେ ସମସ୍ତେ ଜାଣିବା ଦରକାର ଯେ ଆମ ସୌଜନ୍ୟତା ଏବେ ଦୁନିଆର ନଜରକୁ ଆସିଛି । ଏହାକୁ ଦୁନିଆ ପସନ୍ଦ ମଧ୍ୟ କରିଛି । ଏହା ସମଗ୍ର ଓଡ଼ିଆ ଜାତିର ସାମୂହିକ ତଥା ସାମଗ୍ରିକ ଚରିତ୍ର । ଯଦି ପାଖରେ ଟଙ୍କା ଅଛି, ତେବେ ଆପଣ ସୁଦୃଶ୍ୟ ସଡ଼କ, ଗଗନଚୁମ୍ବୀ ଅଟ୍ଟାଳିକା, ବନ୍ଦର, କାରଖାନା ଓ ବଡ଼ ବଡ଼ ବ୍ୟବସାୟ ପ୍ରତିଷ୍ଠାନ ସବୁକିଛି ଗଢ଼ିପାରିବେ । କିନ୍ତୁ, ଭଲ ମଣିଷପଣିଆକୁ ଟଙ୍କାରେ ମୂଲ କରାଯାଇପାରିବ ନାହିଁ । ଏହା ଅମୂଲ୍ୟ । ଆମେ ବହୁତ ଭାଗ୍ୟବାନ ଯେ ପିଢ଼ି ପରେ ପିଢ଼ି ଆମ ପୂର୍ବପୁରୁଷମାନେ ଆମକୁ ସମ୍ମାନବୋଧ, ବିନମ୍ରତା, ସରଳତା ଓ କ୍ଷମାଶୀଳତା ଆଦି ସଦ୍‌ଗୁଣ ଶିଖେଇଛନ୍ତି । ଏହାକୁ ଆମେ ଉତ୍ତରାଧିକାର ସୂତ୍ରରେ ପାଇଛୁ । ଏହିସବୁ ସୁଗୁଣଗୁଡ଼ିକ ମିଶି ଆମକୁ ସୌଜନ୍ୟଶୀଳ କରିଛି ଏବଂ ଏହା ଆମର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ଆମେମାନେ ଉତ୍ତରାଧିକାର ସୂତ୍ରରେ ପାଇଥିବା ଏହି ମହାନ ସଂସ୍କାର ପାଇଁ ନିଜକୁ ଗୌରବାନ୍ୱିତ ମନେ କରିବା ଉଚିତ । ଏହା କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷ ବା ନିର୍ଦ୍ଦିଷ୍ଟ ସମୟର ଉପଲବ୍‌ଧି ନୁହେଁ । ଶତାବ୍ଦୀ ଶତାବ୍ଦୀ ଧରି ସମୟର କଷଟି ପଥରରେ ପରୀକ୍ଷିତ ଏହା ଆମର ସାମୂହିକ ଉତ୍ତରାଧିକାର । ଓଡ଼ିଆ ଜାତିର ଭଲପଣିଆ ହେଉଛି ଓଡ଼ିଆଙ୍କ ଶ୍ରେଷ୍ଠ ପରିଚୟ । ଏଇ ଭଲପଣିଆ ସବୁକାଳେ ଆମ ପରିଚୟ ହୋଇ ରହିବା ଉଚିତ ।

ମାନ୍ୟବର ମୁଖ୍ୟମନ୍ତ୍ରୀ, ଓଡ଼ିଶା

# ଚାଷୀଙ୍କ ଲାଗି 'କାଳିଆ'

ସାରା ଦେଶରେ ଦାରିଦ୍ର୍ୟ ହାରରେ ସର୍ବାଧିକ ହ୍ରାସ ଓଡ଼ିଶାରେ ହିଁ ଘଟିଛି । ପ୍ରାୟ ୮୦ ଲକ୍ଷ ଲୋକ ଦାରିଦ୍ର୍ୟ ସୀମାରେଖା ଉପରକୁ ଉଠିଛନ୍ତି ।

ଆମ ଜନସଂଖ୍ୟାର ୬୦ ପ୍ରତିଶତ କୃଷି ଉପରେ ନିର୍ଭରଶୀଳ । ରାଜ୍ୟ ସରକାରଙ୍କ ବିଭିନ୍ନ ପଦକ୍ଷେପ ଫଳରେ ଓଡ଼ିଶା ଖାଦ୍ୟଶସ୍ୟ ଉତ୍ପାଦନରେ ଏକ ନିଅଣ୍ଟିଆ ରାଜ୍ୟରୁ ଆଜି ଦେଶର ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ଚାଉଳ ଯୋଗାଣ କ୍ଷେତ୍ରରେ ତୃତୀୟ ସର୍ବାଧିକ ଅବଦାନକାରୀ ହୋଇପାରିଛି । ଓଡ଼ିଶା କୃଷିକର୍ମଣ ପୁରସ୍କାର ୫ଥର ହାସଲ କରି ରେକର୍ଡ କରିଛି । ଓଡ଼ିଶା ହେଉଛି ଦେଶର ଏକମାତ୍ର ରାଜ୍ୟ ଯିଏ କି ଚାଷୀଙ୍କ ରୋଜଗାରକୁ ଦୁଇ ଗୁଣ କରିବାରେ ସଫଳ ହୋଇଛି । ୨୦୧୪ରେ ଆମେ ଅତିରିକ୍ତ ୧୦ ଲକ୍ଷ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇବା ପାଇଁ ପ୍ରତିଶ୍ରୁତି ଦେଇଥିଲୁ । ଆମେ ବର୍ତ୍ତମାନ ଏହି ଲକ୍ଷ୍ୟର ନିକଟତର ହୋଇପାରିଛୁ । ମାର୍ଚ୍ଚ ୨୦୧୯ ସୁଦ୍ଧା ଆମେ ଜଳସେଚନ ପାଇଁ ଦେଇଥିବା ପ୍ରତିଶ୍ରୁତି ପୂରଣ କରିବୁ ।

ଉଚ୍ଚାଞ୍ଚଳରେ ରହୁଥିବା ଚାଷୀମାନଙ୍କ ସ୍ୱାର୍ଥକୁ ଦୃଷ୍ଟିରେ ରଖି ଆମେ ମିଲେଟ ମିଶନ ଆରମ୍ଭ କରିଛୁ । ଏହି କାର୍ଯ୍ୟକ୍ରମ ହେଉଛି ବିକାଶ କାମରେ ସମସ୍ତଙ୍କୁ ସମ ଭାବରେ ସାମିଲ କରିବାର ଏକ ସଫଳ ଉଦାହରଣ ।

ରାଜ୍ୟରେ କୃଷି କ୍ଷେତ୍ରରେ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା ଏବଂ ଦାରିଦ୍ର୍ୟ ହ୍ରାସ କରିବା ପାଇଁ ରାଜ୍ୟ କ୍ୟାବିନେଟ ଐତିହାସିକ 'କାଳିଆ' ଯୋଜନାକୁ ଅନୁମୋଦନ କରିଛି । KALIA (Krushak Assistance for Livelihood and Income Augmentation.) ଏହି ଯୋଜନାରେ ୧୦ ହଜାର କୋଟି ଟଙ୍କା ଖର୍ଚ୍ଚ କରାଯିବ । 'କାଳିଆ' ଯୋଜନା ନିମ୍ନ ୫ଗୋଟି ବିଷୟ ଉପରେ ପର୍ଯ୍ୟବସିତ ।



### ୧) ଚାଷ କାର୍ଯ୍ୟ ପାଇଁ ଚାଷୀଙ୍କୁ ସହାୟତା

ରାଜ୍ୟର ୩୦ ଲକ୍ଷରୁ ଅଧିକ କ୍ଷୁଦ୍ର ଓ ନାମମାତ୍ର ଚାଷୀ ଏହି କାର୍ଯ୍ୟକ୍ରମ ଦ୍ୱାରା ଉପକୃତ ହେବେ । ଏହି କାର୍ଯ୍ୟକ୍ରମ ଜରିଆରେ ଚାଷୀ ପରିବାରକୁ ୧୦ ହଜାର ଟଙ୍କା ସହାୟତା ଯୋଗାଇ ଦିଆଯିବ । ଚାଷୀ ପରିବାରକୁ ଉଭୟ ଖରିଫ ଓ ରବି ଫସଲ ପାଇଁ ୫ ହଜାର ଟଙ୍କା ଲେଖାଏଁ ଆର୍ଥିକ ସହାୟତା ଭାବରେ ଯୋଗାଇ ଦିଆଯିବ । ଚାଷୀମାନେ କୃଷି ପାଇଁ ସେମାନଙ୍କର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଏ ସହାୟତା ଅର୍ଥକୁ ଖର୍ଚ୍ଚ କରିପାରିବେ । ଏହାଦ୍ୱାରା ରାଜ୍ୟର ୯୨ ପ୍ରତିଶତ ଚାଷୀ ସୁବିଧା ପାଇବେ । ଚାଷୀର କେତେ ଜମି ଅଛି, ତା' ସହିତ ଏ ସହାୟତାର କୌଣସି ସମ୍ବନ୍ଧ ରହିବ ନାହିଁ । ଏହା ଏକ ପ୍ରଗତିଶୀଳ ପଦକ୍ଷେପ ଏବଂ ଏହାଦ୍ୱାରା ଆମର ପ୍ରକୃତ ଚାଷୀ/ଭାଗ ଚାଷୀ ଯେଉଁମାନଙ୍କର କି ଜମି ପରିମାଣ ବହୁତ କମ୍, ସେମାନେ ହିଁ ଉପକୃତ ହେବେ । ଏହି ସହାୟତା ୨୦୧୮-୧୯ରୁ ୨୦୨୧-୨୨ ପର୍ଯ୍ୟନ୍ତ ୩ ବର୍ଷରେ ୫ଗୋଟି ଫସଲ ଋତୁ ପାଇଁ ଲାଗୁ ହେବ ।

## ୨) ଭୂମିହୀନ ପରିବାର ପାଇଁ ଜୀବିକା ସହାୟତା

ଆମର ଅଧିକାଂଶ କୃଷି ବିକାଶ ଯୋଜନାରେ ଭୂମିହୀନ ଚାଷୀ ପରିବାର ପାଇଁ ବିଶେଷ କିଛି କାର୍ଯ୍ୟକ୍ରମ ନଥିଲା । ଏହି 'କାଳିଆ' ଯୋଜନା ଦ୍ୱାରା ୧୦ ଲକ୍ଷ ଭୂମିହୀନ ପରିବାର ଉପକାର ପାଇପାରିବେ । ଛେଳି ପାଳନ, ଅଣ୍ଡା ଉତ୍ପାଦନ, ବତକ ଚାଷ, ମାଛ ଚାଷ, ଛତୁ ଚାଷ ଏବଂ ମହୁ ଚାଷ ପରି ଆନୁଷଙ୍ଗିକ କୃଷି କାର୍ଯ୍ୟ ପାଇଁ ପ୍ରତି ପରିବାରକୁ ୧୨,୫୦୦ ଟଙ୍କା ସହାୟତା ପ୍ରଦାନ କରାଯିବ ।

ଏହି ଭୂମିହୀନ ପରିବାରମାନେ ଉପରୋକ୍ତ ୭ଗୋଟି ଆନୁଷଙ୍ଗିକ କୃଷି କାର୍ଯ୍ୟ ମଧ୍ୟରୁ ଯେକୌଣସି ଗୋଟିକୁ ସେମାନଙ୍କ ଜୀବିକା ଭାବରେ ପସନ୍ଦ କରିପାରିବେ । ଏଥିପାଇଁ ଆଗାମୀ ୩ ବର୍ଷରେ ୧୨୫୦ କୋଟି ଟଙ୍କା ଖର୍ଚ୍ଚ କରାଯିବ ।

## ୩) ଭୂମିହୀନ ଶ୍ରମିକ ଏବଂ ସମ୍ଭାବ୍ୟ ଆପଦଗ୍ରସ୍ତ ଚାଷୀ ପରିବାର

ଅନେକ ସମୟରେ ବୃଦ୍ଧାବସ୍ଥା, ଅକ୍ଷମତା, ରୋଗ ତଥା ବିଭିନ୍ନ କାରଣରୁ ଚାଷୀ ଚାଷ କାର୍ଯ୍ୟ କରିବାକୁ ସକ୍ଷମ ହୋଇପାରେ ନାହିଁ । ସେହିପରି ଉପରୋକ୍ତ କାରଣରୁ ମଧ୍ୟ ଭୂମିହୀନ କୃଷି ଶ୍ରମିକ ରୋଜଗାର ହରାଇଥାଏ । ଏହାକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ଏହିଭଳି ପରିବାରକୁ ସେମାନଙ୍କର ଚାଷ କାର୍ଯ୍ୟ ଓ ଜୀବିକା ଜାରି ରଖିବା ପାଇଁ ବାର୍ଷିକ ୧୦ ହଜାର ଟଙ୍କା ଆର୍ଥିକ ସହାୟତା ଦେବା ପାଇଁ ନିଷ୍ପତ୍ତି କରିଛନ୍ତି । ଏହି ସହାୟତା ପାଇଁ ଯୋଗ୍ୟ ହିତାଧିକାରୀ ଗ୍ରାମପଞ୍ଚାୟତ ଦ୍ୱାରା ହିଁ ମନୋନୀତ କରାଯିବ । ସାରା ରାଜ୍ୟରେ ଏହିପରି ୧୦ ଲକ୍ଷ ପରିବାର ପାଇଁ 'କାଳିଆ' ଯୋଜନାରେ ଏକ ହଜାର କୋଟି ଟଙ୍କା ଖର୍ଚ୍ଚ କରାଯିବ ।

## ୪) ବୀମା ସୁରକ୍ଷା

ଉଭୟ ଚାଷୀ ଏବଂ ଭୂମିହୀନ କୃଷି ଶ୍ରମିକଙ୍କ ପାଇଁ ୨ଲକ୍ଷ ଟଙ୍କାର ଜୀବନ ବୀମା ଏବଂ ଦୁର୍ଘଟଣା କ୍ଷେତ୍ରରେ ଅତିରିକ୍ତ ୨ଲକ୍ଷ ଟଙ୍କାର ବୀମା ସୁରକ୍ଷା ଯୋଗାଇ ଦିଆଯିବ । ଏହାଦ୍ୱାରା ୫୭ ଲକ୍ଷ ପରିବାର ଉପକାର ପାଇବେ ।

## ୫) ବିନା ସୁଧରେ ଫସଲ ଋଣ

ଚାଷୀଙ୍କୁ ଏଣିକି ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ଫସଲ ଋଣ ବିନା ସୁଧରେ ଯୋଗାଇ ଦିଆଯିବ । ଏଥିପାଇଁ ଆଗାମୀ ୩ ବର୍ଷରେ ୧୦,୨୮୦ କୋଟି ଟଙ୍କା ଖର୍ଚ୍ଚ ହେବ । ୨୦୨୧ରେ ଏହି ଯୋଜନାର ସମୀକ୍ଷା କରାଯାଇ ଆବଶ୍ୟକ ପରିବର୍ତ୍ତନ କରାଯିବ ।

'କାଳିଆ' ଯୋଜନା ଓଡ଼ିଶା ସରକାରଙ୍କର ଏକ ଐତିହାସିକ ଯୋଜନା । କାରଣ ଏହି ଯୋଜନାରେ ରାଜ୍ୟର ପ୍ରାୟ ୯୨ ପ୍ରତିଶତ ଚାଷୀ ଏବଂ ସମସ୍ତ ଭୂମିହୀନ କୃଷି ଶ୍ରମିକ ଅନ୍ତର୍ଭୁକ୍ତ ହେବେ । ସୂଚନାଯୋଗ୍ୟ ଯେ ଆମ ରାଜ୍ୟରେ ୩୨ ଲକ୍ଷ ଚାଷୀ ପରିବାର ଅଛନ୍ତି । ସେମାନଙ୍କ ମଧ୍ୟରୁ ୨୦ ଲକ୍ଷ ପରିବାର ଫସଲ ଋଣ ନେଇଥାନ୍ତି । ୧୨ ଲକ୍ଷ ଚାଷୀ ପରିବାର ଫସଲ ଋଣ ସୁବିଧା ନେଉନାହାନ୍ତି । ଫସଲ ଋଣ ନେଉଥିବା ୨୦ ଲକ୍ଷ ଚାଷୀଙ୍କ ମଧ୍ୟରୁ ପ୍ରାୟ ୬୦ ପ୍ରତିଶତ ନିୟମିତ ଭାବରେ ଋଣ ପରିଶୋଧ କରୁଛନ୍ତି । ତେଣୁ ଋଣ ଛାଡ଼ ଦ୍ୱାରା ମାତ୍ର ୮ ଲକ୍ଷ ଚାଷୀ ଉପକାର ପାଇଥାନ୍ତେ ଏବଂ କେହି ଭାଗ ଚାଷୀ ଓ ଭୂମିହୀନ କୃଷି ଶ୍ରମିକ ଉପକୃତ ହୋଇନଥାନ୍ତେ ।

ଏହି ପରିପ୍ରେକ୍ଷୀରେ 'କାଳିଆ' ଯୋଜନା ଦ୍ୱାରା ୯୨ ପ୍ରତିଶତ ଚାଷୀ ଉଭୟ ଋଣୀ ଓ ଅଣ-ଋଣୀ ଚାଷୀ, ଭାଗ ଚାଷୀ ଏବଂ ଭୂମିହୀନ କୃଷି ଶ୍ରମିକ ଉପକୃତ ହେବେ । ଏହି ଯୋଜନାରେ ଗ୍ରାମପଞ୍ଚାୟତ ଦ୍ୱାରା ଚିହ୍ନିତ ସମ୍ଭାବ୍ୟ ଆପଦଗ୍ରସ୍ତ ଚାଷୀ ପରିବାର ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯାଇଛି । ଆପଦଗ୍ରସ୍ତ ହେବାର କାରଣ ବୃଦ୍ଧାବସ୍ଥା, ରୋଗ ଏବଂ ଅନ୍ୟ କାରଣ ହୋଇପାରେ । ଏହାଦ୍ୱାରା ଚାଷୀ ଚାଷ କାର୍ଯ୍ୟରେ ନିଜକୁ ନିୟୋଜିତ କରିପାରି ନଥାଏ ।

'କାଳିଆ' ଏକ ପ୍ରଗତିଶୀଳ ଯୋଜନା ଏବଂ ଏହା ଜରିଆରେ ହେଉଥିବା ବ୍ୟୟବରାଦ ଦାରିଦ୍ର୍ୟକୁ ହ୍ରାସ କରିବାକୁ ଉଲ୍ଲେଖନୀୟ ସଫଳତା ହାସଲ କରିବ ଏବଂ ସବୁବର୍ଗର କୃଷିଜୀବୀମାନଙ୍କୁ ଏହା Direct benefit transfer modeରେ ଦିଆଯିବ ।



## ଓଡ଼ିଶା ପୁରୁଷ ବିଶ୍ୱ ହକି ମହାକୁମ୍ଭ-୨୦୧୮

# "ପୁରୁଷ ବିଶ୍ୱ କପ୍ ହକି ଆୟୋଜନ କରି ଓଡ଼ିଶା ସାରା ବିଶ୍ୱକୁ ଏକାଠି କରିପାରିଛି ।"

**- ନବୀନ ପଟ୍ଟନାୟକ**



### ପ୍ରାକ୍ କଥନ

ସଂଘୀୟ ଶାସନ ବ୍ୟବସ୍ଥାରେ ଓଡ଼ିଶା ତା'ର ନ୍ୟାଯ୍ୟ ଦାବି ହାସଲ କରିବାରେ ସତତ ସଂଘର୍ଷରତ ଥିଲେ ମଧ୍ୟ ନିଜସ୍ୱ ଉଦ୍ୟମରେ ଏହାର ସମୃଦ୍ଧି ଓ ପ୍ରସିଦ୍ଧି ବାସ୍ତବିକ୍ ଏ ମାଟିର ମହତ୍ତ୍ୱକୁ ସାବ୍ୟସ୍ତ କରିଛି । ଅତୀତରେ ସୁଦୂର ବିଦେଶରେ ନିଜର ଅପୂର୍ବ ସାଂସ୍କୃତିକ ନିଦର୍ଶନ ଛାଡ଼ି ଆସିଥିବା ବୀର ଓଡ଼ିଆ ଜାତି ଆଜି ମଧ୍ୟ ଦେଶବିଦେଶରେ ନିଜର ଉତ୍କର୍ଷ ନିମନ୍ତେ ଚର୍ଚ୍ଚିତ ହେଉଛି ଜାଣି ପ୍ରତି ଓଡ଼ିଆର ଛାତି ଗର୍ବରେ ଫୁଲିଉଠୁଛି । ଯେଉଁ ଓଡ଼ିଶା ଦିନେ ସମଗ୍ର ବିଶ୍ୱରେ ନିଜର ଦାରିଦ୍ର୍ୟ ନିମନ୍ତେ ଅପଯଶ ମୁଣ୍ଡାଇଥିଲା, ସେ ଆଜି ବିଶ୍ୱ ଦରବାରରେ ମୁଣ୍ଡ ଉଠାଇ ଆୟୋଜନ କରିଛି ଓଡ଼ିଶା ପୁରୁଷ ବିଶ୍ୱ ହକି ମହାକୁମ୍ଭ । ପାଳନ କରିଛି ସମୃଦ୍ଧିର ମହୋତ୍ସବ । ସମଗ୍ର ବିଶ୍ୱବାସୀଙ୍କ ଦୃଷ୍ଟି ଆଜି ଓଡ଼ିଶା ଉପରେ କେନ୍ଦ୍ରୀଭୂତ ।

### ପୂର୍ବ ଅଭିଜ୍ଞତାର ସଫଳ ପ୍ରୟୋଗ

ଅଧୁନା ଦେଶର କ୍ରୀଡ଼ା ରାଜଧାନୀ ରୂପେ ଉଭା ଆମ ରାଜଧାନୀ ଭୁବନେଶ୍ୱର ଏହି ଅଳ୍ପ କେତେଦିନ ତଳେ ଏସୀୟ ଆଥ୍‌ଲେଟିକ୍ସ ଚମ୍ପିଅନ୍‌ସିପ୍ସର ସଫଳ ଆୟୋଜନ କରି ବେଶ୍ ଖ୍ୟାତି ଅର୍ଜନ କରିଥିଲା । ମାତ୍ର ୯୦ ଦିନର ସ୍ୱଳ୍ପ ଅବଧି ମଧ୍ୟରେ ଏପରି ଏକ ବିରାଟ ଆୟୋଜନ କରିବା ବାସ୍ତବିକ ଆହ୍ୱାନମୂଳକ ଥିଲା । ଓଡ଼ିଆ ଜାତିର ମନୋବଳ ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସ୍ୱଚ୍ଛ, ଉତ୍ତରଦାୟୀ ଓ ଦୃଢ଼ ନେତୃତ୍ୱ ଯୋଗୁଁ ଏହା ସମ୍ଭବପର ହୋଇପାରିଥିଲା ।

### ଓଡ଼ିଶା ଇତିହାସରେ ପ୍ରଥମ

ପୂର୍ବ ସଫଳତାକୁ ପାଥେୟ କରି ତଥା ନିରନ୍ତର ଉଦ୍ୟମ, ନିଷ୍ଠା ଓ କାର୍ଯ୍ୟ ଦକ୍ଷତାର ଉଦାହରଣ ରଖି, ଓଡ଼ିଶା ଆଜି 'ପୁରୁଷ ବିଶ୍ୱ କପ୍ ହକି-୨୦୧୮'ର ଚତୁର୍ଦ୍ଦଶ ସଂସ୍କରଣ ଆୟୋଜନ ପୂର୍ବକ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରିଛି ।

ଗତ ନଭେମ୍ବର ୨୭ ତାରିଖରେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରସ୍ଥ କଳିଂଗ ଷ୍ଟାଡିୟମ୍‌ଠାରେ ଓ ୨୮ ତାରିଖରେ ଐତିହ୍ୟ ନଗରୀ କଟକର ବାରବାଟୀ ଷ୍ଟାଡିୟମ୍‌ଠାରେ ଏକ ମନୋରମ ପରିବେଶ ମଧ୍ୟରେ 'ଓଡ଼ିଶା ପୁରୁଷ ବିଶ୍ୱ କପ୍ ହକି ମହାକୁମ୍ଭ-୨୦୧୮ର ଶୁଭାରମ୍ଭ ହୋଇଯାଇଛି । ପୂର୍ବରୁ ଏହାର ପ୍ରଚାରପ୍ରସାର ନିମନ୍ତେ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେବା ସହ ସୁଦୂର ଲଣ୍ଡନରେ ମଧ୍ୟ 'ଓଡ଼ିଶା ପୁରୁଷ ବିଶ୍ୱ ହକି କପ୍' ସମ୍ବନ୍ଧୀୟ ବିଜ୍ଞାପନର ପ୍ରସାର କରାଯାଇଥିଲା । ଓଡ଼ିଶା ମାଟିରେ ଆୟୋଜିତ ଏହି ବିଶ୍ୱକପ୍ ପ୍ରତିଯୋଗିତାକୁ ଅଧିକ ଆକର୍ଷଣୀୟ କରିବା ଲକ୍ଷ୍ୟରେ ଓଡ଼ିଶାର କଳା, ସଂସ୍କୃତିର ବର୍ଣ୍ଣାଳୀ ତଥା ଝଲକ ଭୁବନେଶ୍ୱରର ବିଭିନ୍ନ ଛକସ୍ଥିତ କାନ୍ଥବାଡ଼ରେ ଶୋଭିତ ହୋଇ ଦେଶବିଦେଶର ଆଗନ୍ତୁକଙ୍କୁ ଓଡ଼ିଶାର ଐତିହ୍ୟ ସଂପର୍କରେ ସୂଚିତ କରୁଛି । ବିଶ୍ୱ ହକି ମହାକୁମ୍ଭର ମାସ୍କଟ୍ ଓଲିର ଚିତ୍ର କାନ୍ଥବାଡ଼ର ଶୋଭାକୁ ଦ୍ୱିଗୁଣିତ କରିପାରିଛି । ଦେଶର କ୍ରୀଡ଼ା ରାଜଧାନୀ ରୂପେ ପରିଚିତ ଭୁବନେଶ୍ୱରକୁ ଏହି ଅବସରରେ ବିଭିନ୍ନ ରଂଗୀନ ଆଲୋକମାଳା ଓ ପୁଷ୍ପ ସମ୍ଭାରରେ ନବବଧୂ ପରି ସଜାଇ ଦିଆଯାଇଥିଲା । ଆମେରିକୀୟ ଚିତ୍ରଶିଳ୍ପୀଙ୍କ ତୂଳୀରେ ଥ୍ରୀଡି ଚିତ୍ର ବେଶ୍ ଚିତ୍ତାକର୍ଷକ ହୋଇପାରିଛି । ଉଦ୍‌ଘାଟନୀ ଉତ୍ସବରେ ହିନ୍ଦୀ ଚଳଚ୍ଚିତ୍ର ଜଗତର ଖ୍ୟାତନାମା ଅଭିନେତା ଓ ଅଭିନେତ୍ରୀ ଶାହାରୁଖ୍ ଖାନ୍, ମାଧୁରୀ ଦୀକ୍ଷିତ୍ ଏବଂ ସଲମାନ୍ ଖାନ୍‌ଙ୍କ ସହ ବିଶିଷ୍ଟ ସଂଗୀତ ନିର୍ଦ୍ଦେଶକ ଏ.ଆର୍ ରେହମାନ୍ ଉପସ୍ଥିତ ଦର୍ଶକଙ୍କ ଭରପୂର ମନୋରଂଜନ କରିଥିଲେ । ଏଥିସହ ଏକ ଉଲ୍ଲେଖନୀୟ ଘଟଣାକ୍ରମରେ ୧୯୭୫ ବିଶ୍ୱକପ୍ ବିଜୟୀ ହକି ଦଳର ଅଧିନାୟକ ଅଜିତ୍ ପାଲ୍ ସିଂ ଓ ଦଳୀୟ ସାଥୀମାନଙ୍କୁ ଉଦ୍‌ଘାଟନୀ ମହୋତ୍ସବ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ସମ୍ବର୍ଦ୍ଧିତ କରିଥିଲେ ।

### ପ୍ରତିଯୋଗୀ ଦେଶସମୂହ

ନଭେମ୍ବର ୨୮ ତାରିଖଠାରୁ ଡିସେମ୍ବର ୧୬ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିବା ଏହି ବିଶ୍ୱସ୍ତରୀୟ ପ୍ରତିଯୋଗିତାରେ ବିଶ୍ୱର ୧୬ ଗୋଟି ଦେଶ ଅଂଶଗ୍ରହଣ କରିଥିଲେ । ଉକ୍ତ ଦେଶଗୁଡିକ ହେଲେ ଆର୍ଜେଣ୍ଟିନା, ନ୍ୟୁଜିଲାଣ୍ଡ, ସ୍ପେନ୍, ଫ୍ରାନ୍ସ, ଅଷ୍ଟ୍ରେଲିଆ, ଇଂଲଣ୍ଡ, ଆୟର୍‌ଲାଣ୍ଡ, ଚୀନ୍, ଭାରତ, ବେଲ୍‌ଜିୟମ୍, କାନାଡା, ଦକ୍ଷିଣ ଆଫ୍ରିକା, ନେଦର୍‌ଲାଣ୍ଡସ, ଜର୍ମାନୀ, ମାଲେସିଆ ଓ ପାକିସ୍ତାନ ।

### ଟ୍ରାଫିକ୍, ସୁରକ୍ଷା ଓ ଆତିଥ୍ୟ

ବିଶ୍ୱ ହକି ମହାକୁମ୍ଭ ଆୟୋଜନ ଅବସରରେ ଅଂଶଗ୍ରହଣକାରୀ ଦେଶବିଦେଶର ଖେଳାଳିଙ୍କ ସୁରକ୍ଷା ଓ ଦର୍ଶକଙ୍କ ସମାଗମକୁ ଦୃଷ୍ଟିରେ ରଖି ରାଜ୍ୟ ସରକାରଙ୍କ ପକ୍ଷରୁ ଅଭୁତପୂର୍ବ ସୁରକ୍ଷା ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ଏଥିନିମନ୍ତେ ୭୫ ପ୍ଲାଟୁନ୍ ପୁଲିସ୍ ଫୋର୍ସ, ୫ ଶହରୁ ଊର୍ଦ୍ଧ୍ୱ ଅଧିକାରୀ ନିୟୋଜିତ ହେବା ସହ ରାଜଧାନୀର ବିଭିନ୍ନ ସ୍ଥାନରେ ୨୭୦ଟି ସି.ସି.ଟି.ଭି. କ୍ୟାମେରା ଲଗାଯାଇଥିଲା ଓ ୨୮ଗୋଟି କଣ୍ଟ୍ରୋଲ୍ ରୁମ୍ ଖୋଲାଯାଇଥିଲା । ଟ୍ରାଫିକ୍ ଭିଡ଼ର ସୁପରିଚାଳନା ନିମନ୍ତେ ମଧ୍ୟ ବିଭିନ୍ନ ପଦକ୍ଷେପ ନିଆଯାଇଥିଲା । ରାଜ୍ୟ ସରକାର, ପ୍ରଶାସନ, ହକି ପ୍ରଶାସନର ସୁସମନ୍ୱୟରେ ଗ୍ରହଣ କରାଯାଇଥିବା ପ୍ରତ୍ୟେକଟି ପଦକ୍ଷେପରେ ଉଭୟ ଖେଳାଳି ଏବଂ ଦର୍ଶକ ସନ୍ତୋଷ ପ୍ରକଟ କରିଥିଲେ । ବହିରାଗତ ଖେଳାଳି ଏବଂ ଦର୍ଶକଙ୍କ ନିମନ୍ତେ ଓଡ଼ିଶା ମାଟିର ଆତିଥେୟତା ଅବିସ୍ମରଣୀୟ ହୋଇପାରିଛି । ଖେଳାଳିମାନେ ଯେମିତି ଓଡ଼ିଶାର ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଭ୍ରମଣ କରିପାରିବେ ସେ ଦିଗରେ ଓଡ଼ିଶା ସରକାରଙ୍କ ପକ୍ଷରୁ ସ୍ୱତନ୍ତ୍ର ପଦକ୍ଷେପମାନ ମଧ୍ୟ ଗ୍ରହଣ କରାଯାଇଥିଲା ।

**ଫ୍ୟାନ୍ ଭିଲେଜ୍**

ଦେଶବିଦେଶରୁ ଆସିଥିବା ଖେଳାଳି ଏବଂ ହକିପ୍ରେମୀଙ୍କ ଅବସର ବିନୋଦନ ତଥା ମନୋରଂଜନ ନିମନ୍ତେ ଫ୍ୟାନ୍ ଭିଲେଜ୍‌ର ପରିକଳ୍ପନା ବାସ୍ତବିକ ଫଳପ୍ରଦ ହୋଇପାରିଥିଲା । ମାସ୍କଟ୍ ଓଲି ସହ କିଛି ସମୟ ବିତାଇବା ଓ ସେଲ୍‌ଫି ପଏଣ୍ଟରେ ଫଟୋ ଉଠାଇବା ପାଇଁ ସଭିଙ୍କ ବ୍ୟଗ୍ରତା ପରିଲକ୍ଷିତ ହୋଇଥିଲା । ଏଥିସହ ଓଡ଼ିଶା ସଂପର୍କିତ ତଥ୍ୟ ସଂପର୍କରେ ବିଦେଶୀମାନେ ଅବଗତ ହୋଇପାରିଥିଲେ ।

**ମତ ଓ ମନ୍ତବ୍ୟ**

**ଭାରତର ପ୍ରଧାନମନ୍ତ୍ରୀ :** ଓଡ଼ିଶାରେ ବିଶ୍ୱ ହକି ମହାକୁମ୍ଭ ଆୟୋଜନ ଅବସରରେ ଭାରତର ମାନ୍ୟବର ପ୍ରଧାନମନ୍ତ୍ରୀ ଅଂଶଗ୍ରହଣକାରୀ ୧୬ ଗୋଟି ଦେଶର ହକି ଟିମ୍‌କୁ ସ୍ୱାଗତ କରିବା ସହ ସେମାନଙ୍କୁ ଶୁଭେଚ୍ଛା ଜଣାଇଛନ୍ତି । ଏହି ବିଶ୍ୱସ୍ତରୀୟ ପ୍ରତିଯୋଗିତା କ୍ରୀଡାପ୍ରେମୀଙ୍କ ନିମନ୍ତେ ଆମୋଦଦାୟକ ହେବା ସହ ଏହା ସେମାନଙ୍କୁ ଭାରତ ବିଶେଷଭାବେ ଓଡ଼ିଶାର ସଂସ୍କୃତି ସଂପର୍କରେ ଜ୍ଞାନ ଆହରଣ କରିବା ଦିଗରେ ଅପୂର୍ବ ସୁଯୋଗ ଆଣିଦେବ ବୋଲି ସେ ଟ୍ୱିଟ୍ କରିଛନ୍ତି । ଏଥିସହ ମହା ସମାରୋହରେ ବିଶ୍ୱ ହକି କପ୍‌ର ଆୟୋଜନ ଓ ସମାପନ ନିମନ୍ତେ ତାଙ୍କର ଉତ୍ସାହଭରା ବାର୍ତ୍ତା ଯୋଗୁଁ ମାନ୍ୟବର ମୁଖ୍ୟମନ୍ତ୍ରୀ ମଧ୍ୟ କୃତଜ୍ଞତା ପ୍ରକାଶ କରିଛନ୍ତି ।

**ଓଡ଼ିଶାର ମୁଖ୍ୟମନ୍ତ୍ରୀ :** ଓଡ଼ିଶା ପୁରୁଷ ବିଶ୍ୱ କପ୍ ହକି-୨୦୧୮ର ଉଦ୍‌ଘାଟନୀ ଉତ୍ସବ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ କହିଥିଲେ ଯେ, ''ଏପରି ଆୟୋଜନ କରି ଓଡ଼ିଶା ସାରା ବିଶ୍ୱକୁ ଏକାଠି କରିପାରିଛି ।'' ଏତଦ୍‌ବ୍ୟତୀତ, ଓଡ଼ିଶା ତରଫରୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଯେତେବେଳେ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଭେଟିଛନ୍ତି, ସେତେବେଳେ ସମସ୍ତଙ୍କ ମୁହଁରେ ଗୋଟିଏ କଥା ବାରମ୍ବାର ପ୍ରତିଧ୍ୱନିତ ହୋଇଛି, '' କେଡ଼େ ସୁନ୍ଦର ଏ ଜାଗା, କେତେ ଭଲ ଲୋକ ।'' ଏପରି ଉକ୍ତି ବାସ୍ତବିକ୍ ମୁଖ୍ୟମନ୍ତ୍ରୀଙ୍କୁ ଭାବପ୍ରବଣ କରିଦେଇଥିଲା ଏବଂ ସେ ଆଗକୁ ଏପରି ଅନେକ ସ୍ୱପ୍ନକୁ ରୂପାୟିତ କରିବା ଦିଗରେ ଯେ ଅଗ୍ରସର ହେବେ, ଏହା ତାଙ୍କର ଉପରୋକ୍ତ ବକ୍ତବ୍ୟରୁ ସ୍ପଷ୍ଟ ପ୍ରତୀୟମାନ ହୋଇଛି ।

**କିମ୍ବଦନ୍ତୀ କ୍ରିକେଟର୍ ସଚିନ୍ ତେନ୍ଦୁଲ୍‌କର :** ଏପରି ଏକ ଅଭୁତପୂର୍ବ ଆୟୋଜନ ସଂପର୍କରେ ଫାଇନାଲ୍ ମ୍ୟାଚ୍‌ରେ ଉପସ୍ଥିତ ଥିବା ଏହି ମହାନ୍ କ୍ରିକେଟର ନିଜ ମନ୍ତବ୍ୟରେ କହିଥିଲେ ଯେ, ''କଳିଙ୍ଗ ଷ୍ଟାଡ଼ିୟମ୍‌ରେ ହକି ବିଶ୍ୱ କପ୍‌ର ବିଶେଷ ଆୟୋଜନ ଦେଖି ବର୍ଣ୍ଣନା କରିବାକୁ ମୁଁ ଭାଷା ପାଉନି । ମୁଁ ବାକ୍‌ଶୂନ୍ୟ । ଏଠାକୁ ଆସି ମୁଁ ଯେଉଁ ଅଭିଜ୍ଞତା ସାଉଁଟିଲି, ସତରେ ଅତି ଚମତ୍କାର । ଓଡ଼ିଶା ସରକାରଙ୍କ ସହଯୋଗ ବିନା ଏତେବଡ଼ ଆୟୋଜନ ସମ୍ଭବ ହୋଇପାରିନଥାନ୍ତା । ''

**ଆନ୍ତର୍ଜାତିକ ହକି ମହାସଂଘ ସଭାପତି :** ସମ୍ମାନିତ ଅତିଥି ରୂପେ ଯୋଗଦେଇ ଆନ୍ତର୍ଜାତିକ ହକି ମହାସଂଘର ସଭାପତି ନରିନ୍ଦର ବାତ୍ରା ତାଙ୍କ ବକ୍ତବ୍ୟରେ କହିଥିଲେ, '' ବଡ଼ ବଡ଼ ପ୍ରତିଯୋଗିତାର ସଫଳ ଆୟୋଜନ କରିବାରେ ଓଡ଼ିଶାର ସ୍ୱତନ୍ତ୍ର ସୁଖ୍ୟାତି ରହିଛି । କଳିଙ୍ଗ ଷ୍ଟାଡ଼ିୟମ୍ ବିଶ୍ୱର ଶ୍ରେଷ୍ଠ ୩ ଗୋଟି ଷ୍ଟାଡ଼ିୟମ୍ ମଧ୍ୟରୁ ଅନ୍ୟତମ । ହକି ବିଶ୍ୱ କପ୍ ଆୟୋଜନ କରି ଓଡ଼ିଶା ଦେଶର କ୍ରୀଡା ରାଜଧାନୀ ଭାବେ ଉଭାହୋଇଛି । ''

**ଓଡ଼ିଶା ପୁରୁଷ ବିଶ୍ୱ କପ୍ ହକି ମହାକୁମ୍ଭ ଉଦ୍‌ଯାପନୀ ସମାରୋହ :** କ୍ରୀଡ଼ା ହେଉଛି ଭାଇଚାରାର ଉପଯୁକ୍ତ ନିଦର୍ଶନ । କ୍ରୀଡ଼ା ଆୟୋଜନ ପୂର୍ବକ ଦେଶ ଦେଶ ମଧ୍ୟରେ ସୁସଂପର୍କ ପ୍ରତିଷ୍ଠା ହୋଇଥାଏ । ବିଭିନ୍ନ କ୍ରୀଡ଼ା କସରତରେ ସୁଗଠିତ ଶରୀର ସହ ସୁସ୍ଥ ନାଗରିକ ସମାଜ ସମ୍ଭବ ହୁଏ । ଏହା ଉଭୟ ଶାରୀରିକ ଓ ମାନସିକ ଭାବେ କ୍ରୀଡ଼ାବିତ୍‌କୁ ସୁସ୍ଥ ଓ ସବଳ ରଖିଥାଏ । ଏଥିରେ ହାର୍‌ଜିତ୍ ତ ଲାଗିରହିବ । ହାର୍‌ଜିତ୍ ହେଉଛି କ୍ରୀଡ଼ାର ଏକ ଅଙ୍ଗ । ବିଶ୍ୱ ହକି କପ୍‌ରେ ଭାରତ ହାରିଯାଇଥିଲେ ମଧ୍ୟ ଖେଳୁଆଡ଼ ମନୋଭାବ ହେଉଛି ବଡ଼କଥା । ଯିଏ ଭଲ ଖେଳିଲା ତାକୁ ପ୍ରଶଂସା କରିବା ମନୋବୃତ୍ତି

ସକାରାତ୍ମକ ମନୋଭାବର ଲକ୍ଷଣ । ତେବେ ସେ ଯାହାହେଉ, କଳିଙ୍ଗ ଷ୍ଟାଡିୟମ୍‌ରେ ଅନୁଷ୍ଠିତ ଫାଇନାଲ୍‌ରେ ନେଦରଲାଣ୍ଡ୍‌ସକୁ ହରାଇ ବେଲ୍‌ଜିୟମ୍‌ର ବିଜୟ ବିଶ୍ୱ କ୍ରୀଡ଼ା ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇରହିଲା ।




ସୁନ୍ଦର ସକାଳଟିଏ ବତାଇଦିଏ ଦିନଟି କେମିତି କଟିବ । ସେହିପରି, ଓଡ଼ିଶା ପୁରୁଷ ବିଶ୍ୱ କପ୍ ହକି ମହାକୁମ୍ଭ ଆୟୋଜନ ସକାଶେ ପ୍ରସ୍ତୁତି, ଏହାର ଉଦ୍‌ଘାଟନ ସମାରୋହ ପରି ଉଦ୍‌ଯାପନୀ ଉତ୍ସବଟି ବେଶ୍ ଚିତ୍ତାକର୍ଷକ ଥିଲା । ମାନ୍ୟବର ମୁଖ୍ୟମନ୍ତ୍ରୀ ବିଶ୍ୱ ଚମ୍ପିଅନ୍ ଦଳକୁ ଟ୍ରଫି ପ୍ରଦାନ କରିଥିଲେ ।

ମାଇଁ ହାର୍ଟ ବିଟ୍ସ୍‌ ଫର୍ ହକି ଅର୍ଥାତ୍ ହକି ନିମନ୍ତେ ମୋର ହୃଦୟ ସ୍ପନ୍ଦିତ ହେଉଛି । ଏପରି ଏକ ସ୍ଲୋଗାନ୍ ବାସ୍ତବିକ ଓଡ଼ିଶା ମାଟିରେ ହକି ପ୍ରତି ଥିବା ମାତ୍ରାଧିକ ଆଗ୍ରହକୁ ସୂଚାଉଛି । ଏପରି ଏକ ସୁନ୍ଦର ଆୟୋଜନ ଦେଶର କ୍ରୀଡ଼ା ରାଜଧାନୀ ବିବେଚିତ ଓଡ଼ିଶାର ଜନସାଧାରଣଙ୍କ ମନରେ ଦଶନ୍ଧି ଦଶନ୍ଧି ଧରି ବସା ବାନ୍ଧି ହୋଇରହିଥିବ ଏବଂ ଏହା ତାଙ୍କୁ ଗୌରବାନ୍ୱିତ କରୁଥିବ । ଅନ୍ୟ ଏକ ଉଲ୍ଲେଖନୀୟ ଘଟଣାକ୍ରମେ, ହିଂସା ପରିତ୍ୟାଗ କରି ସମାଜର ମୁଖ୍ୟ ସ୍ରୋତକୁ ଫେରିଆସିଥିବା ମାଓବାଦୀମାନେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସହ ଏକାଠି ବସି ମ୍ୟାଚ୍ ଦେଖିବା ଘଟଣା ସମାଜକୁ ଏକ ସକାରାତ୍ମକ ବାର୍ତ୍ତା ଦେଇଛି । ଆବାଳବୃଦ୍ଧବନିତାଙ୍କ ସୁବିଧାକୁ ଦୃଷ୍ଟିରେ ରଖି ସମସ୍ତ ପଦକ୍ଷେପ ଗ୍ରହଣ କରାଯାଇଥିବାରୁ ଏହା ସେମାନଙ୍କୁ ଆନନ୍ଦିତ କରିଥିଲା ।

ସର୍ବଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଏପରି ବିରଳ ଆୟୋଜନ ଓଡ଼ିଶାରେ ସଫଳତାର ସହ ହୋଇପାରିଥିବାରୁ, ସାରା ବିଶ୍ୱବାସୀ ଆଜିର ଓଡ଼ିଶାର ସ୍ଥିତି, ଅବସ୍ଥିତି ଓ ପରିସ୍ଥିତି ବିଷୟରେ ବେଶ୍ ହୃଦୟଙ୍ଗମ କରିପାରିଥିବେ ।



# ସମ୍ପାଦକୀୟ



ଓଡିଶାରେ ଚାଲିଛି ବିକାଶର ପର୍ବ । ପ୍ରତ୍ୟେକ ବର୍ଗର ଜନସାଧାରଣଙ୍କ ହିତ ସାଧନ ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ରାଜ୍ୟ ସରକାର ନିରନ୍ତର ଉଦ୍ୟମ କରିଆସୁଛନ୍ତି । ସମଗ୍ର ଦେଶରେ ଓଡିଶା ଆଜି ଆଦର୍ଶ ପଦବାଚ୍ୟ । ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ସକ୍ରିୟ ପଦକ୍ଷେପଠାରୁ ଆରମ୍ଭ କରି ପୁରୁଷ ହକି ବିଶ୍ୱ କପ୍‌ର ଚତୁର୍ଦ୍ଦଶ ସଂସ୍କରଣ ଆୟୋଜନ ପରି ବହୁମୁଖୀ କାର୍ଯ୍ୟକ୍ରମ ପ୍ରତିଟି ଓଡିଆକୁ କରିଛି ଗର୍ବିତ । ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ହେଉ କି ରାଜ୍ୟର ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା–ପ୍ରତ୍ୟେକଟି କାର୍ଯ୍ୟକ୍ରମ ଓଡିଶାର ସାମଗ୍ରିକ ଅଭିବୃଦ୍ଧି ଓ ଏହାର ଜନସାଧାରଣଙ୍କ ସାମଗ୍ରିକ ବିକାଶକୁ ସୁନିଶ୍ଚିତ କରିପାରିଛି । 'ମେକ୍ ଇନ୍ ଓଡିଶା କନ୍‌କ୍ଲେଭ୍' ଅଭୁତପୂର୍ବ ସଫଳତା ହାସଲ କରିପାରିଛି । ପ୍ରାୟ ୫ ଲକ୍ଷ ଯୁବକଯୁବତୀଙ୍କ ପାଇଁ ଲକ୍ଷ୍ୟଭିତ୍ତିକ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ସହ ୪ ଲକ୍ଷ କୋଟି ଟଙ୍କାର ପୁଞ୍ଜି ବିନିଯୋଗ ନିମନ୍ତେ ରାଜିନାମା ସ୍ୱାକ୍ଷରିତ ହୋଇଛି । ପ୍ରତ୍ୟକ୍ଷ ଉତ୍ପାଦନ କ୍ଷେତ୍ର ନିମନ୍ତେ ପୁଞ୍ଜି ବିନିଯୋଗ ହାରରେ ସମଗ୍ର ଭାରତରେ ଓଡିଶା ଆଗରେ ରହିଛି । ପ୍ରାୟ ୧୮ ଲକ୍ଷ ପକ୍କା ଘର ନିର୍ମାଣ କରାଯାଇଛି ଏବଂ ସହର ବସ୍ତି ବାସିନ୍ଦାଙ୍କ ନିମନ୍ତେ ଜମି ପଟ୍ଟା ଯୋଗାଇ ଦିଆଯାଇଛି । ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଓଡିଶା ସର୍ବକାଳୀନ ରେକର୍ଡ କରିପାରିଛି । ଶିଶୁ ମୃତ୍ୟୁ ହାର ଉଲ୍ଲେଖନୀୟ ଭାବେ ହ୍ରାସ ପାଇଛି । 'ମମତା' ଯୋଜନା ମାଧ୍ୟମରେ ୩୦ ଲକ୍ଷ ମହିଳା ଉଭୟ ସାମାଜିକ ଓ ଅର୍ଥନୈତିକ ସ୍ତରରେ ସଶକ୍ତ ହୋଇପାରିଛନ୍ତି । 'ମିଶନ୍ ଶକ୍ତି' ପ୍ରାୟ ୭୦ ଲକ୍ଷ ମହିଳାଙ୍କୁ ଆତ୍ମନିର୍ଭରଶୀଳ କରିପାରିଛି । ଓଡିଶା ଦକ୍ଷତା ବିକାଶ କାର୍ଯ୍ୟକ୍ରମ ଦ୍ୱାରା ୯ ଲକ୍ଷ ଯୁବକଯୁବତୀ ପ୍ରଶିକ୍ଷଣ ଲାଭ କରିପାରିଛନ୍ତି । ଓଡିଶା, ସମୁଦାୟ ଖାଦ୍ୟଶସ୍ୟ ଉତ୍ପାଦନ

କାଟେଗୋରୀ– ୨ ରେ, କେନ୍ଦ୍ର ସରକାରଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଛି । ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ବହିର୍ବିଭାଗ ସ୍ୱାସ୍ଥ୍ୟ ସେବା ନିମନ୍ତେ ସମଗ୍ର ଦେଶରେ ଓଡିଶା ଦ୍ୱିତୀୟ ସ୍ଥାନ ଅଧିକାର କରିପାରିଛି । ଅଢେଇ ଗୁଣ ରପ୍ତାନି ବୃଦ୍ଧି ସହ ଆମ ରାଜ୍ୟ ଓଡିଶା ରପ୍ତାନି କ୍ଷେତ୍ରରେ ଚମ୍ପିଅନ୍ ରାଜ୍ୟ ଭାବେ ଉଭା ହୋଇଛି ।

ବିଗତ ବର୍ଷଟି ଥିଲା ଆମ ରାଜ୍ୟ ନିମନ୍ତେ ତ୍ୱରିତ୍, ପୋଷଣୀୟ ଓ ସାମଗ୍ରିକ ଅଭିବୃଦ୍ଧିର ଏକ ବର୍ଷ । ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଉଛି ଯେ, ଆମ ରାଜ୍ୟରେ କୃଷି ଅଭିବୃଦ୍ଧିକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର କୃଷକମାନଙ୍କ ସହାୟତା ତଥା ଆୟ ବୃଦ୍ଧି ନିମନ୍ତେ 'କାଳିଆ' ଯୋଜନା କାର୍ଯ୍ୟକାରୀ କରିଛନ୍ତି ।

କୃଷକମାନଙ୍କୁ ସମ୍ମାନର ସହ ବଂଚିବା ନିମନ୍ତେ ସକ୍ଷମ କରିବାକୁ ଐତିହାସିକ 'କାଳିଆ' ଯୋଜନା ଆରମ୍ଭ କରି ସମଗ୍ର ଦେଶ ପାଇଁ ପଥ ପ୍ରଦର୍ଶନ କରିଥିବା ଆମ ମୁଖ୍ୟମନ୍ତ୍ରୀଙ୍କ ଏପରି ପଦକ୍ଷେପରେ ଆମେ ସଭିଏଁ ଗର୍ବିତ ।

ବିଗତ ବର୍ଷର ସଫଳତା ବଜାୟ ରଖିବା ସହ ନୂତନ ବର୍ଷରେ ନବ ଉନ୍ମାଦନା ପୂର୍ବକ ଉତ୍କର୍ଷ ଲାଭ ନିମନ୍ତେ ସମସ୍ତେ ପ୍ରଯତ୍ନଶୀଳ ହେବା ଓ ଓଡ଼ିଶାକୁ ବିକାଶର ଉତ୍ତୁଙ୍ଗ ଶିଖରରେ ପହଞ୍ଚାଇବା ପାଇଁ ହାତକୁ ହାତ ମିଶାଇ କାର୍ଯ୍ୟ କରିଚାଲିବା । ନବବର୍ଷ – ୨୦୧୯ ର ଅଭିନନ୍ଦନ ଜଣାଉଛି ଏବଂ ସମସ୍ତଙ୍କ ସୁଖ ସମୃଦ୍ଧି ନିମନ୍ତେ ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ।

(signature)

ସମ୍ପାଦକ



# ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ପ୍ରାଚୀନ ଚାରି ଆଶ୍ରମ

ଡକ୍ଟର ଭାସ୍କର ମିଶ୍ର

ଦିବ୍ୟ ଭାରତବର୍ଷର ସୁପ୍ରସିଦ୍ଧ ଚାରି ଧାମ ମଧ୍ୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ବା ଶ୍ରୀଜଗନ୍ନାଥ ଧାମ ଅନ୍ୟତମ । ବିଭିନ୍ନ ପୁରାଣାଦି ଗ୍ରନ୍ଥରେ ଏହି ପ୍ରସିଦ୍ଧ କ୍ଷେତ୍ରର ମହିମା ବହୁଳ ଭାବରେ ବର୍ଣ୍ଣନା କରାଯାଇଛି । ବିଶେଷକରି ନୀଳାଚଳାଧିପତି ଦାରୁବ୍ରହ୍ମରୂପୀ ଶ୍ରୀଜଗନ୍ନାଥାଦି ଚତୁର୍ଦ୍ଧା ବିଗ୍ରହଙ୍କର ପାବନ ସ୍ପର୍ଶରେ ମହିମାନ୍ୱିତ ଏହି ପୁଣ୍ୟଭୂମି ଯୁଗେ ଯୁଗେ ଭାରତବର୍ଷର ବିଭିନ୍ନ ଆଚାର୍ଯ୍ୟ, ସନ୍ଥ, ମୁନି, ଋଷି ଓ ଧର୍ମପ୍ରାଣ ଜନତାର ଆକର୍ଷଣର କେନ୍ଦ୍ର ଭାବରେ ବିବେଚିତ ହୋଇଆସିଛି । ଅତ୍ୟନ୍ତ ପ୍ରାଚୀନ ସମୟରୁ ବହୁ ସାଧୁ, ସନ୍ଥ, ମୁନି, ଋଷି, ଆଚାର୍ଯ୍ୟବୃନ୍ଦ ଭାରତବର୍ଷର ବିଭିନ୍ନ ସ୍ଥାନରୁ ଏହି ପବିତ୍ରତମ କ୍ଷେତ୍ର ବା ଧାମକୁ ଆଗମନପୂର୍ବକ ପରଂବ୍ରହ୍ମରୂପୀ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମେତ ଏହି ପୁଣ୍ୟକ୍ଷେତ୍ରର ଆଧ୍ୟାତ୍ମିକତାରେ ବିମୋହିତ ପୂର୍ବକ ଏଠାରେ ବିଭିନ୍ନ ଆଶ୍ରମ, ମଠ ଇତ୍ୟାଦି ସ୍ଥାପନ କରିଥିଲେ । ଏପରିକି କ୍ଷେତ୍ରରେ କିଛି କାଳ ଅତିବାହିତ କରି ମହାପ୍ରଭୁଙ୍କ ଉପାସନାରେ ନିଜକୁ ନିମଗ୍ନ କରିଥିଲେ ।

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ମଠାନୁଷ୍ଠାନର ଉତ୍ପତ୍ତି ପୂର୍ବରୁ ଆଶ୍ରମମାନ ପ୍ରତିଷ୍ଠିତ ହୋଇଥିଲା । ତନ୍ମଧ୍ୟରେ ପ୍ରାଚୀନ ୪ଜଣ ଋଷିଙ୍କ ନାମରେ ସ୍ଥାପିତ ଚାରି ଆଶ୍ରମ ଓ ସାତାସନ ଆଶ୍ରମ ଅନ୍ୟତମ । ତତ୍କାଳୀନ ସମୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଘଞ୍ଚ ବୃକ୍ଷରାଜି ମଧ୍ୟରେ ପ୍ରତିଷ୍ଠିତ ହୋଇଥିବା ଆଶ୍ରମଗୁଡିକ ଥିଲା ସେମାନଙ୍କର ଆଧ୍ୟାତ୍ମିକ ସାଧନାର ଉତ୍କୃଷ୍ଟ ସ୍ଥାନ । ସୁତରାଂ ପରମପାବନ ପୁରୁଷୋତ୍ତମ କ୍ଷେତ୍ରର ଏହି ଆଶ୍ରମ ପରମ୍ପରା ଅତୀବ ପ୍ରାଚୀନ । ଏହି ଦିବ୍ୟ କ୍ଷେତ୍ରରେ ଚାରିଜଣ ପ୍ରସିଦ୍ଧ ଋଷି ଚାରିଗୋଟି ଆଶ୍ରମ ପ୍ରତିଷ୍ଠା କରି ଅବସ୍ଥାନ କରୁଥିବା ଜନଶ୍ରୁତି ରହିଅଛି । ସେମାନେ ହେଲେ ମହର୍ଷି ଅଙ୍ଗିରା, ମୁନିପୁଙ୍ଗବ ଭୃଗୁ, ମହାମୁନି କଣ୍ଡୁ ଓ ସପ୍ତକଳ୍ପଜୀବୀ ମୁନି ମାର୍କଣ୍ଡେୟ । ଏମାନଙ୍କ ମଧ୍ୟରୁ ମହର୍ଷି ଅଙ୍ଗିରା ଓ ଭୃଗୁ ହେଉଛନ୍ତି ବୈଦିକ ଋଷି । ମହାମୁନି କଣ୍ଡୁ ଓ ମାର୍କଣ୍ଡେୟ ପୌରାଣିକ ଋଷି ଭାବରେ ବିଦିତ । ଏହି ପ୍ରାଚୀନ ଚାରି ଆଶ୍ରମ ଏବେ ବି ଶ୍ରୀମନ୍ଦିରର ବିଶେଷ ନୀତି ସହ ପ୍ରତ୍ୟକ୍ଷ ଭାବେ ସଂଶ୍ଳିଷ୍ଟ । ଅତୀତର ସେହି ପ୍ରାଚୀନ ଋଷି ଆଶ୍ରମଗୁଡିକ ସଂପ୍ରତି ଜରାଜୀର୍ଣ୍ଣ ଅବସ୍ଥାରେ ତଥା ଅବହେଳିତ ଅବସ୍ଥାରେ ରହି ସେହି ପ୍ରାଚୀନ ଗୌରବାବହ ଋଷିକୁଳ ପରମ୍ପରାର ସ୍ୱାକ୍ଷର ବହନ କରି ମୂକସାକ୍ଷୀରୂପେ ବିରାଜିତ । ଏହି ପ୍ରାଚୀନ ଋଷି ଆଶ୍ରମ ପ୍ରତିଷ୍ଠାର ବହୁକାଳ ପରେ ଏହି ଦିବ୍ୟ କ୍ଷେତ୍ରକୁ ଆକର୍ଷିତ ହୋଇ ଆଚାର୍ଯ୍ୟ ଶଙ୍କର, ରାମାନୁଜ, ଶ୍ରୀଚୈତନ୍ୟ ଇତ୍ୟାଦି ବିଶିଷ୍ଟ ଆଚାର୍ଯ୍ୟବୃନ୍ଦ ଆଗମନ କରି ସ୍ୱ ସ୍ୱ ମଠାନୁଷ୍ଠାନ ପ୍ରତିଷ୍ଠା କରିଥିଲେ ।

ଶ୍ରୀକ୍ଷେତ୍ର ବା ଅଧୁନାତମ ପୁରୀ ସହରରେ ଥିବା ପ୍ରାଚୀନ ଚାରି ଆଶ୍ରମମାନଙ୍କ ମଧ୍ୟରେ ଅଙ୍ଗିରାଶ୍ରମ, ଭୃଗୁ ଆଶ୍ରମ, କଣ୍ଡୁ ଆଶ୍ରମ ଓ ମାର୍କଣ୍ଡେୟ ଆଶ୍ରମ ଅନ୍ୟତମ । ଶ୍ରୀମନ୍ଦିରର ବିଶେଷ ନୀତି ସହ ସମ୍ବନ୍ଧିତ ଏହି ଆଶ୍ରମମାନଙ୍କ ସମ୍ପର୍କରେ ନିମ୍ନରେ ଆଲୋକପାତ କରାଯାଉଛି ।

**ଅଙ୍ଗିରାଶ୍ରମ–** ମହର୍ଷି ଅଙ୍ଗିରା ଜଣେ ବୈଦିକ ଋଷି । ତାଙ୍କର ଅନ୍ୟନାମ ଅଙ୍ଗିରସ । ସେ ପ୍ରଜାପତି ବ୍ରହ୍ମାଙ୍କର ମାନସପୁତ୍ର । କର୍ଦ୍ଦମ ଋଷିଙ୍କ କନ୍ୟା ଶୁଭା ବା ଶ୍ରଦ୍ଧା ଏହାଙ୍କର ପତ୍ନୀ ଅଟନ୍ତି । ଶ୍ରଦ୍ଧାଙ୍କ ଔରସରୁ ଉତଥ୍ୟ ଓ ବୃହସ୍ପତି ନାମରେ

ଦୁଇଟି ପୁତ୍ର ସନ୍ତାନ ଜନ୍ମଲାଭ କରିଥିଲେ। ଅଙ୍ଗିରା ଜଣେ ଧର୍ମଶାସ୍ତ୍ର ପ୍ରବର୍ତ୍ତକ ମହର୍ଷି । ଅଙ୍ଗୀରସ-ସଂହିତା ନାମକ ଏକ ସ୍ମୃତି ଗ୍ରନ୍ଥ ଏହାଙ୍କ ଦ୍ୱାରା ପ୍ରଣୀତ ହୋଇଥିଲା । ପ୍ରସିଦ୍ଧ ସପ୍ତର୍ଷିମାନଙ୍କ ମଧ୍ୟରେ ମହର୍ଷି ଅଙ୍ଗିରା ଅନ୍ୟତମ ଓ ସେ ଏକ ଜ୍ୟୋତିଷ ଗ୍ରନ୍ଥ ରଚନା କରିଥିବା ଜଣାଯାଏ ।

ପୁରୀ ଟାଉନ୍‌ର ଦୋଳମଣ୍ଡପ ସାହି ଜହ୍ନିମୁଣ୍ଡିଆ ଛକ ସମ୍ମୁଖ ଭାଗରେ ଅଙ୍ଗିରା ଆଶ୍ରମଟି ବିଦ୍ୟମାନ । ଏହି ପ୍ରାଚୀନ ଆଶ୍ରମ ପରିସରରେ ପୁରାତନ ବଟ ଓ ଅଶ୍ୱତ୍ଥ ବୃକ୍ଷ ରହିଅଛି । ଆଶ୍ରମ ମଧ୍ୟରେ ଏକ ଜରାଜୀର୍ଣ୍ଣ ଗୁମ୍ଫା ରହିଅଛି । ଗୁମ୍ଫାକୁ ଲାଗି ଏକ କ୍ଷୁଦ୍ରକାୟ ମନ୍ଦିରଟିଏ ବିରାଜମାନ । ମନ୍ଦିରରେ ଶ୍ରୀଜଗନ୍ନାଥ, ବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନ ପୂଜା ପାଉଥିବା ବେଳେ ପାର୍ଶ୍ୱରେ ଶ୍ରୀରଘୁନାଥଙ୍କର କମନୀୟ ବିଗ୍ରହ, ଅଞ୍ଜନା, ହନୁମାନ, ୮ମୂର୍ତ୍ତି ଶାଳଗ୍ରାମ ବିରାଜିତ । ସମ୍ଭବତଃ ପରବର୍ତ୍ତୀ କାଳରେ ଏହି ପ୍ରାଚୀନ ଆଶ୍ରମଟି ପୁରୀସ୍ଥ ବଡଛତା ମଠ ଅଧୀନରେ ପରିଚାଳିତ ହେବା ପରେ ଏହି ଶ୍ରୀରଘୁନାଥ ବିଗ୍ରହଙ୍କୁ ମଠର କୌଣସି ମଠାଧୀଶ ସ୍ଥାପିତ କରିଥିବେ । ଅତ୍ୟନ୍ତ ଅବହେଳିତ ତଥା ଜରାଜୀର୍ଣ୍ଣ ଅବସ୍ଥାରେ ରହିଥିବା ଏହି ଆଶ୍ରମ ପରିସରରୁ କେତେକ ଦୁର୍ଲଭ ମୂର୍ତ୍ତି ଆଦି ଚୋରି ହୋଇଯାଇଥିବା ବେଳେ ଏବେ ବି ଆଶ୍ରମର ବିଜେସ୍ଥଳୀରେ ଥିବା ବଟବୃକ୍ଷର କୋରଡରେ ବହୁ କାଳରୁ ନାଗସର୍ପ ବାସ କରୁଥିବା ସ୍ଥାନୀୟ ଅଧିବାସୀଙ୍କ ମୁଖରୁ ଶୁଣାଯାଏ । ଜଣାଯାଏ ଯେ, ଏହି ସର୍ପଟି ବୟସାଧିକ ହେତୁ ତାହାର ଲାଞ୍ଜ ମଧ୍ୟ ଛିଣ୍ଡିଯାଇଛି । ତେବେ ପୂଜକ କିମ୍ବା ଅନ୍ୟ କାହାରି କ୍ଷତି ସାଧନ କରୁନଥିବା ସ୍ଥାନୀୟ ଅଧିବାସୀଙ୍କଠାରୁ ଜଣାଯାଏ ।

**ଭୃଗୁ ଆଶ୍ରମ–** ମହର୍ଷି ଅଙ୍ଗିରାଙ୍କ ଭଳି ଭୃଗୁ ମଧ୍ୟ ଜଣେ ବୈଦିକ ଋଷି । ମହାଭାରତର ଅନୁଶାସନ ପର୍ବର ଉଲ୍ଲେଖ ପ୍ରକାରେ ଭୃଗୁ ମହାଦେବଙ୍କର ମାନସ ପୁତ୍ର ଥିଲେ । ଭୃଗୁଙ୍କଠାରୁ ଶୁକ୍ରାଚାର୍ଯ୍ୟ ଜନ୍ମଗ୍ରହଣ କରିଥିଲେ । ଭଗବାନ ପରଶୁରାମ ଏହାଙ୍କ ବଂଶରେ ଜାତ ହୋଇଥିଲେ । ଅନ୍ୟ ଏକ ମତାନୁଯାୟୀ ଭୃଗୁ ହେଉଛନ୍ତି ବ୍ରହ୍ମାଙ୍କ ମାନସପୁତ୍ର । ଦକ୍ଷ ସୁତା ଖ୍ୟାତିଙ୍କ ସହିତ ଏହାଙ୍କର ବିବାହ ହୋଇଥିଲା । ବିଷ୍ଣୁ ପତ୍ନୀ ଲକ୍ଷ୍ମୀ ଏହାଙ୍କର କନ୍ୟା ଓ ଦୁଇପୁତ୍ର ହେଉଛନ୍ତି ଧାତା ଓ ବିଧାତା । ଏ ହେଉଛନ୍ତି ଧନୁର୍ବିଦ୍ୟାର ପ୍ରବର୍ତ୍ତକ ଓ ଭୃଗୁ ବଂଶର ଆଦିପୁରୁଷ ।

ପୁରୀ ବାଲିସାହି ମୁଖ୍ୟ ରାସ୍ତାର କଦମ୍ବଗଡ଼ ଜାଗା ନିକଟରେ ଭୃଗୁ ଋଷିଙ୍କ ଆଶ୍ରମ ଅବସ୍ଥିତ । ଚାରି ଆଶ୍ରମ ମଧ୍ୟରେ ଭୃଗୁ ଋଷିଙ୍କ ଆଶ୍ରମ ସର୍ବପ୍ରାଚୀନ ଅଟେ । ଏହି ଆଶ୍ରମରେ ଥିବା ଯଜ୍ଞ ମଣ୍ଡପ ସଂପ୍ରତି ଅନେକ ବର୍ଷ ଧରି ଲୁପ୍ତପ୍ରାୟ । ଭୃଗୁ ଆଶ୍ରମର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଜହ୍ନିଖାଇ ଠାକୁରାଣୀ । ବୋଧହୁଏ ଆଶ୍ରମ ପ୍ରତିଷ୍ଠାର ବହୁକାଳ ପରେ ଏ ଦେବୀଙ୍କୁ ଏଠାରେ ପ୍ରତିଷ୍ଠା କରାଯାଇଥିଲା । ଜନଶ୍ରୁତି ଅନୁଯାୟୀ ଏହା ଶ୍ରୀଜଗନ୍ନାଥଙ୍କ ଗୁରୁକୁଳ ଆଶ୍ରମ ଏବଂ ଏ ବୈଦିକ ଋଷି ବରୁଣଙ୍କ ପୁତ୍ର ଅଟନ୍ତି । ତେଣୁ ଏ ଭୃଗୁ ବାରୁଣି ନାମରେ ପରିଚିତ ।

ଆଶ୍ରମ ପରିସରରେ ଉଗ୍ରସେନଙ୍କ ପ୍ରତିମା ଉପାସିତ ହେଉଛନ୍ତି । ସ୍କନ୍ଦ ପୁରାଣୋକ୍ତ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟର ଉଲ୍ଲେଖ ପ୍ରକାରେ ମହୋଦଧି ସ୍ନାନ ପୂର୍ବରୁ ଏହି ଉଗ୍ରସେନଙ୍କଠାରୁ ଅନୁଜ୍ଞା ନେବା ବିଧେୟ । ଉଗ୍ରସେନ ମନ୍ଦିରଟି ଉଗ୍ରସେନ ମୁଣ୍ଡି ନାମରେ ମଧ୍ୟ ବିଦିତ । ଉଗ୍ରସେନ ଏକ ଶ୍ମଶ୍ରୁବନ୍ତ ବିଗ୍ରହ । ଏହାଙ୍କ ଦକ୍ଷିଣ ଉପର ହସ୍ତରେ ଚକ୍ର, ତଳ ହସ୍ତରେ ଖଡ୍‌ଗ, ଉପର ବାମ ହସ୍ତରେ ଶଙ୍ଖ ଓ ନିମ୍ନ ହସ୍ତରେ ଗଦାଧାରଣ କରିଥିବା ଜଣାଯାଏ । ସେ ବାମ ପାଦ ଭାଙ୍ଗି ଆସନରେ (ଲମ୍ବା ପାଦାସନ) ଉପବିଷ୍ଟ ।

**କଣ୍ଡୁ ଆଶ୍ରମ–** ଗୌଡବାଡ ସାହିର ଯମେଶ୍ୱର ମନ୍ଦିର ନିକଟରେ କଣ୍ଡୁ ଆଶ୍ରମ ବିଦ୍ୟମାନ । ଅନେକ ଭୁଲବଶତଃ ଏହି ଆଶ୍ରମକୁ ପଣ୍ଡୁ ଆଶ୍ରମ ବୋଲି କହିଥାନ୍ତି । କିନ୍ତୁ ବାମଦେବ ସଂହିତାରେ ସ୍ପଷ୍ଟରୂପେ ଏହି ଆଶ୍ରମର ନାମ 'କଣ୍ଡୁ' ବୋଲି ଉଲ୍ଲେଖ ରହିଛି ।

ମହର୍ଷି କଣ୍ଡୁ ହେଉଛନ୍ତି ପୌରାଣିକ ଯୁଗର ଋଷି । ମହାମୁନି କଣ୍ଡଙ୍କର ପୁତ୍ର ମହର୍ଷି କଣ୍ଡୁ ଅଟନ୍ତି । କଣ୍ଡୁଙ୍କ ସମ୍ପର୍କରେ ମିଳୁଥିବା ତଥ୍ୟାନୁଯାୟୀ ଏକଦା ମହର୍ଷି କଣ୍ଡୁ କଠୋର ତପସ୍ୟାରେ ନିମଗ୍ନ ଥିବା ଦେଖି, ଦେବରାଜ ଇନ୍ଦ୍ର ତାଙ୍କ ପଦ ଚାଲିଯିବା ଆଶଙ୍କାରେ ଭୟକରି ପରମା ସୁନ୍ଦରୀ ପ୍ରମ୍ଲୋଚା ନାମ୍ନୀ ଅପ୍‌ସରାଙ୍କୁ, ତାଙ୍କ ତପସ୍ୟା ଭଙ୍ଗ କରିବାକୁ

ପଠାଇଥିଲେ । ମହର୍ଷି କଣ୍ଡୁ ସେହି ଅପ୍‌ସରାଙ୍କ ରୂପ ଲାବଣ୍ୟରେ ମୁଗ୍ଧ ହୋଇ ତାହାଙ୍କ ସହିତ ଦୀର୍ଘଦିନ ପର୍ଯ୍ୟନ୍ତ ଗୃହସ୍ଥ ଜୀବନଯାପନ ବିତାଇଥିଲେ । ଦିନେ ହଠାତ୍ ତାଙ୍କର ଚୈତନ୍ୟୋଦୟ ହେଲା । ନିଜର କର୍ମ ପାଇଁ ଅନୁତାପ କରି ସମସ୍ତ ମାୟା ବନ୍ଧନ ଛିନ୍ନ କରି ପରଂବ୍ରହ୍ମଙ୍କ ବିଜେସ୍ଥଳୀ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଚାଲି ଆସିଥିଲେ । ମହର୍ଷି କଣ୍ଡୁ ଏହି ପାବନ କ୍ଷେତ୍ରରେ ଅବସ୍ଥାନ ପୂର୍ବକ କଠୋର ତପସ୍ୟା ବଳରେ ଭଗବାନଙ୍କୁ ସନ୍ତୁଷ୍ଟ କରି ପରମ ଗତି ଲାଭ କରିଥିଲେ ।

ମହର୍ଷି କଣ୍ଡୁ ଥିଲେ ଶ୍ରୀନୃସିଂହଙ୍କର ଉପାସକ । ବାଲ୍ମୀକି ରାମାୟଣ, ବିଷ୍ଣୁ ପୁରାଣ ପ୍ରଭୃତିର ଉଲ୍ଲେଖ ପ୍ରକାରେ କଣ୍ଡୁ ଶ୍ରୀନୃସିଂହଙ୍କର ଉପାସନା କରି ସିଦ୍ଧିଲାଭ କରିଥିଲେ । ମହାବିଷ୍ଣୁ ଶ୍ରୀନୃସିଂହ ଓ ଶ୍ରୀପୁରୁଷୋତ୍ତମଙ୍କ ମଧ୍ୟରେ ସେ କୌଣସି ପାର୍ଥକ୍ୟ ଦେଖୁ ନଥିଲେ । ତେଣୁ ସେ ଏହି ପାବନ କ୍ଷେତ୍ରରେ ଅବସ୍ଥାନ କରି ଶ୍ରୀନୃସିଂହ ଦେବଙ୍କୁ ଉପାସନା କରିବା ସହିତ ଶ୍ରୀପୁରୁଷୋତ୍ତମଙ୍କୁ ନିତ୍ୟଦର୍ଶନ କରୁଥିଲେ । କାଳକ୍ରମେ ତାଙ୍କ ଆଶ୍ରମରେ ପ୍ରତିଷ୍ଠିତ ହୋଇଥିବା ଶ୍ରୀନୃସିଂହ ଲୋକ ତୁଣ୍ଡରେ ଅପଭ୍ରଂଶ ହୋଇ 'ପଣ୍ଡୁ ନୃସିଂହ' ଓ 'ପଣ୍ଡୁ ଆଶ୍ରମ' ବୋଲି ପ୍ରସିଦ୍ଧି ପାଇଥିଲା ।

**ମାର୍କଣ୍ଡେୟ ଆଶ୍ରମ–** ମାର୍କଣ୍ଡେଶ୍ୱର ସାହିସ୍ଥ ମାର୍କଣ୍ଡେୟ ପୁଷ୍କରିଣୀଠାରେ ଏହି ଆଶ୍ରମଟି ଅବସ୍ଥିତ । ମହର୍ଷି ମୃକଣ୍ଡୁଙ୍କ ପୁତ୍ର ହେଲେ ମହର୍ଷି ମାର୍କଣ୍ଡେୟ । ମାର୍କଣ୍ଡେୟ ପୁରାଣର ଉଲ୍ଲେଖ ଅନୁଯାୟୀ ମହର୍ଷି ଭୃଗୁଙ୍କ ପୁତ୍ର ବିଧାତା, ବିଧାତାଙ୍କ ପୁତ୍ର ମୃକଣ୍ଡୁ, ମୃକଣ୍ଡୁଙ୍କ ପୁତ୍ର ମାର୍କଣ୍ଡେୟ ଓ ମାର୍କଣ୍ଡେୟଙ୍କ ପୁତ୍ର ବେଦଶିରା ।

ଶିବ ପୁରାଣର ବର୍ଣ୍ଣନା ପ୍ରକାରେ, ମାତ୍ର ସାତ ବର୍ଷ ପରମାୟୁଧାରୀ ମାର୍କଣ୍ଡେୟ, ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ମହାମୁନି କଣ୍ଡୁ ଋଷିଙ୍କଠାରୁ ଶିବ ଆରାଧନାର ବିଧିଜ୍ଞାତ ହୋଇ, ମହାଦେବଙ୍କୁ ନିଷ୍ଠାର ସହିତ ଆରାଧନା କରି ସପ୍ତକଳ୍ପଜୀବୀ ହୋଇଥିଲେ । ସ୍କନ୍ଦ ପୁରାଣର ଉଲ୍ଲେଖ ପ୍ରକାରେ, ଋଷି ମାର୍କଣ୍ଡେୟ କଳ୍ପବଟର ବାୟୁକୋଣରେ ମହେଶ୍ୱରଙ୍କୁ ଆରାଧନା କରି ମୃତ୍ୟୁକୁ ଜୟ କରିଥିବା ଜଣାଯାଏ । କାଳଚକ୍ରର ଆବର୍ତ୍ତନରେ ସ୍ୱତନ୍ତ୍ର ଭାବରେ ମାର୍କଣ୍ଡେୟଙ୍କ ଆଶ୍ରମ, ପରିଚୟ ହରାଇଥିଲେ ମଧ୍ୟ ମାର୍କଣ୍ଡେୟ ସରୋବର ତଟବର୍ତ୍ତୀ ସମ୍ପୂର୍ଣ୍ଣ ପରିସର ମାର୍କଣ୍ଡେୟ ଋଷିଙ୍କ ଆଶ୍ରମ ଥିବା ଅନୁମାନ କରାଯାଏ ।

ଏହି ପ୍ରାଚୀନ ଋଷି ଆଶ୍ରମଗୁଡ଼ିକୁ ବର୍ଷର ବିଭିନ୍ନ ତିଥିରେ ଶ୍ରୀମନ୍ଦିରରୁ ଶ୍ରୀସୁଦର୍ଶନ ଓ ଶ୍ରୀବାଡି ନୃସିଂହ, ଶ୍ରୀସୁଦର୍ଶନ ଚକ୍ର ପ୍ରଭୃତି ବିଗ୍ରହମାନେ ବିଜେ କରିଥାନ୍ତି । ତନ୍ମଧ୍ୟରେ ଶ୍ରାବଣ ଶୁକ୍ଳ ନବମୀ, ଶ୍ରାବଣ ମାସ ଚକ୍ରବୁଲା ଏକାଦଶୀ, ମାର୍ଗଶିର ପୂର୍ଣ୍ଣିମା, ଶ୍ରାବଣ ପୂର୍ଣ୍ଣିମା, ଭାଦ୍ରବ ଶୁକ୍ଳ ଅଷ୍ଟମୀ (ରାଧାଷ୍ଟମୀ) ଓ କୁମାର ପୂର୍ଣ୍ଣିମା ଆଦି ଅନ୍ୟତମ ।

### ଶ୍ରୀମନ୍ଦିର ସହ ଚାରି ଆଶ୍ରମର ସମ୍ପର୍କ

**ଶ୍ରାବଣ ଶୁକ୍ଳ ଏକାଦଶୀ (ଚକ୍ରବୁଲା ଏକାଦଶୀ)–** ଶ୍ରାବଣ ମାସ ଚକ୍ରବୁଲା ଏକାଦଶୀ ଦିନ ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ସରିବା ପରେ ଭଣ୍ଡାର ଘରୁ ସୁବର୍ଣ୍ଣ ନିର୍ମିତ ସୁଦର୍ଶନ ଚକ୍ର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇବା ପରେ ଦଇତାପତିମାନଙ୍କ ହସ୍ତରେ ବିଜେ ହୋଇ ବିମାନରେ ଚାରି ଆଶ୍ରମକୁ ପରିଦର୍ଶନରେ ଯାଇଥାନ୍ତି । ବିଜେ ସମୟରେ ଆଶ୍ରମଠାରେ ଭୋଗ, ବନ୍ଦାପନା ସମେତ ରାସ୍ତାରେ ବିଭିନ୍ନ ମଠ, ଜାଗା ଆଖେଡା, ବ୍ୟକ୍ତିବିଶେଷ, ଅନୁଷ୍ଠାନମାନଙ୍କ ପକ୍ଷରୁ ପଂକ୍ତି ଭୋଗ ହୋଇଥାଏ ।

**ଶ୍ରାବଣ ଶୁକ୍ଳ ନବମୀ (ବାଡି ନୃସିଂହ ବିଜେ)–** ଏହି ଦିନ ଶ୍ରୀମନ୍ଦିରର ମଧ୍ୟାହ୍ନ ଧୂପ ନୀତି ସରିବା ପରେ ଦକ୍ଷିଣି ଘରୁ ଶ୍ରୀନୃସିଂହ ବିଜେ କରି ଆଜ୍ଞାମାଳ ପ୍ରାପ୍ତ ହୋଇ ଝୁଲଣ ମଣ୍ଡପ ତଳେ ଥିବା ବିମାନରେ ବସିଥାନ୍ତି । ତତ୍ପରେ ସିଂହଦ୍ୱାର ମାର୍ଗ ଦେଇ ମାର୍କଣ୍ଡ, ଅଙ୍ଗିରା, କଣ୍ଡୁ ଓ ଭୃଗୁ ଇତ୍ୟାଦି ଚାରି ଆଶ୍ରମକୁ ବିଜେ ହୋଇଥାନ୍ତି । ପର୍ବଯାତ୍ରା ଯୋଗାଣିଆ ଦେଇଥିବା ଶୀତଳ ଭୋଗ ପ୍ରତ୍ୟେକ ଆଶ୍ରମଠାରେ କରାଯାଇଥାଏ । ଏହିଦିନ ବାଡି ନୃସିଂହଙ୍କ ବିଜେ ସମୟରେ ସହରରେ ସୁପ୍ରତିଷ୍ଠିତ ବିଭିନ୍ନ ମଠ, ଜାଗା, ଆଖେଡା ଓ ବ୍ୟକ୍ତିବିଶେଷଙ୍କ ତରଫରୁ ପ୍ରାୟ ୪୨ଟି ସ୍ଥାନରେ ପଂକ୍ତି ଭୋଗ ହୋଇଥାଏ । ଏତଦ୍‌ବ୍ୟତୀତ ପ୍ରତ୍ୟେକ ଆଶ୍ରମରେ ଶୀତଳ ଭୋଗ ମଧ୍ୟ ହୋଇଥାଏ । ସୂଚନାଯୋଗ୍ୟ ଯେ, ଏହି ସ୍ୱତନ୍ତ୍ର ନୀତି ବା ପରମ୍ପରା ଥରେ ସହରରେ ବାଡି (ହଇଜା) ରୋଗ ପ୍ରବଳ ଭାବରେ ବ୍ୟାପୀ ଥିବାରୁ (୧୯୦୩ରୁ ୧୯୦୫ ମସିହା

ମଧ୍ୟରେ) ଶ୍ରୀମନ୍ଦିରର ତତ୍କାଳୀନ ମ୍ୟାନେଜର ରାଜକିଶୋର ଦାସଙ୍କ ସମୟରୁ ଆରମ୍ଭ ହୋଇଥିବା ଶ୍ରୀମନ୍ଦିର ସ୍ୱତ୍ୱଲିପିରୁ ଜଣାଯାଏ ।

**ଶ୍ରାବଣ ପୂର୍ଣ୍ଣିମା (ସୁଦର୍ଶନ ଦେବଙ୍କ ବିଜେ)–** ଏହିଦିନ ଦ୍ୱିପ୍ରହର ଧୂପ ଶେଷ ହେବା ପରେ ପ୍ରଭୁ ବଳଭଦ୍ରଙ୍କଠାରେ (ବଡବାଡରେ) ମଙ୍ଗଳାର୍ପଣ ଓ ତିନି ବାଡରେ ବନ୍ଦାପନା ହୋଇଥାଏ । ପୂଜାପଣ୍ଡା ସେବକ ଆଜ୍ଞାମାଳ ପ୍ରଦାନ କରିବା ପରେ ଭୂଦେବୀ, ଶ୍ରୀଦେବୀ ଓ ମଦନମୋହନ ଝୁଲଣ ମଣ୍ଡପକୁ ବିଜେ କରନ୍ତି । ଏହାପରେ ଶ୍ରୀସୁଦର୍ଶନ ଦେବ ଜଗମୋହନରେ ରଖାଯାଇଥିବା ଚଉଦୋଳ (ବିମାନ)କୁ ଦଇତାପତିମାନଙ୍କ ଦ୍ୱାରା ବିଜେ ହୋଇଥାନ୍ତି । ସେଠାରେ ପାଟ, ପତନି ଓ ମାଳଚୂଳ ଇତ୍ୟାଦିରେ ମଣ୍ଡିତ କରାଯାଏ । ଏହାପରେ ବିମାନବଡୁ ସେବକମାନେ ଚଉଦୋଳକୁ ନେଇ ଝୁଲଣ ମଣ୍ଡପ ତଳେ ବିଜେ କରନ୍ତି । ଝୁଲଣ ମଣ୍ଡପଠାରେ ଭଣ୍ଡାର ମେକାପ ଦେଇଥିବା ସୁବର୍ଣ୍ଣ ଓଡ଼ିଆଣୀ (କମରପଟି) ଓ ସୁନା ହରଡମାଳିରେ ସୁଦର୍ଶନ ଦେବଙ୍କୁ ଦଇତାପତିମାନେ ବେଶ କରିଥାନ୍ତି । ତତ୍ପରେ ବିମାନବଡୁମାନେ ଶ୍ରୀସୁଦର୍ଶନ ଦେବଙ୍କୁ ପଟୁଆରରେ ଚାରି ଆଶ୍ରମକୁ ନେଇଥାନ୍ତି । ପ୍ରଥମେ ମାର୍କଣ୍ଡେୟ ଆଶ୍ରମ ଓ ତତ୍ପରେ ଅନ୍ୟାନ୍ୟ ଆଶ୍ରମ ନଗର ଭ୍ରମଣ କରି ବଡଦେଉଳକୁ ବାହୁଡା ବିଜେ କରିଥାନ୍ତି । ପ୍ରତ୍ୟେକ ଆଶ୍ରମଠାରେ ଶ୍ରୀସୁଦର୍ଶନ ଦେବଙ୍କ ଉଦ୍ଦେଶ୍ୟରେ ପୂଜାପଣ୍ଡା ସେବକଙ୍କ ଦ୍ୱାରା ଶୀତଳ ଭୋଗ ନୈବେଦ୍ୟ ହୋଇଥାଏ । ଏହି ଅବସରରେ ଶ୍ରୀକ୍ଷେତ୍ରର ବିଭିନ୍ନ ଅନୁଷ୍ଠାନ, ମନ୍ଦିର, ବ୍ୟକ୍ତିବିଶେଷଙ୍କ ପକ୍ଷରୁ ୩୮ଟି ସ୍ଥାନରେ ଶ୍ରୀସୁଦର୍ଶନ ଦେବଙ୍କ ଉଦ୍ଦେଶ୍ୟରେ ପଂକ୍ତି ଭୋଗମାନ ଅନୁଷ୍ଠିତ ହୋଇଥାଏ ।

**ରାଧାଷ୍ଟମୀ (ଭାଦ୍ର ଶୁକ୍ଳ ଅଷ୍ଟମୀ)–** ଏହି ଦିନ ମଧ୍ୟାହ୍ନ ଧୂପ ସରି ଭିତରେ ପାଣି ପଡିବା ପରେ ପୂଜାପଣ୍ଡା ଶ୍ରୀଅଙ୍ଗରୁ ଆଜ୍ଞାମାଳ ଶ୍ରୀସୁଦର୍ଶନ ଦେବଙ୍କୁ ପ୍ରଦାନ କରିବା ପରେ ଦଇତାପତିମାନେ ଶ୍ରୀସୁଦର୍ଶନଙ୍କୁ ହସ୍ତରେ ବିଜେ କରାଇ ଜଗମୋହନରେ ଥିବା ଚଉଦୋଳରେ ରଖିଥାନ୍ତି । ଏଠାରେ ରୁନ୍ଧା, ପାଟ, ପତନୀ ଲାଗି ହେବା ପରେ ବିମାନବଡୁମାନେ ଝୁଲଣ ମଣ୍ଡପ ତଳେ ଚଉଦୋଳ (ବିମାନ)କୁ ରଖିଥାନ୍ତି । ସେଠାରେ ଦଇତାପତିମାନଙ୍କ ଦ୍ୱାରା ସୁବର୍ଣ୍ଣ ନିର୍ମିତ ହରଡମାଳି, କମରପଟି, ଦୟଣାମାଳି ଦେଇଥିବା ଚୂଳ ଲାଗି ହୋଇ ବଡଦେଉଳକୁ ବେଢାଏ ବୁଲି ଗୌଡବାଡି ସାହିସ୍ଥିତ ଶ୍ରୀଯମେଶ୍ୱରଙ୍କ ଜହ୍ନି ମୁଣ୍ଡିଆ ଉପରେ ବିଜେ କରନ୍ତି । ଏଠାରେ ପ୍ରସାଦ ଲାଗି, ଶୀତଳ ଭୋଗ, ବନ୍ଦାପନା ଇତ୍ୟାଦି ନୀତି ଅନୁଷ୍ଠିତ ହୋଇ ଶ୍ରୀମନ୍ଦିରକୁ ବାହୁଡା ବିଜେ ହୋଇଥାଏ । ଉଲ୍ଲେଖଯୋଗ୍ୟ ଯେ, ଏହିଦିନ ଶ୍ରୀସୁଦର୍ଶନ ଦେବଙ୍କର ଯମେଶ୍ୱର ମହାଦେବ ମନ୍ଦିର ଜଗମୋହନଠାରେ ବିଜେ ହେବା ପରେ ଏକ ବିଶେଷ ନୀତି ପାଳିତ ହୋଇଥାଏ । ଶ୍ରୀସୁଦର୍ଶନ ଉକ୍ତ ମନ୍ଦିରରେ ବିଜେ ହେବା ସମୟରେ ଯମେଶ୍ୱରଙ୍କ ପକ୍ଷରୁ ଜନୈକ ପୂଜାପଣ୍ଡା ସେବକ ଶ୍ରୀମନ୍ଦିରର ବର୍ଷଯାକର ଆୟବ୍ୟୟ ପଠନ କରିବାର ପରମ୍ପରା ରହିଛି । ସଂସ୍କୃତ ଭାଷାରେ ପାଞ୍ଜିରୁ ଏହି ଆୟବ୍ୟୟ ପଠନ କରାଯାଇଥାଏ । ସଂପ୍ରତି ପାଞ୍ଜିପାଠର ବିଧି ରକ୍ଷା କରାଯାଉଛି । ଏ ଦିନ ମଧ୍ୟ କଣ୍ଡୁ ଓ ଭୃଗୁ ଆଶ୍ରମ ସମେତ ଅନ୍ୟାନ୍ୟ ପ୍ରାୟ ୩୧ଟି ସ୍ଥାନରେ ସୁଦର୍ଶନ ଦେବଙ୍କ ଉଦ୍ଦେଶ୍ୟରେ ପଂକ୍ତି ଭୋଗ ହୋଇଥାଏ ।

**କୁମାର ପୂର୍ଣ୍ଣିମା (ସୁଦର୍ଶନ ଦେବଙ୍କ ବିଜେ)–** ଏହିଦିନ ମଧ୍ୟାହ୍ନ ଧୂପ ସରିବା ପରେ ମହାଜନେ (ପୁଷ୍ପାଳକ ସେବକ) ଭୂଦେବୀ ଓ ଶ୍ରୀଦେବୀଙ୍କୁ ଖଟଶେଯ ଘରେ ବିଜେ କଲା ଉତ୍ତାରେ ଦଇତାପତିମାନେ ସିଂହାସନକୁ ଉଠି ପଣ୍ଡା ଆଜ୍ଞାମାଳ ଦେଲେ ସୁଦର୍ଶନଙ୍କୁ ସିଂହାସନରୁ ଜଗମୋହନସ୍ଥିତ ଚଉଦୋଳରେ ବିଜେ କରାଇବେ । ଏଠାରେ ରୁନ୍ଧା, ପାଟ ପତନୀ, ଚୂଳ, ଅଳଙ୍କାର, ପୁଷ୍ପମାଲ୍ୟ ଇତ୍ୟାଦି ଲାଗି ହେବା ପରେ ବଡ ଦେଉଳକୁ ବେଢାଏ ବୁଲି ଘଣ୍ଟ, ଛତା, କାହାଳୀ ସହ ନଗର ଭ୍ରମଣ କରି ଆଶ୍ରମମାନଙ୍କୁ ବିଜେ କରିଥାନ୍ତି । ଆଶ୍ରମରେ ଭୋଗ, ବନ୍ଦାପନା ଓ ସହରର ପ୍ରାୟ ୬୩ଟି ସ୍ଥାନରେ ପଂକ୍ତି ଭୋଗ ହୋଇଥାଏ । ତତ୍ପରେ ବାହୁଡା ବିଜେରେ ଶ୍ରୀମନ୍ଦିରର ପଶ୍ଚିମ ଦ୍ୱାର ଚକଡାଠାରେ ପହଞ୍ଚିବା ପରେ ସେଠାରେ ପତିମହାପାତ୍ର ସେବକ ଲାଗି କରାଇ, ବନ୍ଦାପନା ବଢାଇ ଜଗମୋହନସ୍ଥିତ ଜୟ-ବିଜୟ ଦ୍ୱାରଠାକୁ ବିଜେ ହେବା ପରେ ଦଇତାପତି ରୁନ୍ଧା ଫିଟାଇ ସିଂହାସନରେ ବିଜେ କରାଇବେ ।

**ମାର୍ଗଶିର ପୂର୍ଣ୍ଣିମା (ପଣ୍ଡୁ ନୃସିଂହ ବିଜେ)–** ଏ ଦିନ ସକାଳ ଧୂପ ସମାପନାନ୍ତେ ପୁଷ୍ପାଳକମାନେ ସିଂହାସନକୁ ଉଠି ମଇଲମ, ବେଶ କରିଥାନ୍ତି ଏବଂ ଖଣ୍ଡିଏ ଆଜ୍ଞାମାଳ ଲାଗି କରିଥାନ୍ତି । ମଧ୍ୟାହ୍ନ ଧୂପ ଓ ଦକ୍ଷିଣି ଘରେ ଭୋଗ ସରିବା ପରେ ମହାଜନ ସେବକମାନେ ପଣ୍ଡୁ ନୃସିଂହଙ୍କୁ ହସ୍ତରେ ରତ୍ନସିଂହାସନକୁ ବିଜେ କରାନ୍ତି । ତତ୍ପରେ ବିମାନରେ ବିଜେ ହୋଇ ନୃସିଂହ ଦେବଙ୍କୁ ଚାରି ଆଶ୍ରମ ଭ୍ରମଣ କରାଇ ବଡ ଦେଉଳକୁ ପ୍ରତ୍ୟାବର୍ତ୍ତନ କରାଇଥାନ୍ତି । ଏହାପରେ ମହାଜନେ ରୁନ୍ଧା ଫିଟାଇ ପଣ୍ଡୁ ନୃସିଂହଙ୍କୁ ଦକ୍ଷିଣି ଘରକୁ ବିଜେ କରାନ୍ତି । ଶ୍ରୀମନ୍ଦିର ସ୍ୱତ୍ୱଲିପି ମୁତାବକ ଏହି ବିଗ୍ରହଙ୍କ ଆଶ୍ରମ ବିଜେ ସମୟରେ ସହରର ବିଭିନ୍ନ ଜାଗା, ଆଖେଡା, ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କ ପକ୍ଷରୁ ମୋଟ୍ ୩୯ଟି ସ୍ଥାନରେ ପଂକ୍ତି ଭୋଗ ହୋଇଥାଏ ।

ଉପରି ବର୍ଣ୍ଣିତ ତିଥିମାନଙ୍କରେ ଶ୍ରୀମନ୍ଦିରରୁ ଶ୍ରୀସୁଦର୍ଶନ ଦେବ, ପଣ୍ଡୁ ନୃସିଂହ, ସୁଦର୍ଶନ ଚକ୍ର, ବାଡି ନୃସିଂହ ଇତ୍ୟାଦି ଚଳନ୍ତି ପ୍ରତିମାମାନେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଏହି ପ୍ରାଚୀନ ଋଷି ଆଶ୍ରମକୁ ବିଜେ କରି ଆସୁଥିବାରୁ ତଥା ଶହ ଶହ ବର୍ଷଧରି ଏହି ପରମ୍ପରା ଏବେବି ଅକ୍ଷୁଣ୍ଣ ରହିଥିବାରୁ ଶ୍ରୀମନ୍ଦିର ସହ ଏହି ଆଶ୍ରମମାନଙ୍କର ସମ୍ପର୍କ ଅତି ନିବିଡ ଏବଂ ପ୍ରାଚୀନ ଅଟେ । ଉପଯୁକ୍ତ ରକ୍ଷଣାବେକ୍ଷଣା ତଥା ସୁପରିଚାଳନା ଅଭାବରୁ ସଂପ୍ରତି ଏହି ଆଶ୍ରମଗୁଡିକର ସ୍ଥିତି ଅତ୍ୟନ୍ତ ଦୟନୀୟ ତଥା ଜରାଜୀର୍ଣ୍ଣ ଅବସ୍ଥାରେ ରହିଅଛି । ଏପରିକି ଦୁଇଟି ସ୍ଥାନରେ ଗୋଟିଏ ଗୋଟିଏ ମଣ୍ଡପକୁ ହିଁ ସ୍ମାରକୀ ସ୍ୱରୂପ ଆଶ୍ରମ ନାମରେ ପରିଚିତ ହେଉଅଛି । ଅତୀତରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଗୌରବ ବୃଦ୍ଧି କରୁଥିବା ପୁନିପୁଙ୍ଗବ ମହର୍ଷି କଣ୍ଡୁ, ଅଙ୍ଗିରା, ଭୃଗୁ ଓ ମାର୍କଣ୍ଡେୟଙ୍କ ଆଶ୍ରମ କାଳର କରାଳ ସ୍ରୋତରେ ଲୀନ ହେବାକୁ ବସିଲାଣି, ଏଥିପ୍ରତି ଧାର୍ମିକ ଜାଗରଣ ଓ ସଚେତନତା ସୃଷ୍ଟି ହେବା ଏକାନ୍ତ ଆବଶ୍ୟକ ।

ମୁଖ୍ୟ ସମ୍ପାଦକ, ନୀଳାଦ୍ରି
ଶ୍ରୀଜଗନ୍ନାଥ ଧାମ, ପୁରୀ

**ତଥ୍ୟସୂଚୀ**

୧. ଶ୍ରୀମନ୍ଦିର ସ୍ୱତ୍ୱଲିପି
୨. ଶ୍ରୀଧାମ ଓ ଶ୍ରୀଜଗନ୍ନାଥ ଚେତନା – ଡକ୍ଟର ଭାସ୍କର ମିଶ୍ର
୩. ସଚିତ୍ର ବିଜୟା, ରଥ ସଂଖ୍ୟା, ୨୦୧୬



# ଚକ୍ ଦେ ଓଡ଼ିଶା

ଭାରତୀ ଭୂଷଣ ମିଶ୍ର

ଆମର ପ୍ରିୟ ଜନ୍ମଭୂମି ଓଡ଼ିଶା ଏହାର କଳା, ସଂସ୍କୃତି, ଭାସ୍କର୍ଯ୍ୟ ଓ ଐତିହ୍ୟ ପାଇଁ ସମଗ୍ର ବିଶ୍ୱରେ ପ୍ରସିଦ୍ଧ ।

ଅଧୁନାତନ ସମୟରେ ଓଡ଼ିଶାର ନାମକୁ ବିଶ୍ୱ ମାନଚିତ୍ରରେ ସ୍ଥାନିତ କରିବା ପାଇଁ ପ୍ରୟାସ ଜାରି ରହିଛି । ତନ୍ମଧ୍ୟରେ ଉଲ୍ଲେଖନୀୟ ହେଲା ଓଡ଼ିଶା ପୁରଷ ହକି ବିଶ୍ୱକପର ସଫଳ ଆୟୋଜନ ।

ଅଦ୍ୟାବଧି ଅନ୍ତର୍ଜାତୀୟ କ୍ରୀଡାରେ ଭାରତର ସ୍ଥାନ ସମ୍ପର୍କରେ ଆଲୋଚନା କଲାବେଳେ ବିଶେଷତଃ ଅଲିମ୍ପିକ କ୍ରୀଡାରେ ଆମର ସଫଳତାକୁ ବିଚାର କଲେ ଆମେ ଜାଣିପାରିବା ଯେ ସର୍ବାଧିକ ସ୍ୱର୍ଣ୍ଣପଦକ ଆମେ 'ହକି'ରେ ହିଁ ଲାଭ କରିଛେ । ସେଥିପାଇଁ ଆମ ମନରେ ଗର୍ବ ଆସେ । ଅନ୍ୟ କ୍ରୀଡାମାନଙ୍କରେ ଅଲିମ୍ପିକ୍‌ରେ ଭାରତର ସଫଳତା ସନ୍ତୋଷଜନକ ନୁହେଁ । ସେହି ପରିପ୍ରେକ୍ଷୀରେ ଓଡ଼ିଶାର ସ୍ଥାନ କେଉଁଠି ତାହା ସହଜରେ ଅନୁମେୟ । କିନ୍ତୁ ନିକଟ ଅତୀତରେ ଦୌଡକୁଦ ପ୍ରତିଯୋଗିତାରେ ଓଡ଼ିଶାର ପ୍ରତିଯୋଗୀମାନଙ୍କର ସଫଳତା ଆମ ମନରେ ଏକ ସ୍ୱର୍ଣ୍ଣିମ ଭବିଷ୍ୟତର ଆଶା ସଂଚାର କରୁଛି । କିନ୍ତୁ ହକିରେ ଆମ ରାଜ୍ୟର ଖେଳାଳିମାନଙ୍କର ପାରଦର୍ଶିତା ସବୁଠାରୁ ଉଜ୍ଜ୍ୱଳମୟ । ବିଗତ କିଛି ବର୍ଷ ଧରି ଉଭୟ ପୁରୁଷ ଓ ମହିଳା ଭାରତୀୟ ଦଳରେ ଆମ ରାଜ୍ୟର ଅଧିକାଂଶ ଖେଳାଳି ସ୍ଥାନ ପାଇବା ଆମ ପାଇଁ ଗର୍ବର ବିଷୟ । ପଦ୍ମଶ୍ରୀ ଦିଲ୍ଲୀପ ତିର୍କୀ, ପଦ୍ମଶ୍ରୀ ଇଗ୍ନେସ ତିର୍କୀ ଓ ପ୍ରବୋଧ ତିର୍କୀ ପୁରୁଷ ବିଭାଗରେ ଏବଂ ଜ୍ୟୋତି ସୁନିତା କୁଲୁ, ସୁଭଦ୍ରା






ପ୍ରଧାନ ଓ ସୁନିତା ଲାକ୍ରା ମହିଳା ବିଭାଗରେ ଜାତୀୟ ଦଳର ନେତୃତ୍ୱ ନେଇଛନ୍ତି । ସୁନ୍ଦରଗଡ଼ ଜିଲ୍ଲା ହେଉଛି ଓଡ଼ିଶା ହକିର ଏନ୍ତୁଡିଶାଳ । ଏହି ଜିଲ୍ଲାର ବାଳକ ବାଳିକାମାନେ ପିଲାଟି ଦିନରୁ ହକିକୁ ଆପଣେଇ ନିଅନ୍ତି ନିଜର ପ୍ରିୟ ଖେଳ ଭାବେ । ରାଜ୍ୟର ଅଧିକାଂଶ ହକି ଖେଳାଳି ଏହି ଜିଲ୍ଲାରୁ ଆସିଛନ୍ତି । ସୁନ୍ଦରଗଡ଼ ଓ ରାଉରକେଲାର କ୍ରୀଡା ଛାତ୍ରାବାସ ତଥା ଭୁବନେଶ୍ୱର କ୍ରୀଡା

ଛାତ୍ରାବାସର ଅଧିକାଂଶ ହକି ପ୍ରତିଭା ସୁନ୍ଦରଗଡ଼ ଜିଲ୍ଲାର । ରାଜ୍ୟରେ ହକିର ପ୍ରଚାର ଓ ପ୍ରସାର ପାଇଁ ରାଜ୍ୟ ସରକାର ଅନେକ ପଦକ୍ଷେପ ଗ୍ରହଣ କରିଛନ୍ତି । ତାହା ସହିତ ଓଡ଼ିଶାକୁ ବିଶ୍ୱ କ୍ରୀଡା ମାନଚିତ୍ରରେ ଏକ ପ୍ରମୁଖ ସ୍ଥାନର ଅଧିକାରୀ କରିବା ପାଇଁ ଗତ ୨୦୧୪ ମସିହାରୁ ନିରନ୍ତର ପ୍ରୟାସ ଜାରି ରହିଛି । ୨୦୧୪ର ଚାମ୍ପିଅନ୍ସ ଟ୍ରଫିର ସଫଳ ଆୟୋଜନ ଏହାର ମୂଳଦୁଆ ପକାଇଥିଲା । ଏହା ସହିତ ବିଶ୍ୱ ହକି ଲିଗ୍ ଫାଇନାଲ୍ ଓ ଏସିୟାନ୍ ଆଥ୍ଲେଟିକ୍ସ ଚାମ୍ପିଅନସିପ୍ର ସଫଳ ଆୟୋଜନ କରି ଓଡ଼ିଶା ସରକାର ଭାରତ କାହିଁକି ସମଗ୍ର ବିଶ୍ୱର ପ୍ରଶଂସା ଭାଜନ ହୋଇଥିଲେ । ଏହି ସଫଳତା ଯୋଗୁଁ ଓଡ଼ିଶାକୁ ପୁରୁଷ ହକି ବିଶ୍ୱକପ୍ ୨୦୧୮ର ଆୟୋଜକ ହେବା ପାଇଁ ଅନୁମତି ମିଳିଲା । ମାତ୍ର ୯୦ ଦିନ ମଧ୍ୟରେ ଏସୀୟ ଆଥ୍ଲେଟିକ୍ସ ଚମ୍ପିଅନ୍ସିପ୍ସର ଆୟୋଜନ ପାଇଁ ଥିବା ଆହ୍ୱାନକୁ ଗ୍ରହଣ କରିଥିବା ଓଡ଼ିଶା ସରକାର ଏହି ବିଶ୍ୱକପ୍ ପାଇଁ ଜୋରଦାର୍ ପ୍ରସ୍ତୁତି କରିଛନ୍ତି । କ୍ରୀଡା ଓ ଯୁବ ସେବା ବିଭାଗ ସହିତ ରାଜ୍ୟ ସରକାରଙ୍କର ଅନ୍ୟ ସମସ୍ତ ବିଭାଗ ଏହାକୁ ସଫଳ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଛନ୍ତି ଓ କରୁଛନ୍ତି । ପ୍ରମୁଖ ଆୟୋଜନସ୍ଥଳୀ କଳିଙ୍ଗ ଷ୍ଟାଡିୟମ୍କୁ ନୂତନ ରୂପରେଖ ଦିଆଯାଇଛି । ପୁରାତନ ଗ୍ୟାଲେରୀର ସଂପ୍ରସାରଣ କରାଯାଇ ଦର୍ଶକ ଧାରଣ ସଂଖ୍ୟା ୮୦୦୦ରୁ ୧୫୦୦୦କୁ ବୃଦ୍ଧି କରାଯାଇଛି । ହକି ଷ୍ଟାଡ଼ିୟମ୍ର ଟର୍ଫ ପରିବର୍ତ୍ତନ କରାଯାଇଛି । ଅଭ୍ୟାସ ପାଇଁ ଥିବା ହକି ଷ୍ଟାଡିୟମର ଟର୍ଫକୁ ପୁନଃସ୍ଥାପନ କରାଯାଇଛି । ଦୁଇଟି ମୁଖ୍ୟ ଫାଟକ (ଫାଟକ ନମ୍ବର ୩ ଓ ୪)ର ସଂପ୍ରସାରଣ ସହ ପୁନର୍ନିର୍ମାଣ, ରାସ୍ତାଘାଟର ଉନ୍ନତିକରଣ, ଆଲୋକସଜ୍ଜା, ଦୁଇଟି ଫୁଟ୍ ଓଭର ବ୍ରିଜ୍ର ନିର୍ମାଣ ଆଦି ଅନେକ କାର୍ଯ୍ୟ ଯଥା ସମୟରେ ଶେଷ ହୋଇଛି । ସମଗ୍ର ଷ୍ଟାଡିୟମ ଗୋଟିଏ ନବବଧୂ ପରି ସଜେଇ ହୋଇଛି । କେବଳ ଷ୍ଟାଡ଼ିୟମ୍ ନୁହେଁ, ରାଜଧାନୀ ଭୁବନେଶ୍ୱରର ରାସ୍ତାଘାଟ, ଆଲୋକୀକରଣ, ସାଜସଜ୍ଜା, ପରିମଳ ଓ ପରିବହନ କ୍ଷେତ୍ରରେ ଅନେକ ଆଖିଦୃଶିଆ ପରିବର୍ତ୍ତନ ଅଣାଯାଇଛି । ରାଜଧାନୀବାସୀଙ୍କ ସହିତ ସମଗ୍ର ଓଡ଼ିଶାର ଜନସାଧାରଣଙ୍କର ମନରେ ନାହିଁ ନଥିବା ଉତ୍କଣ୍ଠା । ରାଜଧାନୀରେ ନୂତନ ଟାଉନ୍ ବସ୍ର ପ୍ରଚଳନ, ପଥପାର୍ଶ୍ୱରେ ଦ୍ରୁତଗତିସମ୍ପନ୍ନ ଆଧୁନିକ ସାଇକେଲ୍ର ବ୍ୟବସ୍ଥା, ସାଇକେଲ୍ ଚାଳକଙ୍କ ପାଇଁ ସ୍ୱତନ୍ତ୍ର ଟ୍ରାକ୍, ପାଚେରୀମାନଙ୍କରେ ମନଲୋଭା ଚିତ୍ରକଳା, ପ୍ରମୁଖ ଛକମାନଙ୍କରେ ଓ ଗୁରୁତ୍ୱପୂର୍ଣ୍ଣ ସରକାରୀ କୋଠାବାଡ଼ିରେ ଆଲୋକ ସଜ୍ଜା ଓ ବିଶେଷ କରି ଅଭୁତପୂର୍ବ ସୁରକ୍ଷା ବ୍ୟବସ୍ଥା ହାତକୁ ନେଇଛନ୍ତି ରାଜ୍ୟ ସରକାର ।

ପ୍ରତିଯୋଗିତାର ଶୁଭାରମ୍ଭ ହେଲା ଗତ ନଭେମ୍ବର ୨୭ ତାରିଖ ଦିନ ଅପରାହ୍ନରେ। ଠିକ୍ ପାଞ୍ଚଟାରେ ଷ୍ଟାଡିୟମ୍ରେ ଜଳିଉଠିଲା ରଙ୍ଗବେରଙ୍ଗର ଆଲୋକମାଳା । ବିଶାଳ ଆଥଲେଟିକ୍ ଷ୍ଟାଡିୟମରେ ଅଭୁତପୂର୍ବ ସାଜସଜ୍ଜା । 'ଜୟ ଜଗନ୍ନାଥ' କହି ସମଗ୍ର ଦର୍ଶକମାନଙ୍କୁ ସମ୍ବୋଧନ କଲେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ । 'ଭୁବନେଶ୍ୱରରେ ହେଉଛି ହକି ବିଶ୍ୱକପ୍ । ଆପଣମାନେ ଖୁସି ତ?' ସମବେତ ସ୍ୱରରେ ଉତ୍ତର ଆସିଲା 'ହଁ' । 'ମୁଁ ବି ବହୁତ ଖୁସି', ଆବେଗଭରା ସ୍ୱରରେ କହିଲେ ମୁଖ୍ୟମନ୍ତ୍ରୀ । ଏହାପରେ ପ୍ରତିଯୋଗିତାର ଶୁଭାରମ୍ଭ ଘୋଷଣା କଲେ ମାନ୍ୟବର ମୁଖ୍ୟମନ୍ତ୍ରୀ । ବଲିଉଡ୍ ଅଭିନେତା ଶାହରୁଖଙ୍କ 'ଚକ୍ ଦେ ଇଣ୍ଡିଆ' ସ୍ଲୋଗାନ୍ । ଓସ୍କାର ବିଜେତା ସଙ୍ଗୀତଜ୍ଞ ଏ.ଆର୍.ରେହମାନଙ୍କ କଣ୍ଠ ନିଃସୃତ 'ଜୟ ହିନ୍ଦ୍ ହିନ୍ଦ୍ ଜୟ ଇଣ୍ଡିଆ'ରେ ମନ୍ତ୍ରମୁଗ୍ଧ ହୋଇଗଲେ ଦର୍ଶକମଣ୍ଡଳି । ଭାରତର ପ୍ରଥମ ଡ୍ରୋନ୍ ସୋ, ଲେଜର୍ ଲାଇଟ୍ର ଯାଦୁରେ ସମସ୍ତେ ଚକିତ ହୋଇଗଲେ । ତା'ପରେ ଓଡ଼ିଶାର ୮୦୦ କଳାକାରଙ୍କ ସହିତ ମୋଟ ୧୧୦୦ ନୃତ୍ୟଶିଳ୍ପୀଙ୍କର ସଙ୍ଗୀତର ତାଳେ ତାଳେ ନୃତ୍ୟ ଓ ବିଶେଷ କରି ବଲିଉଡ ଅଭିନେତ୍ରୀ ମାଧୁରୀ ଦୀକ୍ଷିତଙ୍କର ମନଲୋଭା କାର୍ଯ୍ୟକ୍ରମରେ ସମସ୍ତେ ବିମୋହିତ । ତା'ପରେ ଅନୁଷ୍ଠିତ ହେଲା ଆଖିଝଲସା ଆତସବାଦୀ । ସମଗ୍ର ବିଶ୍ୱକୁ ଚମକେଇ ଦେଲା ଓଡ଼ିଶା । ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଲା ଓଡ଼ିଶାର ନାମ । ବିଶ୍ୱର କୋଣ ଅନୁକୋଣରେ ଗୁଞ୍ଜରିତ ହେଲା ଓଡ଼ିଶାର ନାମ । ଏହି ବିଶ୍ୱକପ୍ରେ ଅଂଶଗ୍ରହଣକାରୀ ସମସ୍ତ ୧୬ ଗୋଟି ଦେଶର ଖେଳାଳି, କର୍ମକର୍ତ୍ତା ଓ ପ୍ରଶଂସକ ଓଡ଼ିଶାର ଆୟୋଜନ ଦକ୍ଷତାର ତାରିଫ କରିଥିବାବେଳେ ଆମର ଆତିଥେୟତାକୁ ଭୁରି ଭୁରି ପ୍ରଶଂସା କରିଛନ୍ତି । ଉତ୍ତମ ରହଣି, ଖ୍ୟାଦ୍ୟପେୟ, ପରିମଳ ବ୍ୟବସ୍ଥା ଓ ଗମନାଗମନ ସୁବିଧା

ଅତି ଉଚ୍ଚକୋଟୀର ବୋଲି ସେମାନେ ମତବ୍ୟକ୍ତ କରିଛନ୍ତି । ଆନ୍ତର୍ଜାତିକ ହକି ଫେଡେରେସନର ସଭାପତି ଶ୍ରୀ ନରିନ୍ଦର ଧ୍ରୁବ ବାତ୍ରା କହିଛନ୍ତି ଯେ ଓଡ଼ିଶା ବିଶ୍ୱକପ୍ ଆୟୋଜନର ଯେଉଁ ମାପଦଣ୍ଡ ପ୍ରସ୍ତୁତ କରିଛି, ତାହା ସ୍ପର୍ଶ କରିବା ବିଶ୍ୱର ଅନ୍ୟମାନଙ୍କ ପାଇଁ ନିଶ୍ଚିତ କଷ୍ଟକର ହେବ । ଆୟୋଜନ ଦକ୍ଷତାର ପରିଭାଷା ଏବେ ବଦଳି ଯାଇଛି ।

ଓଡ଼ିଶା ପୁରୁଷ ହକି ବିଶ୍ୱକପ୍ ୨୦୧୮ର ଆୟୋଜକ ସହର ଭାବେ ଭୁବନେଶ୍ୱର ଯେଉଁ ସୁଖ୍ୟାତି ପାଇଛି, ତାହା ଦୀର୍ଘଦିନ ପର୍ଯ୍ୟନ୍ତ ନିଶ୍ଚୟ ଅତୁଟ ରହିବ । ରାଜ୍ୟ ସରକାରଙ୍କର ସମସ୍ତ ବିଭାଗ ଏଥିପାଇଁ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି ।

ବିଶ୍ୱ ଇତିହାସରେ ସେତେବେଳେ ଇତିହାସ ସୃଷ୍ଟି ହେଲା ଯେତେବେଳେ କି ନଭେମ୍ବର ୨୮ରେ ହଜାର ବର୍ଷର ସହର କଟକରେ ଅନୁଷ୍ଠିତ ହେଲା ବିଶ୍ୱକପ୍ ହକିର ଦ୍ୱିତୀୟ ଉଦ୍‌ଘାଟନ ଉତ୍ସବ । ପ୍ରଖ୍ୟାତ ସଙ୍ଗୀତଜ୍ଞ ଏ.ଆର୍.ରେହମାନଙ୍କ ସଙ୍ଗୀତର ଯାଦୁରେ ଝୁମିଲେ ଦର୍ଶକ । ବଲିଉଡ ଅଭିନେତା ସଲ୍‌ମାନ୍ ଖାନ୍ ଭାଇଚାରାର ସହର କଟକରେ ତାଙ୍କର ନିଆରା ଅନ୍ଦାଜ୍‌ରେ ସମସ୍ତଙ୍କୁ ଆପଣାର କରିନେଲେ । ଭୁବନେଶ୍ୱରରେ ଶାହରୁଖ ଖାନ୍ ଓ କଟକରେ ସଲମାନ୍ ଖାନ୍ ବିଶ୍ୱକପ୍‌ର ଆୟୋଜନ ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କୁ ଅଶେଷ ଧନ୍ୟବାଦ ଜ୍ଞାପନ କଲେ ।

ଉଦ୍‌ଘାଟନ ଉତ୍ସବରେ ଅନ୍ୟତମ ଆକର୍ଷଣ ଥିଲେ ୧୯୭୫ର ବିଶ୍ୱକପ୍ ବିଜେତା ଭାରତୀୟ ଦଳର ଅଧିନାୟକ ଅଜିତ୍‌ପାଲ ସିଂହ, ସଦସ୍ୟ ଅଶୋକ କୁମାର, ଅସ୍‌ଲାମ୍ ଶେରଖାନ୍ ଏବଂ ଅନ୍ୟମାନେ । ସମସ୍ତଙ୍କୁ ଭବ୍ୟ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ସମ୍ବର୍ଦ୍ଧନାର ଉତ୍ତରରେ ଅଜିତ୍‌ପାଲ୍ ସିଂହ କହିଥିଲେ– 'ବିଶ୍ୱକପ୍ ବିଜୟର ଅନୁଭବ ଏବେ ବି ତାଜା ଅଛି, ଏବେ ବି ସେ ଖୁସିକୁ ଆମେ ସାଇତି ରଖିଛୁ' ।

ସବୁଠାରୁ ଉଲ୍ଲେଖନୀୟ ଯେ ଉଦ୍‌ଘାଟନ ଉତ୍ସବରେ ଅଂଶଗ୍ରହଣ କରିଥିବା ଅତିଥି କଳାକାର ଓ ଅତିଥିଙ୍କ ମୁହଁରେ ଓଡ଼ିଆ ଭାଷା ଏବଂ ଓଡ଼ିଶାର ପ୍ରଶଂସା । ଘୋଷକ/ଘୋଷିକା ଆର.ଜେ.ରୌନକ, ଆର.ଜେ.ମଲିଷ୍ଠା, ସିଆମକ ଡାବର, ଶାହରୁଖ୍ ଖାନ୍, ଗୌରବ କପୁର ଓ ଅନ୍ତର୍ଜାତୀୟ ହକି ଫେଡେରେସନ୍‌ର ସଭାପତି ନରିନ୍ଦର ବାତ୍ରା ପ୍ରମୁଖ ଓଡ଼ିଆରେ ସେମାନଙ୍କର ଭାଷଣ ଆରମ୍ଭ କରିଥିଲେ । ଅଭିନେତ୍ରୀ ମାଧୁରୀ ଦୀକ୍ଷିତଙ୍କ ସହ ପ୍ରାୟ ୧୧୦୦ କଳାକାରଙ୍କ ନୃତ୍ୟରେ ଓଡ଼ିଶା ଦେଖାଇଥିଲା କଳିଙ୍ଗର ଐତିହ୍ୟ, କଳା, ସଂସ୍କୃତି, ପର୍ଯ୍ୟଟନ ଓ କ୍ରୀଡାର ଅପରୂପ ବୈଭବ । ପରିବେଶ ସୁରକ୍ଷା ସମ୍ପର୍କିତ ମନୋରଂଜନ କାର୍ଯ୍ୟକ୍ରମ ଥିଲା ଅତ୍ୟନ୍ତ ଆକର୍ଷଣୀୟ ।

ଉଦ୍‌ଘାଟନୀ ଉତ୍ସବ ପାଇଁ ନିର୍ମିତ ହୋଇଥିଲା ଦୁଇଟି ବିଶାଳ ମଂଚ । ତା' ସହିତ ପୃଥିବୀର ପ୍ରତିକୃତି, ବିଶ୍ୱକପ୍ ହକିର ପ୍ରତିକୃତି ଓ ମାଇଁ ହାର୍ଟ ବିଟ୍ସ୍ ଫର ହକିର ଚିହ୍ନ ସମସ୍ତଙ୍କୁ ଆକୃଷ୍ଟ କରିଥିଲା ।

ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଯେତେବେଳେ ୧୬ଟି ହକି ଦଳର ଅଧିନାୟକ ଓ ଶାହରୁଖଙ୍କ ସହ ମଞ୍ଚରେ କରମର୍ଦ୍ଦନ କଲେ, ସେତେବେଳେ ଘନଘନ କରତାଳିରେ ଷ୍ଟାଡିୟମ୍ ପ୍ରକମ୍ପିତ ହେଲା ।

ଉଦ୍‌ଘାଟନୀ ଉତ୍ସବରେ ଏଫ୍.ଆଇ.ଏଚ୍ ସଭାପତି ଡକ୍ଟର ନରିନ୍ଦର ବାତ୍ରା ଯେଉଁ ସ୍ୱାଗତ ଭାଷଣ ଦେଲେ ତାହାର ପ୍ରତ୍ୟେକ ଶବ୍ଦ ଅନେକ ଗୁରୁତ୍ୱ ବହନ କରେ । ତାଙ୍କ ଭାଷଣରେ ସେ କହିଲେ ୨୦୧୩ରେ ଆମକୁ ବିଶ୍ୱକପ୍ ଆୟୋଜନର ଅଧିକାର ମିଳିଥିଲା, ଯାହା ୨୦୧୮ରେ ପୂର୍ଣ୍ଣାଙ୍ଗ ହୋଇଛି । ଓଡ଼ିଶାବାସୀଙ୍କ ପାଇଁ କୌଣସି କାର୍ଯ୍ୟ ଅସମ୍ଭବ ନୁହେଁ । ସେମାନେ ଯେପରି ଭାବେ ଭୁବନେଶ୍ୱର କଳିଙ୍ଗ ଷ୍ଟାଡିୟମକୁ ନୂଆ ରୂପ ଦେଲେ, ତାହା ଆଶ୍ଚର୍ଯ୍ୟର କଥା । ବିଶ୍ୱକପ୍ ହକିର ଇତିହାସରେ ଏଭଳି ଭବ୍ୟ ଉଦ୍‌ଘାଟନୀ ସମାରୋହ କେବେ ହୋଇ ନଥିଲା । ଓଡ଼ିଶା ନୂଆ ଇତିହାସ ରଚନା କଲା । ଆଗକୁ ବିଶ୍ୱକପ୍ କିଭଳି ଆୟୋଜିତ ହେବ ତାହାର ମାନ ନିର୍ଦ୍ଧାରିତ ହୋଇଗଲା । କଳିଙ୍ଗ ଷ୍ଟାଡିୟମ୍ ବିଶ୍ୱର ଶ୍ରେଷ୍ଠ ୩ ଷ୍ଟାଡିୟମ ମଧ୍ୟରୁ ଅନ୍ୟତମ । ଭୁବନେଶ୍ୱର ଏବେ ହେଉଛି ଦେଶର କ୍ରୀଡା ରାଜଧାନୀ । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନିକଟରେ ଓଡ଼ିଶାବାସୀ ଋଣୀ ଓ କୃତଜ୍ଞ ।

ଭବ୍ୟ ଉଦ୍‌ଘାଟନ ସମାରୋହ ପରେ ନଭେମ୍ବର ୨୮ରୁ ଆରମ୍ଭ ହୋଇଛି ପ୍ରତିଯୋଗିତା । କଳିଙ୍ଗ ହକି ଷ୍ଟାଡିୟମ୍‌ରେ

ଲଢ଼ିବେ ୧୬ଟି ଦେଶ । ୪ଟି ପୁଲ୍‌ରେ ୪୮ଟି ଲିଗ୍ ମ୍ୟାଚ୍, ୪ଟି କ୍ରସ୍ ଓଭର ମ୍ୟାଚ୍, ୪ଟି କ୍ୱାର୍ଟର ଫାଇନାଲ୍, ୨ଟି ସେମି ଫାଇନାଲ୍, ଗୋଟିଏ ତୃତୀୟ ସ୍ଥାନ ପାଇଁ ମ୍ୟାଚ୍ ଓ ଶେଷରେ ଡିସେମ୍ବର ୧୬ ତାରିଖ ଦିନ ଫାଇନାଲ୍ ମ୍ୟାଚ୍ ଅନୁଷ୍ଠିତ ହେବ । ତେଣୁ ଚଳିତ ବିଶ୍ୱକପ୍‌ରେ ସମୁଦାୟ ୬୦ଗୋଟି ମ୍ୟାଚ ଅନୁଷ୍ଠିତ ହେବ ।

ଆମ ପାଇଁ ଖୁସିର କଥା ଯେ ଭାରତୀୟ ଦଳରେ ଓଡ଼ିଶାର ଦୁଇ ରକ୍ଷଣ ଭାଗ ଖେଳାଳି ବିରେନ୍ଦ୍ର ଲାକ୍ରା ଓ ଅମିତ ରୋହିଦାସ ସାମିଲ୍ ହୋଇଛନ୍ତି । ବିଶ୍ୱକପ୍ ଇତିହାସରେ ଭାରତର ପ୍ରଦର୍ଶନ ସେତେଟା ଉତ୍ସାହ ଜନକ ନୁହେଁ । ୧୯୭୧ରୁ ଆରମ୍ଭ ହୋଇଥିବା ଏହି ପ୍ରତିଯୋଗିତାରେ ଭାରତ ୧୯୭୧ରେ ତୃତୀୟ, ୧୯୭୩ରେ ଦ୍ୱିତୀୟ ଓ ୧୯୭୫ରେ ଚମ୍ପିଆନ୍ ହୋଇଛି । ତାହାପରଠାରୁ ଆମର ପ୍ରଦର୍ଶନ ଅତ୍ୟନ୍ତ ଗ୍ଲାନିକର ଯଦିଓ ଭାରତ ରେକର୍ଡ ୧୪ଥର ପାଇଁ ବିଶ୍ୱକପ୍ ନିମନ୍ତେ ଯୋଗ୍ୟତା ହାସଲ କରିଛି । ପାକିସ୍ଥାନ ସର୍ବାଧିକ ୪ଥର ବିଶ୍ୱକପ୍ ଜିତିବାର ଗୌରବ ନିଜ ନାମରେ କରିଛି । ସୁଦୀର୍ଘ ୪୭ ବର୍ଷର ବିଶ୍ୱକପ୍ ଇତିହାସରେ ୨୫ଟି ଦେଶ ୫୬୯ଟି ମ୍ୟାଚ୍ ଖେଳିଛନ୍ତି ଓ ୨୨୭୬ଟି ଗୋଲ ସ୍କୋର ହୋଇଛି । ଭାରତ ଏଥରକୁ ମିଶାଇ ତିନିଥର ବିଶ୍ୱକପ୍ ଆୟୋଜନ କରିଛି । ଏହା ପୂର୍ବରୁ ୧୯୮୨ରେ ମୁମ୍ବାଇ ଓ ୨୦୧୦ରେ ନୂଆ ଦିଲ୍ଲୀରେ ଏହା ଆୟୋଜିତ ହୋଇଥିଲା । ୨୦୧୪ ବିଶ୍ୱକପ୍ ନେଦରଲ୍ୟାଣ୍ଡର ଦିହେଗ୍‌ଠାରେ ଅନୁଷ୍ଠିତ ହୋଇଥିଲା । ଅଷ୍ଟ୍ରେଲିଆ ଆୟୋଜକ ଦେଶକୁ ୬–୧ ଗୋଲ୍‌ରେ ହରାଇ କ୍ରମାଗତ ଦ୍ୱିତୀୟଥର ଚମ୍ପିଆନ୍ ହୋଇଥିଲା । ଆଗରୁ ୧୨ଟି ଦେଶ ଏହି ପ୍ରତିଯୋଗିତାରେ ଭାଗ ନେଉଥିବା ବେଳେ ଚଳିତ ବିଶ୍ୱକପ୍‌ରେ ଏହି ସଂଖ୍ୟା ୧୬କୁ ବୃଦ୍ଧି ପାଇଛି । ୨୦୧୮ ବିଶ୍ୱକପ୍‌ର ବିଶ୍ୱ ବିଜେତା କିଏ ହେବ ତାହା ଉପରେ ସମସ୍ତଙ୍କର ଯେତିକି ନଜର ତା'ଠାରୁ ଅଧିକ ନଜର ଏହି କପ୍ ଉପରେ । ପାକିସ୍ଥାନୀ ସେନା ଦ୍ୱାରାଏହି ଟ୍ରଫି ନିର୍ମିତ ହୋଇଥିଲା ଓ ଏହାର ଡିଜାଇନର ଥିଲେ ବସିର୍ ମଜିଦ୍ । ବ୍ରୁସେଲସ୍‌ଠାରେ ୧୯୭୧ ମସିହା ମାର୍ଚ୍ଚ ୨୭ ତାରିଖରେ ଏହା ଆନ୍ତର୍ଜାତିକ ହକି ମହାସଂଘ (ଏଫ୍.ଆଇ.ଏଚ୍)ର ତତ୍‌କାଳୀନ ସଭାପତି ଶ୍ରୀଯୁକ୍ତ ମାସୁଦଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିଲା । ସ୍ୱର୍ଣ୍ଣ ଓ ରୌପ୍ୟ ନିର୍ମିତ ଏହି ଟ୍ରଫିରେ ଗୋଟିଏ ରୌପ୍ୟ କପ୍, ଗୋଟିଏ ବିଶ୍ୱଗ୍ଲୋବ୍ (ସ୍ୱର୍ଣ୍ଣ ଓ ରୌପ୍ୟ) ଓ ଶୀର୍ଷରେ ଗୋଟିଏ ହକି ଷ୍ଟିକ୍ ଓ ବଲ୍ ରହିଛି । ଏଥର ପ୍ରତିଯୋଗିତାର ମାସ୍କଟ ରହିଛି ବିରଳ ଅଲିଭ୍ ରିଡ୍‌ଲେ କଇଁଛ 'ଓଲି' ।

ଯେହେତୁ ଚଳିତ ବିଶ୍ୱକପ୍ ଆମ ରାଜ୍ୟ ଓଡ଼ିଶାରେ ଓ ଆମ ରାଜଧାନୀ ଭୁବନେଶ୍ୱରରେ ଅନୁଷ୍ଠିତ ହେଉଛି, ତେଣୁ ଆମେ ଭାରତୀୟ ଦଳକୁ ପୂର୍ଣ୍ଣମାତ୍ରାରେ ସମର୍ଥନ ଦେଇ ଉତ୍ସାହିତ କରିବା । ଘରୋଇ ପରିବେଶରୁ ଫାଇଦା ଉଠାଇ ଚମ୍ପିଅନ୍ ହେବା ପାଇଁ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ବିନମ୍ର ପ୍ରାର୍ଥନା କରିବା ଆଉ ଏକ ସ୍ୱରରେ କହିବା 'ଚକ୍ ଦେ ଇଣ୍ଡିଆ– ଚକ୍ ଦେ ଓଡ଼ିଶା' ।

---

ପ୍ଲଟ୍ ନଂ– ୨୦୨/୨୧୫୬/୫୭୬୮
ସା: ପ୍ରଗତି ବିହାର, ପୋ:ଅ.–ଶୈଳଶ୍ରୀ ବିହାର
ଭୁବନେଶ୍ୱର–୨୧



# ଓଡ଼ିଶାରେ ବଳଦେବ ଉପାସନା

**ରଂଜନ ପ୍ରଧାନ**

କେନ୍ଦ୍ରାପଡ଼ାର ତୁଳସୀକ୍ଷେତ୍ର ବଳଦେବ ଉପାସନାର ଆଦି ପୀଠ ଭାବେ ଓଡ଼ିଶାରେ ପରିଚିତ । ଏହା ସହିତ ରାଜ୍ୟର ଅନେକ ସ୍ଥାନରେ ବଳଦେବ ଉପାସନା ଅଦ୍ୟାବଧି ପ୍ରଚଳିତ ଅଛି । ତତ୍କାଳୀନ କେନ୍ଦୁଝର ଭଞ୍ଜବଂଶୀ ରାଜାଙ୍କର ରାଷ୍ଟ୍ରଦେବତା ବଳଦେବ ଥିଲେ ।

ଇତିହାସକୁ ଅନୁଧ୍ୟାନ କଲେ ଦେଖାଯାଏ, ଓଡ଼ିଶାରେ ଭଞ୍ଜ ଉପାଧିଧାରୀ ରାଜାମାନେ ଶ୍ରୀବଳଦେବଙ୍କୁ ମୁଖ୍ୟ ଦେବତାର ମାନ୍ୟତା ଦେଇଆସିଛନ୍ତି । କେନ୍ଦୁଝରର ଭଞ୍ଜବଂଶୀ ରାଜାଙ୍କ ରାଷ୍ଟ୍ରଦେବତା ଶ୍ରୀବଳଦେବ ଜୀଉ ହୋଇଥିବା ବେଳେ ମୟୂରଭଞ୍ଜ ଭଞ୍ଜବଂଶୀ ରାଜାଙ୍କ ମୁଖ୍ୟ ଦେବତା ଶ୍ରୀହରିବଳଦେବ ଜୀଉ । ଏହା ସହିତ ରାଜ୍ୟର ଅନେକ ସ୍ଥାନରେ ବଳଦେବଙ୍କର ଉପାସନା ପ୍ରଚଳିତ । ଏସବୁ ଅଂଚଳରେ ଶୈବ ସଂସ୍କୃତିର ବ୍ୟାପକ ପ୍ରସାର ଘଟିଥିବାରୁ ବଳଦେବ ଜୀଉ ଏଠାକାର ମୁଖ୍ୟ ଦେବତା ହୋଇଛନ୍ତି ବୋଲି କୁହାଯାଏ । ଶ୍ରୀବଳଦେବଙ୍କୁ ଶିବଙ୍କର ଅନ୍ୟତମ ରୂପ ଭାବେ ବିଚାର କରାଯାଏ । ଏଣୁ ଏସବୁ ଅଂଚଳରେ ଶ୍ରୀବଳଦେବଙ୍କୁ ମୁଖ୍ୟ ଦେବତା ଭାବେ ଗ୍ରହଣ କରାଯାଇଛି ବୋଲି କୁହାଯାଇପାରିବ । ସେହିଭଳି ଉତ୍ତର ଓଡ଼ିଶାରେ କେନ୍ଦୁଝର ଓ ମୟୂରଭଂଜ ଜିଲ୍ଲାରେ ବସବାସ କରୁଥିବା ଆଦିବାସୀ 'ବାଥୁଡ଼ି'ମାନେ ମଧ୍ୟ ବଳଦେବ ବା ବଳରାମଙ୍କୁ ନିଜର ଆରାଧ୍ୟ ଦେବତା ଭାବେ ପୂଜା କରି ଆସୁଛନ୍ତି । ସେମାନେ ବଳରାମଙ୍କୁ 'ବଡାମ୍' ଠାକୁର ଭାବେ ପୂଜା କରିଥାଆନ୍ତି ଏବଂ ଶିମିଳିପାଳ ଘଂଚ ଜଂଗଲ (ମୟୂରଭଞ୍ଜ) ମଧ୍ୟରେ 'ବଡ଼ାମ'ଙ୍କର ଅଠର ଦେଉଳ ମନ୍ଦିର ରହିଛି । ସେହିଭଳି ଏକାମ୍ର କ୍ଷେତ୍ରରେ ବଳଭଦ୍ର ଶିଳାବ୍ରହ୍ମ ଅନନ୍ତ ବାସୁଦେବ ନାମରେ, ଢେଙ୍ଗାବୋରେଇ ଗ୍ରାମ (ଢେଙ୍କାନାଳ)ରେ ଧବଳମୟ ମଣି ବିଗ୍ରହ (ସିଦ୍ଧ ବଳରାମ) ଭାବେ, ସାଲେପୁର ନିକଟସ୍ଥ ଜିଗ୍ନିପୁର (କଟକ)ରେ ରୋହିଣୀ ନନ୍ଦନ ଭାବେ, ମଞ୍ଜୁରୀ (ଭଦ୍ରକ)ରେ ବଳଦେବ ଜୀଉ ଭାବେ, ଧର୍ମଶାଳା ବ୍ଲକ୍ ଅନ୍ତର୍ଗତ ପାଟପୁର (ଯାଜପୁର)ରେ ବଳଦେବ ନାମରେ, କେନ୍ଦ୍ରାପଡ଼ା ଜିଲ୍ଲାର ଗରଦପୁରରେ ବଳଦେବ ଜୀଉ ନାମରେ, କଟରପାଠାରେ ବଳଦେବ ନାମରେ, ତୁରିନ୍ତରା (ପୁରୀ)ଠାରେ ବଳଦେବ ନାମରେ, ସାକ୍ଷୀଗୋପାଳ (ପୁରୀ)ରେ ସିଦ୍ଧ ବଳରାମ ନାମରେ, ଲହଡ଼ାଠାରେ ବଳଭଦ୍ର ନାମରେ, ଇନ୍ଦୁପୁର (କେନ୍ଦ୍ରାପଡ଼ା)ରେ ବଳଦେବ ଜୀଉ, ପାଣିକୋଇଲି (ଯାଜପୁର) ନିକଟସ୍ଥ ଜହ୍ନା ଗ୍ରାମରେ ବଳଦେବ ଜୀଉ, କନିକାଗଡ଼ରେ ବଳଦେବ ଜୀଉ, ଆଗରପଡ଼ା (ଭଦ୍ରକ)ରେ ବଳଦେବ ଜୀଉ ନାମରେ, ପଳାଶୋଳ (ଜଗତସିଂହପୁର)ରେ ବଳଦେବ ପୂଜା ପାଉଛନ୍ତି ।

ପଞ୍ଚମ-ଷଷ୍ଠ ଶତାବ୍ଦୀ ବେଳକୁ ପୁରୁଷୋତ୍ତମ ପୀଠ ଭାରତବର୍ଷରେ ପ୍ରସିଦ୍ଧିଲାଭ କରିଥିବା କଥା 'ପୂଜାରୀପାଲୀ' ଶିଳାଲେଖରୁ ପ୍ରମାଣିତ ହୋଇଛି । ଏହି ସମୟରେ ପ୍ରସିଦ୍ଧ ନରପତି ଶମ୍ଭୁଯଶ କଳିଙ୍ଗର ନରପତି ଥିଲେ । ତାଙ୍କ ଶାସନାଧୀନ ଦକ୍ଷିଣ ତୋଷାଳି (ଖ୍ରୀ.ଅ. ୫୫୦) ଏବଂ ଉତ୍ତର ତୋଷାଳି (ଖ୍ରୀ.ଅ. ୫୮୦)ରେ ଶମ୍ଭୁଯଶଙ୍କ ବେଶ୍ ପ୍ରଭାବ ଓ ଖ୍ୟାତି ରହିଥିଲା । ସୋରୋ ତାମ୍ର ଶାସନ ଅନୁଯାୟୀ, ଉତ୍ତର ତୋଷାଳିର ରାଷ୍ଟ୍ରଦେବତା ଭାବେ ମଣିନାଗ ବଳଭଦ୍ର ଘୋଷିତ

ହୋଇଥିଲେ। ଷଷ୍ଠ ଶତାବ୍ଦୀରେ ମଣିନାଗ ବଳଭଦ୍ର ଅଧିକ ଲୋକପ୍ରିୟ ଓ ପ୍ରସିଦ୍ଧ ହୋଇଥିବାରୁ ତାଙ୍କୁ ଶମ୍ଭୁଯଶ ରାଷ୍ଟ୍ରୀୟ ମର୍ଯ୍ୟାଦା ଦେଇଥିଲେ। ଏହି ମଣିନାଗ ବଳଭଦ୍ର ସଂପ୍ରତି ପୂଜା ପାଉଥିବା ଈଶ୍ୱରଙ୍କ ବଳଭଦ୍ର ବ୍ୟତୀତ ଅନ୍ୟ କେହି ନୁହଁନ୍ତି। କେନ୍ଦ୍ରାପଡ଼ାର ଅଧିଷ୍ଠାତା ଦେବତା ବଳଦେବ ସ୍ତୋତ୍ରରେ ତାଙ୍କୁ 'ମଣିଶୃଙ୍ଗ ନିବାସାୟ ବଳଦେବାୟତେ ନମଃ' ସ୍ତୁତି କରାଯାଇଥିବାରୁ ରାଜା ଶମ୍ଭୁଯଶଙ୍କର ରାଷ୍ଟ୍ରଦେବତା ଏହି ବଳଦେବ ବା ବଳଭଦ୍ର ବୋଲି ବିଶ୍ୱାସ କରାଯାଏ।

ପ୍ରାଚୀନ ଭାରତରେ ଦୁଇଟି ଅର୍ଥନୈତିକ ସଂସ୍କୃତି ତତ୍କାଳୀନ ସମାଜ ବ୍ୟବସ୍ଥାକୁ ପ୍ରଭାବିତ କରିଥିଲା। ଗୋଟିଏ କୃଷି ସଂସ୍କୃତି ଓ ଅନ୍ୟଟି ଗୋପାଳନ ସଂସ୍କୃତି। କୃଷି ସଂସ୍କୃତିର ପ୍ରତୀକ ଭାବେ ବଳଦେବ (ବଳରାମ) ଥିବାବେଳେ ଗୋପାଳନ ସଂସ୍କୃତିର ପ୍ରତୀକ କୃଷ୍ଣ ଥିଲେ ।

### ସୁମେରୀୟ ସଭ୍ୟତା ଓ ବଳରାମ

ବଳରାମଙ୍କୁ କିଛି ଗବେଷକ ଇଜିପ୍ଟର ଦେବତା ଭାବେ ବର୍ଣ୍ଣନା କରନ୍ତି। ଇଜିପ୍ଟରେ 'ବଲସାମ୍' ନାମରେ ଜଣେ ଦେବତା ପୂଜା ପାଇଥାଆନ୍ତି। ଏହି ଦେବତାଙ୍କୁ ସେଠାରେ କୃଷିର ଦେବତା ଭାବେ ଉପାସନା କରାଯାଇଥାଏ। ଅନୁରୂପ ଭାବେ ହିନ୍ଦୁ ଦେବତା ବଳରାମ ମଧ୍ୟ କୃଷିର ଦେବତା ଏବଂ ହଳଲଙ୍ଗଳ ତାଙ୍କର ମୁଖ୍ୟ ଆୟୁଧ। ମିଶରୀୟ 'ବଲସାମ' ହୁଏତ ଓଡ଼ିଶାର 'ବଳରାମ' ହୋଇଥାଇ ପାରନ୍ତି କିମ୍ବା ଓଡ଼ିଶାର 'ବଳରାମ' ପରବର୍ତ୍ତୀ କାଳରେ ମିଶରରେ 'ବଳରାମ' ଭାବେ ପୂଜା ପାଇଥାଇ ପାରନ୍ତି। ଏହା ଗବେଷଣା ସାପେକ୍ଷ।

ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଶତାବ୍ଦୀ ବେଳକୁ ଇଜିପ୍ଟ, ସୁମେରୀୟମାନଙ୍କ ସହ ଓଡ଼ିଶା (କଳିଙ୍ଗ)ର ବାଣିଜ୍ୟିକ ସମ୍ପର୍କ ଥିଲା। ପ୍ରାଚୀନ ସୁମେର ଓ ପୁରୀ (ପ୍ରାଚୀନ ଓଡ଼ିଶା) ମଧ୍ୟରେ ଏକ ବାଣିଜ୍ୟିକ ସମ୍ପର୍କ ଥିବା କଥା ଇତିହାସରୁ ପ୍ରମାଣ ମିଳିଛି। ଖ୍ରୀଷ୍ଟ ଜନ୍ମର ପ୍ରାୟ ୪୫୦୦ ବର୍ଷ ପୂର୍ବେ ଦଳେ ସାହସୀ ଲୋକ ପାରସ୍ୟ ଉପସାଗର କୂଳରେ ଟାଇଗ୍ରୀସ୍, ୟୁଫ୍ରେଟିସ୍ ନଦୀର ମୁହାଣ ଅଞ୍ଚଳରେ ବସବାସ ଆରମ୍ଭ କରିଥିଲେ। ସେମାନେ ନିଜକୁ 'କୃଷ୍ଣଶିର' (ଦି ଡାର୍କ ହେଡେଡ୍) କହୁଥିଲେ। ସେମାନେ ସୁମେରୀୟ ଥିଲେ। ସୁମେରୀୟମାନେ ଈଶ୍ୱର ବିଶ୍ୱାସୀ ଥିଲେ ଓ ପ୍ରତ୍ୟେକ ନଗରୀରେ ଦେବତାଙ୍କ ମନ୍ଦିର ପାଇଁ ଏକ ବହୁସ୍ତର ବିଶିଷ୍ଟ ସୁଉଚ୍ଚ ପୀଠ ଇଟାରେ ନିର୍ମିତ ହେଉଥିଲା। ଏହା ଉପରକୁ ବହୁ ଥାକ ବିଶିଷ୍ଟ ପାହାଚ ରହୁଥିଲା। ସୁମେରୀୟମାନେ ଏହି ବହୁସ୍ତର ବିଶିଷ୍ଟ ପିରାମିଡ୍‌କୁ 'ଜିଗୁରତ୍' କହୁଥିଲେ। ସୁମେରୀୟମାନେ ଦେବତାଙ୍କୁ ନଗରୀର ମାଲିକ ବା ସର୍ବୋଚ୍ଚ କର୍ତ୍ତା ମନେ କରୁଥିଲେ। ପ୍ରତ୍ୟେକ ନଗରୀ ରାଜ୍ୟରେ ଦଳପତି ରହିଥିଲେ ବି ସେମାନଙ୍କର କ୍ଷମତା ଅଧିକ ନଥିଲା। ସେମାନେ ଦେବତାଙ୍କ ଦାସ ଭାବେ ରାଜ୍ୟ କାର୍ଯ୍ୟ ପରିଚାଳନା କରୁଥିଲେ। ଦେବତାଙ୍କ ପାଇଁ ବହୁ ପରିମାଣରେ ଭୂ-ସମ୍ପତ୍ତି ଖଞ୍ଜି ଦିଆଯାଉଥିଲା। ସୁମେରୀୟଙ୍କ ଭଳି ଏହି ବ୍ୟବସ୍ଥା ପ୍ରାଚୀନ ଓଡ଼ିଶାରେ ଗଜପତି ରାଜାଙ୍କ କ୍ଷେତ୍ରରେ ଦେଖାଯାଉଥିଲା।

ପୁରୀ ଶ୍ରୀଜଗନ୍ନାଥଙ୍କ ମନ୍ଦିର ବେଢ଼ାର ଗଠନକୁ ଲକ୍ଷ୍ୟ କଲେ ଜଣାଯାଏ, ସେଠାରେ ଯେପରି ଏକଦା ଏକ ତିନିସ୍ତର ବିଶିଷ୍ଟ ପ୍ରସ୍ତର ସ୍ତୂପ ବା ପିରାମିଡ୍ ବା ଜିଗୁରତ୍ ରହିଥିଲା ବୋଲି ଜଣାଯାଏ। ଏହି ତ୍ରିସ୍ତର ବିଶିଷ୍ଟ ପିରାମିଡ୍‌କୁ କେତେକାଂଶରେ ବଦଳାଇ ସର୍ବୋଚ୍ଚ ସ୍ତରରେ ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଛି। ଏହି ପିରାମିଡ୍‌ର ତିନୋଟି ସ୍ତରରୁ ମୂଳ ପ୍ରଧାନ ସ୍ତରଟି ଆଜି ସମ୍ପୂର୍ଣ୍ଣ ଭାବେ ମାଟି ତଳେ ରହିଯାଇଛି। ଏହା ଉପରେ ନିର୍ମିତ ପାତାଳେଶ୍ୱର ଓ ଐଶାନେଶ୍ୱର ନାମକ ଶିବ ମନ୍ଦିର ଦୁଇଟି ଦ୍ୱିତୀୟ ସ୍ତରର ପ୍ରସାରଣ ଯୋଗୁଁ ପ୍ରାୟ ୨୦ ଫୁଟ ପୋତି ହୋଇ ପଡ଼ିଥିବାରୁ ଏହି ସ୍ତରର ଉଚ୍ଚତା ସେତିକି (୨୦ ଫୁଟ) ଥିଲା ବୋଲି ଅନୁମାନ କରାଯାଇପାରେ। ହୁଏତ ତୃତୀୟ ସ୍ତରଟି ସମ୍ପୂର୍ଣ୍ଣ ଭାଙ୍ଗି ସେହି ପଥରରେ ଦ୍ୱିତୀୟ ସ୍ତରର ପ୍ରସାରଣ ଓ ମନ୍ଦିର ନିର୍ମାଣ କାର୍ଯ୍ୟ ହୋଇଥାଇପାରେ।

ଆଜିର ଓଡ଼ିଆ ଶବ୍ଦକୋଷରେ ଅନେକ ସୁମେରୀୟ ଶବ୍ଦ ସମେତ ସୁମେରୀୟ ସହରର ନାମ ବହନ କରୁଥିବା ଅନେକ ଗ୍ରାମ ପୁରୀ ଓ ଏହାର ଆଖପାଖ ଅଞ୍ଚଳରେ ରହିଛି। ସୁମେରୀୟମାନେ ପୁରୀ ବନ୍ଦର ମାଧ୍ୟମରେ ପ୍ରାଚୀନ ଓଡ଼ିଶା ସହିତ ବାଣିଜ୍ୟିକ କାରବାର କରୁଥିଲେ ବୋଲି ପୂର୍ବରୁ ଉଲ୍ଲେଖ କରାଯାଇଛି। ଏଣୁ ସୁମେରୀୟମାନେ ପୁରୀ ଓ ଏହାର ଆଖପାଖ

ଅଞ୍ଚଳରେ ଅନେକ ବସ୍ତି ବା ଛୋଟଛୋଟ ନଗର ଗଢ଼ି ଏଗୁଡ଼ିକୁ ସେମାନଙ୍କ ଦେଶର ନିଜ ସହର ନାମରେ ନାମିତ କରିଥାଇପାରନ୍ତି। ଏହିସବୁ ପ୍ରମାଣରୁ ମନେହୁଏ, ସୁମେରୀୟମାନଙ୍କ ଦ୍ୱାରା ନିର୍ମିତ 'ଜିଗୁରତ୍'ମାନଙ୍କ ଉପରେ ବହୁକାଳ ପର୍ଯ୍ୟନ୍ତ ବିଭିନ୍ନ ଦେବଦେବୀଙ୍କର ପୂଜାର୍ଚ୍ଚନା କରାଯାଉଥିଲା। ଓଡ଼ିଆ ଭାଷାରେ ଥିବା 'ଜଗତି' ଶବ୍ଦର ଅର୍ଥ ଉଚ୍ଚ ପୀଠ। ବୋଧହୁଏ ଏହି 'ଜଗତି' ଶବ୍ଦଟି ସୁମେରୀୟଙ୍କ 'ଜିଗୁରତ' ଶବ୍ଦରୁ ସୃଷ୍ଟି ହୋଇଥାଇପାରେ। ପୁରୀରେ ସୁମେରୀୟଙ୍କ ଦ୍ୱାରା ନିର୍ମିତ ବିଶାଳ ଜଗତି ଯେଉଁ ପ୍ରଧାନ ଦେବତାଙ୍କୁ ପ୍ରତିଷ୍ଠା କରାଯାଇ ପୂଜା କରାଯାଉଥିଲା, କାଳକ୍ରମେ ସେମାନଙ୍କୁ 'ଜଗତି ନାଥ' ବୋଲି କୁହାଗଲା। ଏହା ଜୈନ ଧର୍ମ ପ୍ରଭାବରେ ହୋଇଥାଇପାରେ ବୋଲି ଅନୁମାନ କରାଯାଏ। ଏହି 'ଜଗତି ନାଥ' ଶବ୍ଦରୁ କାଳକ୍ରମେ 'ଜଗନ୍ନାଥ' ଶବ୍ଦର ଉଦ୍ଭବ ହୋଇଛି ବୋଲି କୁହାଯାଇପାରେ।

ଇଜିପ୍ଟର ପୁନଟ୍ ନଗରୀରେ ପ୍ରତ୍ନତାତ୍ତ୍ୱିକ ଖନନ ପରେ ମିଳିଥିବା ଅଭିଲେଖକୁ ପାଠ କରାଯାଇ ଏଠାରେ ଥିବା ଜିଗୁରତ୍‌କୁ 'ବଲସାମ' ଶବ୍ଦଟି ବୋଧହୁଏ 'ବଳରାମ' ଶବ୍ଦର ଅପଭ୍ରଂଶ ବୋଲି ଅନୁମାନ କରାଯାଇପାରେ। ଦୀର୍ଘ ହଜାର ହଜାର ବର୍ଷ ପୂର୍ବରୁ ଲିଖିତ ଓ ଅନେକାଂଶରେ ନଷ୍ଟ ହୋଇଯାଇଥିବା ଏହି ଅଭିଲେଖରେ 'ରା' ଅକ୍ଷରକୁ 'ସା' ପଢ଼ିବା କିଛି ବିଚିତ୍ର ମଧ୍ୟ ନୁହେଁ। ସେ ଯାହା ବି ହେଉ, ଏହି ଶବ୍ଦଟିକୁ 'ବଳରାମ' ବୋଲି ଗ୍ରହଣ କଲେ ସେତେବେଳକୁ ଅର୍ଥାତ୍ ଖ୍ରୀ.ପୂ. ୧୫୦୦ରେ 'ବଳରାମ' ଜିଗୁରତର ପ୍ରଧାନ ଦେବତା ଥିଲେ ବୋଲି ବୁଝିବାକୁ ହେବ। ସେହି ଆଧାରରେ ଓଡ଼ିଶାରେ ଜିଗୁରତ୍ (ମନ୍ଦିର)ମାନଙ୍କରେ ମୁଖ୍ୟ ଦେବତା ଭାବେ 'ବଳରାମ' ପୂଜା ପାଇଆସୁଛନ୍ତି ବୋଲି କୁହାଯାଇପାରିବ।

### ବୌଦ୍ଧ ଧର୍ମରେ ବଳଦେବ ଓ ଇଣ୍ଡୋନେସିଆର ବୋରୋବଦର

ବୌଦ୍ଧଧର୍ମରେ ମଧ୍ୟ ବଳଦେବଙ୍କର ପୂଜା ହେଉଥିବାର ଜଣାଯାଏ। ଭାରତର ଅନ୍ଧେରର ସାଞ୍ଚିସ୍ତୂପ, ମେହଗାଓଁ, ଚନ୍ଦନ ଏବଂ ଓଡ଼ିଶାର ଲଳିତଗିରି ପ୍ରତ୍ନତ୍ତ୍ୱିକ ଖନନରୁ ବଳଦେବ ମୂର୍ତ୍ତି ମିଳିଛି। ଏହି ମୂର୍ତ୍ତିଟିରେ ବଳଦେବ ମୂଷଳ ଧାରଣ କରିଥିବାବେଳେ ତାଙ୍କ ମସ୍ତକରେ ସପ୍ତଫେଣୀ ନାଗ ଛତ୍ରୀ ଭଳି ଶୋଭା ପାଉଛି। ସନାତନ ହିନ୍ଦୁ ଧର୍ମରେ ବଳଦେବଙ୍କୁ ଶେଷ ନାଗଙ୍କ ଅବତାର ଭାବେ ଗ୍ରହଣ କରାଯାଏ।

ଇଣ୍ଡୋନେସିଆର ଜାଭା ଦ୍ୱୀପପୁଞ୍ଜର ମାଗେଲାଠାରେ ବୋରୋବୁଦୁର'(Borobuddur) ବା ବୋରୋବୁଦୁର ନାମକ ଏକ ପ୍ରାଚୀନ ମହାଯାନୀ ବୌଦ୍ଧ ମନ୍ଦିର ଅଛି। ଏହି ବୋରୋବୁଦୁର' ହୁଏତ ବଳଭଦ୍ର' ଶବ୍ଦର ଅପଭ୍ରଂଶ ହୋଇଥାଇପାରେ ବୋଲି ଅନୁମାନ କରାଯାଉଛି। ଏହି ମନ୍ଦିରଟି ପୃଥିବୀର ସର୍ବବୃହତ୍ ବୌଦ୍ଧ ମନ୍ଦିର ଭାବେ ସ୍ୱୀକୃତିଲାଭ କରିଛି। ଏଥିରେ ପ୍ରାୟ ୫୦୪ଟି ବୌଦ୍ଧ ମୂର୍ତ୍ତି ରହିଛି। ଏହାର ମୁଖ୍ୟ ଗମ୍ବୁଜରେ ୭୨ଟି ଅତି କ୍ଷୁଦ୍ର ଗମ୍ବୁଜ ରହିଛି। ପ୍ରତି ଗମ୍ବୁଜରେ ବୁଦ୍ଧ ମୂର୍ତ୍ତି ରହିଛି। ଏହି ମନ୍ଦିରଟି ପ୍ରାୟ ନବମ ଶତାବ୍ଦୀରେ ଜାଭାର ଶାସକ ଶୈଳେନ୍ଦ୍ରଙ୍କ ଦ୍ୱାରା ନିର୍ମିତ ହୋଇଥିବାର କୁହାଯାଏ। ରାଜା ଶୈଳେନ୍ଦ୍ରଙ୍କ ପୂର୍ବଜମାନେ କଳିଙ୍ଗରୁ ଯାଇ ସେଠାରେ ସାମ୍ରାଜ୍ୟ ସ୍ଥାପନ କରିଥିଲେ। ସେହି ସମୟ କିମ୍ବା ତାହା ପୂର୍ବରୁ ପ୍ରାଚୀନ ଉତ୍କଳ ସହିତ ଜାଭାର ନୌବାଣିଜ୍ୟିକ ସଂପର୍କ ରହିଥିଲା। କଳିଙ୍ଗର କାରିଗରଙ୍କ ଦ୍ୱାରା ଏହି ବୌଦ୍ଧ ମୂର୍ତ୍ତି ଓ ମନ୍ଦିର ନିର୍ମାଣ କରାଯାଇଥିବାର ବିଶ୍ୱାସ କରାଯାଏ। ଏହି ମନ୍ଦିରରେ ଥିବା ସିଂହ ମୂର୍ତ୍ତି କୋଣାର୍କ ସିଂହ ମୂର୍ତ୍ତି ସହ ସାଦୃଶ୍ୟତା ରକ୍ଷା କରିଥାଏ।

ଇଣ୍ଡୋନେସିଆର ପ୍ରାଚୀନ ମନ୍ଦିରକୁ ଚାଣ୍ଡି (Chandi) କୁହାଯାଏ। ସେଥିପାଇଁ ବୋରୋବୁଦୁର ବୁଦ୍ଧ ମନ୍ଦିରକୁ ଇଣ୍ଡୋନେସିଆରେ ଚାଣ୍ଡି ବୋରୋବୁଦୁର ବୋଲି କୁହାଯାଏ। ତେବେ ବୋରୋବୁଦୁର ନାମକରଣ ସଂପର୍କରେ ଐତିହାସିକ ସାର୍ ଥୋମାସ ରାଫେଲ ତାଙ୍କର Javan History ପୁସ୍ତକରେ ବୋରୋବୁଦୁର କଥା ଉଲ୍ଲେଖ କରିଛନ୍ତି। ଜାଭାର କେତେକ ଭାଷାବିତ୍ ବୋରୋବୁଦୁରକୁ ସଂସ୍କୃତ ଶବ୍ଦ ବିହାର ବୁଦ୍ଧର ଅପଭ୍ରଂଶ ବୋଲି ବିଚାର କରୁଛନ୍ତି। ଐତିହାସିକ ହରିଶ ପୃଷ୍ଟିଙ୍କ ମତରେ ବଳଭଦ୍ର ଶବ୍ଦରୁ ବୋରୋବୁଦୁର ଆସିଛି।

### ଜୈନ ଧର୍ମରେ ବଳଦେବ

ଜୈନ ଧର୍ମରେ ୬୩ ଜଣ ଶଳାକା ପୁରୁଷ ସଂପର୍କରେ ବର୍ଣ୍ଣନା ରହିଛି। ଏହି ଶଳାକା ପୁରୁଷଙ୍କ ମଧ୍ୟରେ ୨୪ ଜଣ

ତୀର୍ଥଙ୍କର (ସଦ୍‌ଗୁରୁ), ୧୨ ଜଣ ଚକ୍ରବର୍ତ୍ତୀ (ଷଡ଼ୈଶ୍ୱର୍ଯ୍ୟଯୁକ୍ତ), ୯ ଜଣ ବଳଦେବ ବା ବଳଭଦ୍ର (ସୁସଭ୍ୟ ଏବଂ ବୀର ପୁରୁଷ), ୯ ଜଣ ନାରାୟଣ ବା ବାସୁଦେବ (ଯୋଦ୍ଧା) ଏବଂ ୯ ଜଣ ପ୍ରତି ବାସୁଦେବ ବା ପ୍ରତି ନାରାୟଣ (ଖଳନାୟକ) ଅଛନ୍ତି।

ଜୈନ ଧର୍ମରେ ଯେଉଁ ୯ ଜଣ ବଳଦେବଙ୍କ ସଂପର୍କରେ ଉଲ୍ଲେଖ ଅଛି, ସେମାନେ ହେଲେ–୧. ଅଚଳ, ୨. ବିଜୟ, ୩. ଧର୍ମପ୍ରଭ (ଭଦ୍ର), ୪. ସୁପ୍ରଭା, ୫. ସୁଦର୍ଶନ, ୬. ଆନନ୍ଦ, ୭. ନନ୍ଦମିତ୍ର (ନାନ୍ଦନ), ୮. ରାମ, ୯. ବଳରାମ (ବଳଭଦ୍ର)। ଏହି ବଳଦେବମାନେ ଧରାପୃଷ୍ଠରେ ଜନ୍ମଲାଭ କରି ପ୍ରତି ବାସୁଦେବ ବା ପ୍ରତି ନାରାୟଣମାନଙ୍କୁ ନିହତ କରି ଧର୍ମଧ୍ୱଜ ଉଡ଼ାଇଥାନ୍ତି।

ଜୈନ ପୁରାଣ ଅନୁସାରେ ନାରାୟଣ ଶ୍ୟାମରଙ୍ଗ ଏବଂ ପୀତବସ୍ତ୍ର ଧାରଣ କରିଥାନ୍ତି। ନାରାୟଣ ସପ୍ତଅସ୍ତ୍ର ଧାରଣ କରିଥାନ୍ତି। ସେଗୁଡ଼ିକ ହେଲା–ସୁଦର୍ଶନ ଚକ୍ର, ଅସୀ (ଖଣ୍ଡା), କୌସ୍ତୁଭ ମଣି, ଧନୁ, ବନମାଳା, ଶଙ୍ଖ ଏବଂ ଯଷ୍ଟି। ବଳଦେବ ଯିଏ କି ନାରାୟଣଙ୍କ ଅର୍ଦ୍ଧେକାଂଶ ଗୌର ବର୍ଣ୍ଣ ଏବଂ ଘନନୀଳ ବସ୍ତ୍ର ଧାରଣ କରିଥାନ୍ତି। ତାଙ୍କର ଅସ୍ତ୍ର ବା ପ୍ରତୀକଗୁଡ଼ିକ ହେଲା–ଧନୁତୀର, ହଳ, ମୂଷଳ। ଦୁଇ ଭାଇ ଅଭିନ୍ନ ଏବଂ ସେମାନେ ମିଳିତ ଭାବେ ଯୁଗକୁ ଶାସନ କରନ୍ତି।

ସେହିଭଳି ଜୈନ ପୁରାଣରେ ଆହୁରି ବର୍ଣ୍ଣନା ରହିଛି, ତୀର୍ଥଙ୍କର, ଚକ୍ରବର୍ତ୍ତୀ, ବଳଦେବ, ବାସୁଦେବ ଏବଂ ପ୍ରତି ବାସୁଦେବଙ୍କ ମଧ୍ୟରେ ତୀର୍ଥଙ୍କର ସବୁଠୁ ଶକ୍ତିଶାଳୀ। ସେ ଧର୍ମ ସ୍ଥାପନ ଏବଂ ମୁକ୍ତି ପ୍ରଦାନ କରନ୍ତି। ଚକ୍ରବର୍ତ୍ତୀ କେବଳ ତାଙ୍କର ସାମ୍ରାଜ୍ୟରେ ମୁକ୍ତି ପ୍ରଦାନ କରନ୍ତି। ପରବର୍ତ୍ତୀ ଅଧିକାରୀ ହେଉଛନ୍ତି ବଳଦେବ। ସେ ସୁସଭ୍ୟ ଏବଂ ମୁକ୍ତି ପ୍ରଦାନ କରନ୍ତି ଏବଂ ତୀର୍ଥଙ୍କର ସହ ସର୍ବଦା ଯୋଗଯୁକ୍ତ ହୋଇଥାନ୍ତି। ଅର୍ଥାତ୍ ସେ ଧ୍ୟାନୀ, ତପସ୍ୱୀ। ସେ ପୁଣି ସର୍ବତ୍ରାଣକର୍ତ୍ତା।

କେତେକ ଜୈନ ପୁରାଣରେ ବଳଦେବଙ୍କ ବଳ ସଂପର୍କରେ ସୂଚନା ରହିଛି। ଗୋଟିଏ ବୃଷଭର ବଳ ୧୨ଜଣ ଯୋଦ୍ଧାଙ୍କ ସହ ସମାନ। ୧୦ଟି ବୃଷଭର ବଳ ସହ ଗୋଟିଏ ଅଶ୍ୱର ବଳ ସମାନ। ୧୨ଟି ଅଶ୍ୱର ବଳ ସହ ଏକଗୋଟି ମଇଁଷିର ବଳ ସମାନ। ୧୫ଟି ମଇଁଷି ବଳ ସହ ଗୋଟିଏ ହସ୍ତୀର ବଳ ସମାନ। ପାଞ୍ଚଶହ ହସ୍ତୀ ବଳ ସହ ଗୋଟିଏ ସିଂହ ବଳ ସମାନ। ଦୁଇ ହଜାର ସିଂହର ବଳ ସହ ଏକ ଅଷ୍ଟପଦୀ (ଯାହାର ଆଠଟି ପାଦ ରହିଛି)ର ବଳ ସମାନ। ଦଶ ହଜାର ଅଷ୍ଟପଦୀର ବଳ ସହ ଏକ ବଳଦେବର ବଳ ସମାନ। ଗୋଟିଏ ବାସୁଦେବ ବଳ ସହ ଦୁଇଟି ବଳଦେବର ବଳ ସମାନ। ଚାରି ହଜାର ଦେବତା ବଳଦେବଙ୍କ ନିଯୋଗୀ। ସେ ସୃଜନ ପୁରୁଷ ଓ ଆଧ୍ୟାତ୍ମିକବାଦୀ।

ହିନ୍ଦୁ ଦେବତା ଶ୍ରୀରାମଙ୍କୁ ଜୈନ ପୁରାଣରେ ଅଷ୍ଟମ ବଳଦେବ ଭାବେ ଗଣାଯାଏ। ଜୈନ ରାମାୟଣ ଓ ବାଲ୍ମୀକି ରାମାୟଣ ମଧ୍ୟରେ ଅନେକ ପାର୍ଥକ୍ୟ ଦେଖାଯାଏ। ବାଲ୍ମୀକି ରାମାୟଣରେ ରାମ ରାବଣକୁ ବଧ କରିଥିଲେ ମାତ୍ର ଜୈନ ରାମାୟଣରେ ଲକ୍ଷ୍ମଣ ରାବଣଙ୍କୁ ବଧ କରିଥିଲେ। ରାବଣ ଶକ୍ତିନାଥଙ୍କ ଜଣେ ନିଷ୍ଠାପର ଭକ୍ତ ଥିଲେ।

ହିନ୍ଦୁ ଦେବତା ବଳରାମ (ବଳଭଦ୍ର) ଜୈନ ଧର୍ମର ଶେଷ ବଳଦେବର ମାନ୍ୟତା ପାଇଛନ୍ତି। ଜୈନଧର୍ମରେ ସେ ଶ୍ରୀକୃଷ୍ଣାଗଜ, ବଳଦେବ, ବଳଭଦ୍ର, ହଳଧର, ହଳାୟୁଧ ରୂପେ ବର୍ଣ୍ଣିତ। ସେ କୃଷି ଓ କୃଷକର ପ୍ରତିନିଧିତ୍ୱ କରିଥାନ୍ତି। ହିନ୍ଦୁ ଧର୍ମରେ ତାଙ୍କର ଆୟୁଧ ହଳ ଓ ମୂଷଳ ଥିବାବେଳେ ଜୈନ ଧର୍ମରେ ତାଙ୍କର ଆୟୁଧ ହଳ, ମୂଷଳ ସହିତ ଧନୁ ଓ ତୀର ଥାଏ। ସେ ତୀର୍ଥଙ୍କର ନେମିନାଥଙ୍କର ସମସାମୟିକ ଏବଂ ନେମିନାଥଙ୍କ ସଂପର୍କୀୟ ଭାଇ ବୋଲି ଜୈନ ପୁରାଣରେ ବର୍ଣ୍ଣନା ରହିଛି। ସେ ଶେଷ ବଳଦେବ ହୋଇଥିବାରୁ ସମସ୍ତ ବଳଦେବଙ୍କଠାରୁ ତାଙ୍କର ଆୟୁଧ ଏବଂ ଉଚ୍ଚତା କମ୍। ତାଙ୍କର ଉଚ୍ଚତା ଦଶ ଧନୁଶର ଉଚ୍ଚତା ସହ ସମାନ ଏବଂ ତାଙ୍କର ଆୟୁ ବାରଶହ ବର୍ଷ।

## ବାଥୁଡ଼ି ସମ୍ପ୍ରଦାୟର 'ବଡାମ୍' ଅର୍ଥାତ୍ ବଳରାମ

ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାରେ ବସବାସ କରୁଥିବା ବାଥୁଡ଼ି ସମ୍ପ୍ରଦାୟର ଆଦିବାସୀମାନେ ବଳରାମ (ବଡାମ୍)ଙ୍କର ପରମଭକ୍ତ ଭାବେ ଜଣାଶୁଣା। ସେମାନେ କାହିଁ କେଉଁ କାଳରୁ ବାଡାମ୍ ବା ବଳରାମଙ୍କୁ ପୂଜା କରି ଆସୁଛନ୍ତି। ବଡାମ୍‌ଙ୍କ ସହିତ ସେମାନେ ଅନ୍ୟ ଦୁଇ ମୂର୍ତ୍ତିର ଉପାସନା କରିଥାଆନ୍ତି, ଯାହାଙ୍କୁ

ପ୍ରଭୁ ଶ୍ରୀଜଗନ୍ନାଥ ଓ ଦେବୀ ସୁଭଦ୍ରାଙ୍କ ସହ ତୁଳନା କରାଯାଇଥାଏ। ଏହି ବାଥୁଡି ସମ୍ପ୍ରଦାୟର ଆଦିବାସୀମାନେ ବଡାମ୍‌ଠାକୁର ଏବଂ ତାଙ୍କ ଭାଇ, ଭଉଣୀଙ୍କୁ ଶିମିଳିପାଳସ୍ଥିତ ଜଙ୍ଗଲ ମଧ୍ୟରେ ଥିବା 'ଅଠର ଦେଉଳ'ରେ ପୂଜା କରିଥାଆନ୍ତି। ଅଠର ଦେଉଳକୁ ନେଇ ବାଥୁଡି ସମ୍ପ୍ରଦାୟରେ ଅନେକ କିମ୍ବଦନ୍ତୀ ଓ ପ୍ରାଚୀନ କାହାଣୀମାନ ରହିଛି। 'ଅଠର ଦେଉଳ'କୁ ସ୍ଥଳବିଶେଷରେ ପୁରୀ ଶ୍ରୀମନ୍ଦିର ସହ ତୁଳନା କରାଯାଇଥାଏ ଏବଂ ଏହି ମନ୍ଦିରରେ ତିନୋଟି ପଥର ବିଗ୍ରହ ପୂଜା ପାଆନ୍ତି। ଏହି ତିନି ବିଗ୍ରହଙ୍କୁ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ସହିତ ତୁଳନା କରାଯାଇଥାଏ। ଶବର ରାଜା ବିଶ୍ୱାବସୁ ଇନ୍ଦ୍ରନୀଳମଣି ବିଗ୍ରହକୁ ପାହାଡ଼ କନ୍ଦର (ଗୁମ୍ଫା)ରେ ରଖି 'ନୀଳମାଧମ' ରୂପେ ପୂଜା କରୁଥିଲେ। ପାହାଡ଼ ପର୍ବତ, ଗୁମ୍ଫାରେ ଗୋପନରେ ଦେବତାଙ୍କୁ ସ୍ଥାପନ କରି ପୂଜା କରିବା ଆଦିବାସୀଙ୍କ ଅନ୍ୟ ଏକ ପରିଚୟ। ବାଥୁଡ଼ିମାନେ ଶିମିଳିପାଳ ଅଭୟାରଣ୍ୟ ମଧ୍ୟରେ ଥିବା ପାହାଡ଼ ଗୁମ୍ଫା ମଧ୍ୟରେ ସେମାନଙ୍କ ଦେବତା 'ବଡାମ୍'ଙ୍କୁ ରଖି ପୂଜା କରିଥାଆନ୍ତି। ବାଥୁଡ଼ିମାନଙ୍କ ଏହି ପୂଜା ଶବରମାନଙ୍କ 'ନୀଳମାଧବ ଉପାସନା' ସହିତ ଅନେକ ସାମଞ୍ଜସ୍ୟ ରଖିଥାଏ। ପ୍ରତି ବାଥୁଡ଼ି ଗାଁରେ ବଡାମ୍‌ଙ୍କ ଉପାସନାସ୍ଥଳ 'ବଡାମ୍ ଶାଳ' ରହିଛି ଏବଂ ଏଠାରେ ବାଥୁଡ଼ିମାନେ ତାଙ୍କୁ ଗ୍ରାମଦେବତା ଭାବେ ପୂଜା କରିଥାଆନ୍ତି।

### କେନ୍ଦୁଝରରେ ବଳଦେବ ଉପାସନା

ଓଡ଼ିଶାର ଦ୍ୱିତୀୟ ବୃହତ୍ତମ ବିଷ୍ଣୁ ମନ୍ଦିର ଭାବେ କେନ୍ଦୁଝର ବଳଦେବଜୀଉ ମନ୍ଦିରର ପ୍ରସିଦ୍ଧି ରହିଛି। ଉତ୍କଳର ରାଷ୍ଟ୍ର ଦେବତା ଶ୍ରୀଜଗନ୍ନାଥ ହୋଇଥିବା ବେଳେ କେନ୍ଦୁଝରର ରାଷ୍ଟ୍ରଦେବତା ଶ୍ରୀଶ୍ରୀ ବଳଦେବଜୀଉ। କେନ୍ଦୁଝରର ରାଜାମାନେ ବଳଦେବଙ୍କୁ ନିଜର ରାଷ୍ଟ୍ର ଦେବତାର ମାନ୍ୟତା ଦେଇଥିଲେ। କେନ୍ଦୁଝରର ପ୍ରଜାମାନେ ଏହାକୁ ସର୍ବାନ୍ତକରଣରେ ଗ୍ରହଣ କରିଥିଲେ। ଶ୍ରୀବଳଦେବ ଜୀଉ ହେଉଛନ୍ତି ସମଗ୍ର କେନ୍ଦୁଝର ଜିଲ୍ଲାର ଆତ୍ମିକ ଚେତନାର ପ୍ରାଣକେନ୍ଦ୍ର। କେନ୍ଦୁଝରରେ ଥିବା ବଳଦେବଙ୍କ ମନ୍ଦିରକୁ କେନ୍ଦୁଝରବାସୀ ଶ୍ରଦ୍ଧାରେ 'ବଡ଼ଦେଉଳ' ବୋଲି କହିଥାଆନ୍ତି। ଶ୍ରୀବଳଦେବଜୀଉ ମଧ୍ୟ କେନ୍ଦୁଝରରେ 'ବଡ଼ଠାକୁର' ଭାବେ ପରିଚିତ। କେନ୍ଦୁଝରର ଭଞ୍ଜବଂଶୀ ରାଜା ଲକ୍ଷ୍ମୀନାରାୟଣ ଭଞ୍ଜ (ଖ୍ରୀ.ଅ. ୧୬୫୪–ଖ୍ରୀ.ଅ. ୧୬୮୮)ଙ୍କ ଦ୍ୱାରା କେନ୍ଦୁଝର ପୁରୁଣା ବଜାରଠାରେ ବଳଦେବଜୀଉଙ୍କ ଏକ ଭବ୍ୟ ମନ୍ଦିର ନିର୍ମିତ ହୋଇଛି। ଏହି ମନ୍ଦିରରେ ଶ୍ରୀବଳଦେବ, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ, ଶ୍ରୀସୁଦର୍ଶନଙ୍କ ମୂର୍ତ୍ତି ପ୍ରତିଷ୍ଠା ହେବାର ବହୁ ପୂର୍ବରୁ କେନ୍ଦୁଝରଗଡ଼ ଓ ରାଜନଗର ଗ୍ରାମରେ ଶ୍ରୀଦଧିବାମନଜୀଉ ନାମରେ ଶ୍ରୀବଳଦେବ, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ ପୂଜା ପାଇଆସୁଥିଲେ।

କେନ୍ଦୁଝରଗଡ଼ର ଶେଷ ଭାଗରେ ଚୂଳିଆ ଓ ଗୋବରା ପାହାଡ଼ର ପାଦଦେଶରେ ବଳଦେବଜୀଉଙ୍କ ଏହି ମନ୍ଦିର ପ୍ରତିଷ୍ଠା ହୋଇଛି। ବଳଦେବଜୀଉ ମନ୍ଦିର ସନ୍ନିକଟରେ ସିଦ୍ଧମଠ ପ୍ରାକୃତିକ ଉଦ୍ୟାନ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ଏକକ ମୂର୍ତ୍ତି ସହ ଏକ ବିଶାଳ ମନ୍ଦିର ରହିଛି। ଏହା ସିଦ୍ଧ ଜଗନ୍ନାଥ ପୀଠ ଭାବେ ପରିଚିତ। ଏହି ସିଦ୍ଧ ଜଗନ୍ନାଥ ମୂର୍ତ୍ତି ହିଁ କେନ୍ଦୁଝରରେ ଜଗନ୍ନାଥ ପୂଜନର ସର୍ବପ୍ରାଚୀନ ବିଗ୍ରହ ବୋଲି ଅନୁମାନ କରାଯାଏ। ରାଜା ଗୋବିନ୍ଦ ଭଂଜ ଶ୍ରୀକ୍ଷେତ୍ରରୁ ଶ୍ରୀ ସୁଭଦ୍ରା ଓ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ଦ୍ୱୟ ଆଣି କେନ୍ଦୁଝରଗଡ଼ ରାଜପ୍ରାସାଦରେ ରଖାଇଥିଲେ। କିନ୍ତୁ ସେତେବେଳେ ଶ୍ରୀବଳଦେବଜୀଉଙ୍କ ମୂର୍ତ୍ତି ନଥିଲା। ଗୋବିନ୍ଦ ଭଂଜଙ୍କ ରାଜତ୍ୱ କାଳ ଶେଷ ହେବା ପରେ ତାଙ୍କ ପୁତ୍ର ରୁଦ୍ର ନାରାୟଣ ଓ ପୌତ୍ର ଶିବ ନାରାୟଣଙ୍କ ସମୟରେ ମଧ୍ୟ ବଳଭଦ୍ରଙ୍କ ମୂର୍ତ୍ତି ପ୍ରତିଷ୍ଠା ହୋଇପାରି ନଥିଲା। ତେବେ ଶିବ ନାରାୟଣଙ୍କ ପୁତ୍ର ଲକ୍ଷ୍ମୀ ନାରାୟଣ ଭଞ୍ଜ ରାଜା ହେବା ପରେ ସେ ଏକ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରାଇ ସେଥିରେ ଗୋବିନ୍ଦ ଭଂଜଙ୍କ ଅମଳରୁ ରାଜପ୍ରାସାଦର ରଖା ଯାଇଥିବା ସୁଭଦ୍ରା, ଜଗନ୍ନାଥଙ୍କ ମୂର୍ତ୍ତି ପୂଜା କରିଥିଲେ। ରାଜା ଲକ୍ଷ୍ମୀ ନାରାୟଣ ଭଂଜନ ସ୍ୱପ୍ନାଦେଶ ପାଇବା ପରେ ଆନନ୍ଦପୁରର ବଞ୍ଚୋ ଗ୍ରାମରୁ ମହାପ୍ରଭୁ ବଳଦେବଜୀଉଙ୍କ ମୂର୍ତ୍ତି ଆଣି କେନ୍ଦୁଝରରେ ପ୍ରତିଷ୍ଠା କରିଥିଲେ। ପରେ ମହାପ୍ରଭୁ ବଳଦେବଜୀଉ କେନ୍ଦୁଝର ରାଜାଙ୍କର ରାଷ୍ଟ୍ରଦେବତାର ମାନ୍ୟତା ଲାଭ କରିଥିଲେ। ମନ୍ଦିର ଉପରେ ଚକ୍ର ପ୍ରତିଷ୍ଠା କରାଯାଇ ମନ୍ଦିର ମଧ୍ୟରେ ଶ୍ରୀବଳଦେବ, ଶ୍ରୀସୁଭଦା, ଶ୍ରୀଜଗନ୍ନାଥଙ୍କ ସହିତ ସୁଦର୍ଶନଙ୍କୁ ରାଜପ୍ରାସାଦରୁ ଅଣାଯାଇ ରତ୍ନସିଂହାସନରେ ପ୍ରତିଷ୍ଠା କରାଗଲା। ତେବେ କେନ୍ଦୁଝରରେ ଶ୍ରୀଜଗନ୍ନାଥ ସଂସ୍କୃତି ଓ ବଳଦେବ ସଂସ୍କୃତିର ଉତ୍‌ଥାନ ନେଇ ଏବେ ବି ଦ୍ୱନ୍ଦ୍ୱ ରହିଛି। କିଏ ଆଗ କିଏ ପଛ

ତାହାକୁ ନେଇ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ମାତ୍ର ବଳଦେବ ଯେ କେନ୍ଦୁଝରର ରାଷ୍ଟ୍ରଦେବତା ଏହାକୁ ଅସ୍ୱୀକାର କରାଯାଇ ନପାରେ ।

### କେନ୍ଦୁଝରରେ ବଳଦେବଙ୍କ ଅଭ୍ୟୁଦୟ

କେନ୍ଦୁଝରର ରାଜାମାନଙ୍କ ଦ୍ୱାରା ପୂର୍ବରୁ ଦଧିବାମନଜୀଉ ଉପାସନା ହେଉଥିଲା । ପରବର୍ତ୍ତୀ କାଳରେ ଜଗନ୍ନାଥ ଓ ସୁଭଦ୍ରାଙ୍କ ବିଗ୍ରହ ପୂଜା ପାଇଲେ । ମାତ୍ର ବଳଦେବଙ୍କ ବିଗ୍ରହ ପୂଜା ପାଉ ନଥିଲେ । ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜଙ୍କ ସମୟରୁ କେନ୍ଦୁଝରରେ ମୁଖ୍ୟ ଦେବତାର ମାନ୍ୟତା ପାଇଲେ । ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜ ଆନନ୍ଦପୁର ଇଲାକାର ବଞ୍ଝୋ ଗ୍ରାମରୁ ବଳଦେବଙ୍କ ମୂର୍ତ୍ତି ଆଣି କେନ୍ଦୁଝର ମନ୍ଦିରରେ ପ୍ରତିଷ୍ଠା କରିବା ସହ ଏହାକୁ ବଳଦେବଜୀଉ ମନ୍ଦିର ଭାବେ ନାମିତ କଲେ । ବଞ୍ଝୋ ଗ୍ରାମ ନିକଟସ୍ଥ ବୈତରଣୀ ନଦୀ କୂଳରେ ବଳଦେବଜୀଉଙ୍କ କାଠ ବିଗ୍ରହ ମାଟି ତଳେ ପୋତି ହୋଇଥିଲା । ଗ୍ରାମବାସୀ ଏହାର ସନ୍ଧାନ ପାଇ କେନ୍ଦୁଝର ମହାରାଜାଙ୍କୁ ଜଣାଇବା ପରେ ମହାରାଜା ନିଜେ ବଞ୍ଝୋ ଗ୍ରାମକୁ ଯାଇ ବଳଦେବଜୀଉଙ୍କ ବିଗ୍ରହକୁ ଉଦ୍ଧାର କଲେ । ଏହାପରେ ମହାରାଜା କେନ୍ଦୁଝରରେ ଏକ ବିଶାଳ ମନ୍ଦିର ନିର୍ମାଣ କରି ବଳଦେବଜୀଉଙ୍କୁ ନିଜର ମୁଖ୍ୟ ଦେବତା ଭାବେ ପ୍ରତିଷ୍ଠା କଲେ ।

ମହାରାଜା ଲକ୍ଷ୍ମୀ ନାରାୟଣ ଭଂଜଦେବ କେବଳ କେନ୍ଦୁଝରଗଡ଼ର ବଡ଼ଦେଉଳ ପ୍ରତିଷ୍ଠା କରି ନଥିଲେ, ତାଙ୍କ ଦ୍ୱାରା କେନ୍ଦୁଝର ନିକଟସ୍ଥ ରାଜନଗରଠାରେ ଦଧିବାମନଙ୍କ ପାଇଁ ଏକ ଭବ୍ୟ ମନ୍ଦିର ମଧ୍ୟ ତୋଳା ଯାଇଥିଲା । ଏହା ପୂର୍ବରୁ ଜ୍ୟୋତିପୁର ଗଡ଼ରେ ମଧ୍ୟ ଭଂଜରାଜବଂଶୀଙ୍କ ଦ୍ୱାରା ଦଧିବାମନଜୀଉ ପୂଜା ପାଇ ଆସୁଥିଲେ । ସେହିଭଳି ଆନନ୍ଦପୁରରେ ମଧ୍ୟ ଦଧିବାମନଙ୍କ ଏକ ବିଶାଳ ମନ୍ଦିର ରହିଛି । କେନ୍ଦୁଝର ରାଜ୍ୟର ହୁଣ୍ଡା ଦଣ୍ଡାପାଟରେ ମଧ୍ୟ ଦଧିବାମନ ପୂଜା ପାଇଥାଆନ୍ତି । କେନ୍ଦୁଝର ଜିଲ୍ଲାରେ ଦଧିବାମନଜୀଉ, ବଳଦେବଜୀଉ ଓ ଶ୍ରୀଜଗନ୍ନାଥ ସଂସ୍କୃତି ମତରେ ଏକ ଉତ୍ତମ ସମନ୍ୱୟ ଦେଖିବାକୁ ମିଳିଥାଏ । ମାତ୍ର କେନ୍ଦୁଝରରେ ପୂଜା ପାଉଥିବା ଜଗନ୍ନାଥ ଓ ବଳଦେବଙ୍କ ପୂର୍ବରୁ 'ସିଦ୍ଧ' ଶବ୍ଦ ଯୋଡ଼ି ହୋଇଥାଏ । ଏହା ତନ୍ତ୍ରର ପ୍ରଭାବ । ତନ୍ତ୍ରର ପ୍ରଭାବ କାରଣରୁ କେନ୍ଦୁଝରରେ ପୂଜା ପାଉଥିବା ଦେବୀ ସୁଭଦ୍ରାଙ୍କ ରଂଗ 'ଲାଲ' (ହିଙ୍ଗୁଳ) ହୋଇଥାଏ ।

କେନ୍ଦୁଝରର ବଳଦେବଜୀଉ ମନ୍ଦିରର ଉଚ୍ଚତା ୯୦ ଫୁଟ ମୁଖ୍ୟ ମନ୍ଦିରଟି ଉତ୍କଳୀୟ ରେଖ ଦେଉଳ ଶୈଳୀରେ ନିର୍ମିତ । ମୁଖ୍ୟ ମନ୍ଦିରର ସମ୍ମୁଖରେ ଓଡ଼ିଶୀ ରୀତିରେ ପିଢ଼ ଶୈଳୀରେ ନିର୍ମିତ ଏକ ମୁଖଶାଳା ରହିଛି । ବଡ଼ ଦେଉଳର ପଶ୍ଚିମ ଉତ୍ତର ଓ ଦକ୍ଷିଣ ଦିଗରେ ପାର୍ଶ୍ୱଦେବତାମାନେ ରହିଛନ୍ତି । ଉତ୍ତର ପାର୍ଶ୍ୱରେ ବାମନ, ପଶ୍ଚିମ ପାର୍ଶ୍ୱରେ ନୃସିଂହ ଓ ଦକ୍ଷିଣ ପାର୍ଶ୍ୱରେ ବରାହଙ୍କ ମୂର୍ତ୍ତି ସ୍ଥାପନ କରାଯାଇଛି । ଏସବୁ କଳାମୁଗୁନି ପଥରରେ ନିର୍ମିତ ଏବଂ ଖୁବ୍ ବିଶାଳ ଆକାରର । ଏହି ମନ୍ଦିରର ରତ୍ନସିଂହାସନରେ ଶ୍ରୀବଳଦେବଜୀଉଙ୍କ ବିଜେ ପ୍ରତିମା ବାସୁଦେବ, ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ନାରାୟଣ, ଶ୍ରୀଦେବୀ, ଭୂଦେବୀ, ମଦନମୋହନ, ଶିବ, ପାର୍ବତୀ, ରାଧାକୃଷ୍ଣ, ରଘୁନାଥ, ଲଡୁଗୋପାଳ, ଶୟନଠାକୁର, ନବପତ୍ରିକା ଦୁର୍ଗା, ଶାଳଗ୍ରାମ ଓ ଦ୍ୱାରବତୀ ଶିଳା ପ୍ରତିଷ୍ଠା ହୋଇ ପୂଜା ପାଇଲେ । ଶ୍ରୀବଳଦେବଜୀଉଙ୍କୁ କେନ୍ଦୁଝରର ରାଷ୍ଟ୍ରଦେବତା ଭାବେ ଗ୍ରହଣ କରାଯାଇ ସ୍ୱୟଂ ରାଜା ତାଙ୍କର ମୁଖ୍ୟ ସେବକ ରହିଲେ ।

### କେନ୍ଦୁଝରରେ ବଳଦେବଙ୍କ ପର୍ବପର୍ବାଣି

କେନ୍ଦୁଝରର ଶ୍ରୀବଳଦେବଜୀଉଙ୍କ ମନ୍ଦିରରେ ପୁରୀ ଶ୍ରୀକ୍ଷେତ୍ର ଧାମ ଅନୁକରଣରେ ଦ୍ୱାଦଶ ଯାତ୍ରା ସହିତ ଅନେକ ପର୍ବପର୍ବାଣି ବର୍ଷସାରା ପାଳନ କରାଯାଇଥାଏ । ବଳଦେବଜୀଉଙ୍କ ମନ୍ଦିରରେ ବୈଶାଖ ସଂକ୍ରାନ୍ତିରେ ପଣା ସଂକ୍ରାନ୍ତି ପାଳନ ହୋଇଥାଏ । ବୈଶାଖ ମାସ ଶୁକ୍ଳପକ୍ଷ ତୃତୀୟାରେ ଅକ୍ଷୟ ତୃତୀୟା, ବୈଶାଖ ମାସ ଶୁକ୍ଳ ପକ୍ଷ ନବମୀ ତିଥିରେ ମା' ସୀତାଙ୍କ ଜନ୍ମଦିନ ଉପଲକ୍ଷେ ସୀତା ନବମୀ, ବୈଶାଖ ମାସ ଶୁକ୍ଳ ପକ୍ଷ ଚତୁର୍ଦ୍ଦଶୀ ତିଥିରେ ନୃସିଂହ ଚତୁର୍ଦ୍ଦଶୀ, ବୈଶାଖ ମାସର ପୂର୍ଣ୍ଣିମାରେ ଅନ୍ନକୋଟ ପୂର୍ଣ୍ଣିମାରେ ଅନ୍ନକୋଟ, ଜ୍ୟେଷ୍ଠ ଶୁକ୍ଳ ପକ୍ଷ ପଞ୍ଚମୀ ତିଥିରେ ପାର୍ବତୀ ବିବାହ, ଜ୍ୟେଷ୍ଠ ମାସ ଶୁକ୍ଳ ପକ୍ଷ ଏକାଦଶୀ ତିଥିରେ ରୁକ୍ମିଣୀ ବିବାହ, ଜ୍ୟେଷ୍ଠ ମାସରେ ସ୍ନାନ ପୂର୍ଣ୍ଣିମା, ନବଯୌବନ ଦର୍ଶନ, ଆଷାଢ଼ ମାସ ଶୁକ୍ଳ ପକ୍ଷ ତୃତୀୟ ତିଥିରେ ବଳଦେବଙ୍କ ରଥଯାତ୍ରା

(ଶ୍ରୀଗୁଣ୍ଡିଚା ଯାତ୍ରା), ଆଷାଢ଼ ମାସ ଶୁକ୍ଳ ପକ୍ଷ ଦଶମୀ ତିଥିରେ ବଳଦେବଙ୍କ ବାହୁଡ଼ା ଯାତ୍ରା, ଆଷାଢ଼ ମାସ ଶୁକ୍ଳ ପକ୍ଷ ଏକାଦଶୀ ତିଥିରେ ହରିଶୟନ ଏକାଦଶୀ, ଶ୍ରାବଣ ମାସରେ ସଂକ୍ରାନ୍ତି ଦିନ ଦକ୍ଷିଣାୟନ ଉତ୍ସବ, ଶ୍ରାବଣ ମାସର ଅମାବାସ୍ୟାରେ ଚିତାଲାଗି ପର୍ବ, ଶ୍ରାବଣ ମାସ ଶୁକ୍ଳ ପକ୍ଷ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଝୁଲଣ ଯାତ୍ରା, ଶ୍ରାବଣ ମାସ ପୂର୍ଣ୍ଣିମାରେ ବଳଦେବଙ୍କ ଜୟନ୍ତୀ ବା ଗହ୍ମା ପୂର୍ଣ୍ଣିମା ବେଶ୍ ଧୁମ୍‌ଧାମରେ ପାଳିତ ହୋଇଥାଏ। ସେହିଭଳି ମନ୍ଦିର ପରିସରରେ ଭାଦ୍ରବ ମାସ ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ ରେଖା ପଞ୍ଚମୀ, ଭାଦ୍ରବ ମାସ ଶୁକ୍ଳ ପକ୍ଷ ଚତୁର୍ଥୀ ତିଥିରେ ଗଣେଶ ଚତୁର୍ଥୀ, ଭାଦ୍ରବ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ତିଥିରେ ବଡ଼ ଦେଉଳରେ ସୁନିଆ ଉତ୍ସବ ଆଶ୍ୱିନ ମାସ କୃଷ୍ଣ ପକ୍ଷ ଅଷ୍ଟମୀଠାରୁ ମୂଳାଷ୍ଟମୀ ପାର୍ବଣ ଆରମ୍ଭ ହୋଇଥାଏ। ଏହାବ୍ୟତୀତ ମନ୍ଦିରରେ କୁମାର ପୂର୍ଣ୍ଣିମା, କାର୍ତ୍ତିକ ବ୍ରତ, କାର୍ତ୍ତିକ ସଂକ୍ରାନ୍ତି, ଦୀପାବଳୀ ଅମାବାସ୍ୟା, କାର୍ତ୍ତିକ ଏକାଦଶୀ, ପ୍ରଥମାଷ୍ଟମୀ, ମାର୍ଗଶିର ଗୁରୁବାର ବ୍ରତ, ପ୍ରାବରଣ ଷଷ୍ଠୀ, ଧନୁ ସଂକ୍ରାନ୍ତି ବା ପୌଷ ସଂକ୍ରାନ୍ତି, ମକରପର୍ବ, ବକୁଳ ଅମାବାସ୍ୟା, ସମ୍ବର ଦଶମୀ, ପୌଷ ପୂର୍ଣ୍ଣିମା, ବସନ୍ତ ପଞ୍ଚମୀ, ମାଘ ପୂର୍ଣ୍ଣିମା, ଶିବ ଚତୁର୍ଦ୍ଦଶୀ, ବାସନ୍ତୀକ ଦୋଳପର୍ବ, ଢାଳଭଙ୍ଗା, ବରାହ ଜୟନ୍ତୀ, ଦୋଳପୂର୍ଣ୍ଣିମା, ଚୈତ୍ରମାସ ମଙ୍ଗଳବାର, ଅଶୋକାଷ୍ଟମୀ, ଶ୍ରୀରାମ ନବମୀ, ଦୟଣାଚୋରି, ଦମନକ ପର୍ବ, ଚୈତ୍ରପୂର୍ଣ୍ଣିମା ଆଦି ଅନୁଷ୍ଠିତ ହୋଇଥାଏ।

### କେନ୍ଦୁଝରରେ ବଳଦେବ ମନ୍ଦିରର ପାର୍ଶ୍ୱ ଦେବଦେବୀ

ରଥ ଦାଣ୍ଡର ଅପରପାର୍ଶ୍ୱରେ ଶ୍ରୀଗୁଣ୍ଡିଚା ମାଉସୀମା'ମନ୍ଦିର ରହିଛି। ବଳଦେବଜୀଉଙ୍କ ମନ୍ଦିର ପରିସରରେ ରହିଛି ପ୍ରସିଦ୍ଧ ଗୋକର୍ଣ୍ଣ ବଟବୃକ୍ଷ। ଗୋକର୍ଣ୍ଣ ବଟବୃକ୍ଷ ନିକଟରେ ରହିଛି ବଟ ମଙ୍ଗଳା ମନ୍ଦିର। ବଳଦେବଜୀଉଙ୍କ ମନ୍ଦିର ଗୁମ୍ଫଟ ପରେ ବାମ ପାର୍ଶ୍ୱରେ ଏକ ନୂତନ ଦଧିବାମନ ମନ୍ଦିର ରହିଛି। ଏଠାରେ ସୂର୍ଯ୍ୟନାରାୟଣ, ଏକପାଦୀ ଭୈରବଙ୍କ ସହ ଦଧିବାମନ ଭାବେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ମୂର୍ତ୍ତି ରହିଛି। ଦଧିବାମନ ମନ୍ଦିର ନିକଟରେ ଅଗ୍ରପୂଜ୍ୟ ବିଘ୍ନବିନାଶନ ଗଣେଶଙ୍କ ମନ୍ଦିର ଅବସ୍ଥିତ। ବଡ଼ଦେଉଳ ପ୍ରତିଷ୍ଠା ସମୟରୁ ହିଁ ଏଠାରେ ଗଣେଶ ପ୍ରତିଷ୍ଠିତ ହୋଇଛନ୍ତି। ଏଠାରେ କଳାମୁଗୁନି ପଥର ନିର୍ମିତ ନୃତ୍ୟରତ ଗଣେଶଙ୍କ ମୂର୍ତ୍ତିର ଉଚ୍ଚତା ପ୍ରାୟ ତିନିଫୁଟ। ବଡ଼ଦେଉଳର ବାଇଶିପାହାଚର ଦକ୍ଷିଣ ଦିଗରେ ଏକାଦଶୀ ମଣ୍ଡପ ଅବସ୍ଥିତ। ମହାରାଜା ଜନାର୍ଦ୍ଦନ ଭଞ୍ଜ ଏହି ଏକାଦଶୀ ମଣ୍ଡପକୁ ସ୍ଥାପନ କରିଥିଲେ। ବଡ଼ଦେଉଳର ସମ୍ମୁଖ ଭାଗରେ ବାଇଶି ପାହାଚ ପୂର୍ବରୁ ଗରୁଡ଼ ସ୍ତମ୍ଭ ଅବସ୍ଥିତ। ନାଟ ମନ୍ଦିରର ପୂର୍ବ ଭାଗରେ ରାଜା ବଳଭଦ୍ର ନାରାୟଣ ଭଞ୍ଜଦେବଙ୍କର ପୂର୍ଣ୍ଣ ଅବୟବ ମୂର୍ତ୍ତି ସ୍ଥାପିତ ହୋଇଛି। ସେ କେନ୍ଦୁଝରର ଶେଷ ଶାସକ ରାଜା ଥିଲେ। ଗରୁଡ଼ ସ୍ତମ୍ଭର ପୂର୍ବ ଦିଗରେ ସମାନ୍ତର ଭାବେ ରହିଛି ହନୁମାନ ସ୍ତମ୍ଭ। ହନୁମାନ ସ୍ତମ୍ଭର ଦକ୍ଷିଣ ପାର୍ଶ୍ୱରେ ଯଜ୍ଞ ମଣ୍ଡପ ଅବସ୍ଥିତ। ଏହା ଏକ ବର୍ଗାକାର ଗୃହ। ଯଜ୍ଞମଣ୍ଡପର ଉତ୍ତର ଦିଗରେ ଶ୍ରୀରାମ ମନ୍ଦିର ଅବସ୍ଥିତ। ଏହି ମନ୍ଦିରଟି ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା। ଏହି ମନ୍ଦିରରେ ପ୍ରତିବର୍ଷ ଶ୍ରୀରାମନବମୀ, ସୀତା ନବମୀ ପାଳିତ ହୋଇଥାଏ। ଶ୍ରୀରାମ ମନ୍ଦିରର ସମ୍ମୁଖ ଭାଗରେ ଏକ ସ୍ତମ୍ଭ ଉପରେ ହନୁମାନଙ୍କର ଏକ ମୂର୍ତ୍ତି ବିଦ୍ୟମାନ। ସେ ଦଣ୍ଡାୟମାନ ଅବସ୍ଥାରେ ଥାଇ ଦକ୍ଷିଣ ହସ୍ତରେ ଖଣ୍ଡା ଓ ବାମ ହସ୍ତରେ ଢ଼ାଲ ଧାରଣ କରିଛନ୍ତି। ଶ୍ରୀରାମ ମନ୍ଦିରର ଉତ୍ତର ଦିଗରେ ସମାନ୍ତର ଭାବେ ଶ୍ରୀବାଞ୍ଛେଶ୍ୱରଙ୍କ ମନ୍ଦିର ଅବସ୍ଥିତ। ଏହି ମନ୍ଦିରର ଗର୍ଭଗୃହରେ ବାଞ୍ଛେଶ୍ୱର ଶିବଲିଙ୍ଗ, ବୃଷଭ, ପାର୍ବତୀ, ଗଣେଶଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛି। ଶ୍ରୀବାଞ୍ଛେଶ୍ୱରଙ୍କ ମନ୍ଦିରର ପୂର୍ବ ଭାଗରେ ଶ୍ରୀଲୋକନାଥେଶ୍ୱର ଶିବ ମନ୍ଦିର ଶୋଭାପାଉଛି। ଶ୍ରୀବାଞ୍ଛେଶ୍ୱର ମହେଶଙ୍କ ମନ୍ଦିରର ଉତ୍ତର ଦିଗରେ ସ୍ନାନମଣ୍ଡପ ରହିଛି। ବଡ଼ଦେଉଳର ଉତ୍ତର-ପୂର୍ବ କୋଣରେ ବାଇଶି ପାହାଚରେ ସମାନ୍ତର ଭାବେ ଅଧାପୋଡ଼ା ଭଳି ଦୃଶ୍ୟମାନ ହେଉଥିବା ମନ୍ଦିରଟି ହେଉଛି ପାତାଳେଶ୍ୱର ମହାଦେବଙ୍କ ମନ୍ଦିର। ଭୂମି ପତ୍ତନଠାରୁ ପାତାଳେଶ୍ୱରଙ୍କ ଆସ୍ଥାନ ପ୍ରାୟ ଦୁଇ ଫୁଟ ଗଭୀରରେ ଅବସ୍ଥିତ। ବଡ଼ଦେଉଳର ପଶ୍ଚିମ ଦିଗରେ ଶ୍ରୀକ୍ଷେତ୍ର ଭଳି ଏଠାରେ ମଧ୍ୟ ମହାଲକ୍ଷ୍ମୀଙ୍କ ମନ୍ଦିର ରହିଛି। ଭକ୍ତମାନେ ବଡ଼ଦେଉଳରେ ଚତୁର୍ଦ୍ଧାମୂର୍ତ୍ତି ଦର୍ଶନ ସାରି ଉତ୍ତର ଦ୍ୱାର ବାଟେ ଆସି ମହାଲକ୍ଷ୍ମୀଙ୍କୁ ଦର୍ଶନ କରିଥାନ୍ତି। ପୁରୀ ଶ୍ରୀକ୍ଷେତ୍ର ଧାମ ପରି ଏଠାରେ ମଧ ବଡ଼ ଦେଉଳର ପଶ୍ଚିମ ଦିଗରେ ମା' ବିମଳାଙ୍କ ମନ୍ଦିର ରହିଛି। ଏଠାରେ ବିମଳାଙ୍କ ସହିତ ମା'

ସରସ୍ୱତୀ ପୂଜିତ ହୋଇଥାନ୍ତି । ବଡ଼ ଦେଉଳର ପଶ୍ଚିମ ଦ୍ୱାର ନିକଟରେ ବେଢ଼ା ପାଚେରୀର ପିଣ୍ଡି ଉପରେ ପ୍ରାୟ ଅଢ଼େଇ ହାତ ଉଚ୍ଚର ଏକ କ୍ଷୁଦ୍ର ମନ୍ଦିର ମଧ୍ୟରେ ବେଢ଼ା ଠାକୁରାଣୀ ପୂଜା ପାଉଛନ୍ତି ।

### କେନ୍ଦୁଝରରେ ବଳଦେବଙ୍କ ରଥଯାତ୍ରା

ଏଠାରେ ପ୍ରତିବର୍ଷ ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ରଥଯାତ୍ରା ଓ ଦଶମୀ ତିଥିରେ ବାହୁଡ଼ା ଯାତ୍ରା ଅନୁଷ୍ଠିତ ହୋଇଥାଏ । ଶ୍ରୀବଳଦେବଜୀଉଙ୍କ ମନ୍ଦିରରେ ପୁରୀ ଶ୍ରୀକ୍ଷେତ୍ର ଧାମ ଅନୁକରଣରେ ଦ୍ୱାଦଶ ଯାତ୍ରା ସହିତ ଅନେକ ପର୍ବପର୍ବାଣି ବର୍ଷସାରା ପାଳନ କରାଯାଇଥାଏ । ବୈଶାଖ ମାସର ସଂକ୍ରାନ୍ତି ଅବସରରେ ବଡ଼ଦେଉଳ ପରିସରରେ ପଣା ସଂକ୍ରାନ୍ତି ଉତ୍ସବ ପାଳନ କରାଯାଇଥାଏ । ବୈଶାଖ ମାସ ଶୁକ୍ଳ ପକ୍ଷ ତୃତୀୟା ତିଥିରେ ବଡ଼ଦେଉଳ ପରିସରରେ ପବିତ୍ର ଅକ୍ଷୟ ତୃତୀୟା ପାଳନ ହୋଇଥାଏ । ଏହି ଦିନ ରଥ ତିଆରି ଅନୁକୂଳ ହୋଇଥାଏ । ଏହାପରେ ଶ୍ରୀଜୀଉଙ୍କ ଚନ୍ଦନ ଯାତ୍ରା ଅନୁଷ୍ଠିତ ହୋଇଥାଏ । ବୈଶାଖ ମାସ ଶୁକ୍ଳ ପକ୍ଷ ନବମୀ ତିଥିରେ ମା' ସୀତାଙ୍କ ଜନ୍ମ ଦିନ ଉପଲକ୍ଷେ ଶ୍ରୀରାମ ମନ୍ଦିରରେ ସୀତା ନବମୀ ପାଳିତ ହୋଇଥାଏ । ବୈଶାଖ ମାସ ଶୁକ୍ଳ ପକ୍ଷ ଚତୁର୍ଦ୍ଦଶୀ ତିଥିରେ ନୃସିଂହ ଚତୁର୍ଦ୍ଦଶୀ ପାଳନ କରାଯାଏ । ଜ୍ୟେଷ୍ଠ ମାସ ଶୁକ୍ଳ ପକ୍ଷ ପଞ୍ଚମୀ ତିଥିରେ ଶିବ ଓ ପାର୍ବତୀଙ୍କ ମଧ୍ୟରେ ବିବାହ ଉତ୍ସବ ସଂପାଦିତ ହୋଇଥାଏ । ଏକାମ୍ର ବନବିହାରୀ ମନ୍ଦିରରେ ଏହି ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହା ପରଦିନ ଶୀତଳ ଷଷ୍ଠୀ ଯାତ୍ରା ଅବସରରେ ଶିବ-ପାର୍ବତୀ ନଗର ଭ୍ରମଣ କରନ୍ତି । ଜ୍ୟେଷ୍ଠ ମାସ ଶୁକ୍ଳ ପକ୍ଷ ଏକାଦଶୀ ତିଥିରେ ରୁକ୍ମିଣୀ ବିବାହ ଅନୁଷ୍ଠିତ ହୋଇଥାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ଅବସରରେ ବଡ଼ଦେଉଳରେ ସ୍ନାନ ପୂର୍ଣ୍ଣିମା ମଧ୍ୟ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ । ସ୍ନାନ ପୂର୍ଣ୍ଣିମା ପରେ ନେତ୍ର ଉତ୍ସବ ଦିନ ମହାପ୍ରଭୁଙ୍କ ନବଯୌବନ ଦର୍ଶନ ଅନୁଷ୍ଠିତ ହୋଇଥାଏ । ଶ୍ରାବଣ ମାସରେ ବଡ଼ଦେଉଳରେ ଦକ୍ଷିଣାୟନ ବନ୍ଦାପନା ଉତ୍ସବ, ଚିତାଲାଗି ଅମାବାସ୍ୟା, ଝୁଲଣ ଯାତ୍ରା ଓ ଗହ୍ମା ପୂର୍ଣ୍ଣିମା ମହାସମାରୋହରେ ପାଳିତ ହୋଇଥାଏ । ଭାଦ୍ରବ ମାସରେ ଲେଖା ପଞ୍ଚମୀ, ହରିଜନ୍ମ ଓ ନନ୍ଦୋତ୍ସବ, ସପ୍ତପୁରୀ ଅମାବାସ୍ୟା, ଗଣେଶ ଚତୁର୍ଥୀ, ନବାନ୍ନ ଭକ୍ଷଣ, ପାର୍ଶ୍ୱପରିବର୍ତ୍ତନ ଏକାଦଶୀ, ସୁନିଆ ପର୍ବ ଆଦି ପାଳିତ ହୋଇଥାଏ । ସେହିଭଳି ଆଶ୍ୱିନ ମାସରେ ମୂଳାଷ୍ଟମୀ ପାର୍ବଣ, କୁମାର ପୂର୍ଣ୍ଣିମା ପାଳିତ ହୋଇଥାଏ । କାର୍ତ୍ତିକ ମାସରେ ବଡ଼ ଦେଉଳ ପରିସରରେ ରାଇଦାମୋଦର ପୂଜା, କାର୍ତ୍ତିକ ସଂକ୍ରାନ୍ତି, ଦୀପାବଳୀ ଅମାବାସ୍ୟା, କାର୍ତ୍ତିକ ଶୁକ୍ଳପକ୍ଷ ଏକାଦଶୀ ପାଳିତ ହୋଇଥାଏ । ମାର୍ଗଶିର ମାସରେ ପ୍ରଥମାଷ୍ଟମୀ, ମାର୍ଗଶିର ଗୁରୁବାର ଓଷା, ପ୍ରାବରଣ ଷଷ୍ଠୀ ଯାତ୍ରା ପାଳିତ ହୋଇଥାଏ । ସେହିଭଳି ବଡ଼ଦେଉଳ ପରିସରରେ ପୌଷ ମାସରେ ଧନୁ ସଂକ୍ରାନ୍ତି, ନବାଙ୍କ, ମକର ପର୍ବ, ବକୁଳ ଅମାବାସ୍ୟା, ସମ୍ବର ଦଶମୀ, ପୌଷ ପୂର୍ଣ୍ଣିମା ଆଦି ପାଳନ କରାଯାଇଥାଏ । ମାଘ ମାସରେ ବସନ୍ତ ପଞ୍ଚମୀ ପାଳିତ ହୋଇଥାଏ । ଚୈତ୍ରମାସରେ ବଳଦେବଜୀଉଙ୍କ ମନ୍ଦିରରେ ପାଣି ଖେଳ, ଚୈତ୍ର ମଙ୍ଗଳବାର, ଅଶୋକାଷ୍ଟମୀ, ଶ୍ରୀରାମ ନବମୀ, ଦୟଣା ଚୋରି ଓ ଦମନକ ପର୍ବ, ଚୈତ୍ର ପୂର୍ଣ୍ଣିମା ଆଦି ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ ।

ଶ୍ରୀ ସିଦ୍ଧ ବଳଦେବଜୀଉ ମନ୍ଦିର କେନ୍ଦୁଝରଗଡ଼ର ବଳଦେବଙ୍କ ମୁଖ୍ୟ ମନ୍ଦିରକୁ ବାଦ୍ ଦେଲେ ସହରରେ ଅନ୍ୟ ଦୁଇଟି ମନ୍ଦିର ଦେଖିବାକୁ ମିଳିଥାଏ । ସେଗୁଡ଼ିକ ହେଲା ସିଦ୍ଧ ଜଗନ୍ନାଥ ଓ ସିଦ୍ଧ ବଳଦେବଜୀଉ ମନ୍ଦିର । ସିଦ୍ଧ ଜଗନ୍ନାଥ ମନ୍ଦିରରେ ଜଗନ୍ନାଥ ଏକକ ଭାବେ ପୂଜା ପାଉଥିବାବେଳେ ସିଦ୍ଧ ବଳଦେବଜୀଉଙ୍କ ମନ୍ଦିରରେ ବଳଦେବ ଏକକ ଭାବେ ପୂଜା ପାଇଥାନ୍ତି । କେନ୍ଦୁଝର ସହରସ୍ଥ ପଶୁ ଡାକ୍ତରଖାନା ଓ ଦିଗ୍‌ଦନ ପୁଷ୍କରିଣୀ ନିକଟରେ ଶ୍ରୀ ସିଦ୍ଧ ବଳଦେବଜୀଉଙ୍କ ମନ୍ଦିର ଅବସ୍ଥିତ । ଏଠାରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ପୂଜା ପାଆନ୍ତି । ଏଠାରେ କୌଣସି ବିଶେଷ ପର୍ବପର୍ବାଣି, ଉତ୍ସବ ଅନୁଷ୍ଠିତ ହୋଇନଥାଏ । ଅତୀତରେ ଏଠାରେ କିଛି ପର୍ବପର୍ବାଣି ହେଉଥିବା କଥା ପୁରୁଣା ଲୋକଙ୍କଠାରୁ ଶୁଣିବାକୁ ମିଳେ । ଏହି ଠାକୁରଙ୍କୁ ସ୍ଥାନୀୟ ଅଞ୍ଚଳରେ 'ଶ୍ୟାମରାୟ' ବୋଲି କୁହାଯାଇଥାଏ । ଅନ୍ୟ କିଛି ଲୋକ ଏହାକୁ 'ପୁଟୁକି' ନାନୀ ଦେଉଳ' ବୋଲି କହନ୍ତି । କିନ୍ତୁ ଏହା ସିଦ୍ଧ ବଳଦେବଜୀଉ ମନ୍ଦିର ନାମରେ ଖ୍ୟାତ । ପୂର୍ବେ ଏହି ମନ୍ଦିର ଚତୁଃପାର୍ଶ୍ୱରେ ବେଢ଼ା ରହିଥିଲା । ମାତ୍ର ଏବେ ତାହା ଭାଙ୍ଗିରୁଜି ଯାଇଛି । ମନ୍ଦିରଟିରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବିଗ୍ରହ ରହିଛି ।

ଏହି ମନ୍ଦିରଟି ବଙ୍ଗ ଦେଶର ଗୌଡ଼ୀୟ ରୀତିରେ ନିର୍ମିତ। କେନ୍ଦୁଝରର ରାଜା ପ୍ରତାପ ବଳଭଦ୍ର ଭଞ୍ଜ (୧୭୬୨-୧୭୯୭) ବାମଣ୍ଡାର ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ବାରକୋଟଗଡ଼ରୁ ବିଜୟର ସ୍ମାରକୀ ସ୍ୱରୂପ ଏହି ଠାକୁରଙ୍କ କେନ୍ଦୁଝରଗଡ଼ରେ ପ୍ରତିଷ୍ଠା କରିଥିଲେ। ପରେ ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେଓ (୧୮୬୮-୧୯୦୫) ଏଠାରେ ଏହି ମନ୍ଦିର ନିର୍ମାଣ କରାଇଥିଲେ। ଏହି ସିଦ୍ଧବଳଦେବଙ୍କ ପୀଠ ଦୁଇଶହ ବର୍ଷର ଏକ ପୁରୁଣା ଦେବପୀଠ ହୋଇଥିଲେ । ଏହା ଆଜି ଅବହେଳିତ ଅବସ୍ଥାରେ ପଡ଼ି ରହିଛି।

**କେନ୍ଦ୍ରାପଡ଼ାରେ ବଳଦେବ ଉପାସନା**

ବଳଦେବଙ୍କ ପାଇଁ କେନ୍ଦ୍ରାପଡ଼ା ବିଶ୍ୱପ୍ରସିଦ୍ଧ। ପୁରୀରେ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କ ସହ ପୂଜା ପାଉଥିବାବେଳେ ତୁଳସୀକ୍ଷେତ୍ର କେନ୍ଦ୍ରାପଡ଼ାରେ ମଣିବ୍ରହ୍ମ ଭାବେ ପୂଜା ପାଇଥାନ୍ତି। ବଳଦେବଙ୍କ ହଳ ମୂଷଳରେ ଶିବଙ୍କ ବରପ୍ରାପ୍ତ କନ୍ଦରାସୁର ବଧ ନ ହେବା ଫଳରେ ବଳଦେବ ନିଜେ କନ୍ଦରାସୁର ହସ୍ତରୁ ଶିବଙ୍କ ପ୍ରଦତ୍ତ ଦିବ୍ୟ ଖଡ୍ଗକୁ ଛଡ଼ାଇଆଣି ନିଜ ହାତରେ କନ୍ଦରାର ମସ୍ତକକୁ ଛେଦନ କରିଥିଲେ। ମୃତ କନ୍ଦରାର ଶିର (ମୁଣ୍ଡ) ପଡ଼ିଥିବା ସ୍ଥାନଟି ବର୍ତ୍ତମାନ ଅସୁରଶିର' (ଅସୁରେଶ୍ୱର/ରଙ୍ଗ ମୁଣ୍ଡେଇ) ନାମ ବହନ କରିଛି। ଦାନବ କନ୍ଦରାସୁରର ହସ୍ତ, ଅଙ୍ଗୁଳି, ନାଭି, କଟି, କେଶର, ଗଣ୍ଡି, ମଧ୍ୟଭାଗ (ମଧ୍ୟଖଣ୍ଡ) ଆଦି ଖଣ୍ଡବିଖଣ୍ଡିତ ଅଙ୍ଗପ୍ରତ୍ୟଙ୍ଗ ପଡ଼ିଥିବା ସ୍ଥାନଗୁଡ଼ିକର ନାମକରଣ ହାତିଆ', ଅଙ୍ଗୁଳେଇ', ନାଭିଖଣ୍ଡ' (ନାହାଖଣ୍ଡ), କଟିକଟା', କମରଖଣ୍ଡି' (କମାରଖଣ୍ଡି), ବଳଗଣ୍ଡି', ମଧ୍ୟଖଣ୍ଡି' ହୋଇଛି। ତେବେ ମୃତ କନ୍ଦରାସୁର ପଡ଼ିଥିବା ସ୍ଥାନର ନାମଟି କନ୍ଦରାପଡ଼ି' କାଳକ୍ରମେ ଅପଭ୍ରଂଶ ହୋଇ କନ୍ଦରାପଡ଼ା' ଏବଂ କେନ୍ଦ୍ରାପଡ଼ା ନାମରେ ପରିଚିତ ହୋଇପାରିଛି।

କନ୍ଦରାସୁରକୁ ବଧ କରି ବଳଦେବ ଅଭିଶପ୍ତା ପାର୍ବତୀ (କନ୍ଦରାସୁର ନନ୍ଦିନୀ ତୁଳସୀ)କୁ ମୋକ୍ଷ କରି ପୁରାଣ ପ୍ରସିଦ୍ଧ ପୁଣ୍ୟତୀର୍ଥ ମଧୁସାଗର ତଟବର୍ତ୍ତୀ ଇଛାପୁରଠାରେ ଅନୁଜ ବାସୁଦେବ ଓ ପ୍ରାଣପ୍ରିୟା ତୁଳସୀ (ସୁଭଦ୍ରା ନୁହଁନ୍ତି)ଙ୍କ କେନ୍ଦ୍ରାପଡ଼ା (ତୁଳସୀକ୍ଷେତ୍ର)ରେ ବିରାଜମାନ କରୁଛନ୍ତି। କନ୍ଦରାସୁର ରକ୍ତରେ ପ୍ରବହମାନ ଶୋଣିତ (ରକ୍ତ) ନଦୀଟି ଶ୍ରୀବଳଦେବଜୀଉଙ୍କ କୃପା ବଳରେ ସର୍ବପାପତାପ ପାତକ ବିନାଶିନୀ ତୀର୍ଥ ବା ମଧୁତୀର୍ଥରେ ପରିଣତ ହୋଇଯାଇଛି।

ଶିବ ଓ ନାଥସିଦ୍ଧମାନଙ୍କର ପ୍ରଧାନ ଦେବତା ବଳଭଦ୍ର (ଶ୍ରୀବଳଦେବ) କେନ୍ଦ୍ରାପଡ଼ାରେ ବିରାଜମାନ କରିଛନ୍ତି। ଏବେ ମଧ୍ୟ କେନ୍ଦ୍ରାପଡ଼ା ପାଖଆଖ ବୀରସ୍ୱତୀ, ଇଛାପୁର, ମହାକାଳପଡ଼ା, ଡେରାବିଶି, ଚଉଦକୁଳାଟ, ରାଜନଗର, ତରଡ଼ିପାଳ, ନିକିରାଇ, କଷଟି, ଚାନ୍ଦୋଳ, କିଆରବାଙ୍କ ଆଦି ଗ୍ରାମଗୁଡ଼ିକରେ ନାଥସିଦ୍ଧ ଯୋଗୀମାନେ ବସବାସ କରି ମହାପ୍ରଭୁ ବଳଭଦ୍ରଙ୍କର ପୂଜା ଉପାସନା କରିଆସୁଛନ୍ତି। ଅପରପକ୍ଷେ, କେନ୍ଦ୍ରାପଡ଼ାକୁ ଏକ ବୌଦ୍ଧପୀଠ କୁହାଯାଉଛି। ଅଷ୍ଟମ-ନବମ ଶତାବ୍ଦୀରେ ଭାରତବର୍ଷ ତଥା ଓଡ଼ିଶାରେ ବୌଦ୍ଧ ଧର୍ମ ଉତ୍କର୍ଷତାର ଚରମ ସୀମାରେ ପହଞ୍ଚିଥିବାବେଳେ ଏହି ସମୟରେ ବୌଦ୍ଧପୀଠ କେନ୍ଦ୍ରପଲ୍ଲୀ (କେନ୍ଦ୍ରାପଡ଼ା)ରେ ବଳଦେବଜୀଉଙ୍କ ମନ୍ଦିର ନିର୍ମିତ ହୋଇଥିବାର ଅନୁମାନ କରାଯାଉଛି। ମାତ୍ର ୧୩ଶ ଶତାବ୍ଦୀରେ ଓଡ଼ିଶାର ରାଜା ତୃତୀୟ ଅନଙ୍ଗଭୀମ ଦେବ କେନ୍ଦ୍ରାପଡ଼ାରେ ବଳଦେବଜୀଉଙ୍କର ଏକ ଭବ୍ୟ ମନ୍ଦିର ନିର୍ମାଣ କରିଥିଲେ। ଏହି ମନ୍ଦିରଟି ରେଖ ମନ୍ଦିର ଶୈଳୀରେ ନିର୍ମିତ ହୋଇଥିବାବେଳେ ଏହାର ଉଚ୍ଚତା ୬୦ ହାତ ଥିଲା ବୋଲି ଉଲ୍ଲେଖ ରହିଛି। ହିନ୍ଦୁ ଧର୍ମ ବିଦ୍ୱେଷୀ ମୋଗଲ ସମ୍ରାଟ ଔରଙ୍ଗଜେବ୍ (ଖ୍ରୀ.ଅ.୧୬୫୮-ଖ୍ରୀ.ଅ.୧୭୦୭)ଙ୍କ ସମୟରେ ହିନ୍ଦୁ ମନ୍ଦିର ଧ୍ୱଂସ ସମୟରେ କେନ୍ଦ୍ରାପଡ଼ାର ବଳଦେବଜୀଉ ମନ୍ଦିର ମଧ୍ୟ ଧ୍ୱଂସ ପାଇଯାଇଥିଲା। ଏହି ମନ୍ଦିରକୁ ଭାଙ୍ଗି ଏହା ଉପରେ ଏକ ମସ୍‌ଜିଦ ନିର୍ମାଣ କରାଯାଇଥିଲା, ଯାହାର ଢାଞ୍ଚା ଏବେ ମଧ୍ୟ ରହିଛି।

ଔରଙ୍ଗଜେବଙ୍କ ସେନାପତି ମିଆଦ ମହମ୍ମଦ ଜାନଙ୍କ ନିର୍ଦ୍ଦେଶରେ ଶ୍ରୀବଳଦେବଙ୍କ ମନ୍ଦିର ଧ୍ୱଂସ ହେବାରୁ କୁଜଙ୍ଗର ରାଜା ଗୋପାଳଜୀ ମହାପ୍ରଭୁଙ୍କ ମୂର୍ତ୍ତିକୁ ଡଙ୍ଗାରେ ନେଇ ମଧୁସାଗର ନଦୀର ଦକ୍ଷିଣ ତଟରେ ପ୍ରକାଣ୍ଡ ବଟବୃକ୍ଷ ଥିବା ସାଖୀବଟ (ସଖୀବଟ)ଠାରେ ସ୍ଥାପନ କଲେ। ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରେ ୧୭୬୧ ମସିହାରେ କୁଜଙ୍ଗଗଡ଼ ରାଜା

ଗୋପାଳ ଷଣ୍ଢ (ଷଣ୍ଢ ରାଜା) ଓ ଛେଦରା ରାଜା ଶ୍ରୀନିବାସ ନରେନ୍ଦ୍ର ମହାପାତ୍ରଙ୍କ ମିଳିତ ଉଦ୍ୟମରେ ଝାଡ଼ଜଙ୍ଗଲ ସଫା କରି ମହାପ୍ରଭୁଙ୍କ ଇଛାରେ ଅର୍ଥାତ ଇଛାପୁରଠାରେ ବର୍ତ୍ତମାନର ମନ୍ଦିର ନିର୍ମାଣ କରି ଶ୍ରୀଜୀଉଙ୍କୁ ସଖୀବଟରୁ ଆଣି ପ୍ରତିଷ୍ଠା କରାଇଲେ ।

The Present Shrine of Baldevjeew was constructed during the Maratha Rule in Odisha (1761 A.D.). The original temple was demolished by Khan-in-Duran (1660 A.D.-1667 A.D) the then Subedar of Orissa during the time of Aurangzeb.'' (Gazetteer of India, Orissa, Cuttack, N.C. Behuria (Ed.), Dept. of Revenue, Govt. of Orissa, Bhubaneswar, 1996, P-1054)

ଏହାପରେ ଶ୍ରୀବଳଦେବଜୀଉଙ୍କ ମୁଖ୍ୟ ମନ୍ଦିରଟି ପଞ୍ଚରଥ ଶୈଳୀରେ (ପିଢ଼ ଶୈଳୀରେ), ମଝି ବିମାନ (ପିଢ଼ ମନ୍ଦିର) ଓ ଜଗମୋହନ (ପିଢ଼ ମନ୍ଦିର) ନିର୍ମିତ ହେଲା । ମେଘନାଦ ପାଚେରୀ ଭଳି ଅତି ଉଚ୍ଚ ପାଚେରୀ ମନ୍ଦିର ଚାରିପଟେ ନିର୍ମାଣ କରାଯାଇଛି । ଛେଦରା ଜିଲ୍ଲାର ନରେନ୍ଦ୍ର ମହାପାତ୍ର ସଜ୍ଞାଧାରୀ ରାଜସେବାୟତ ପୁରୁଷାନୁକ୍ରମେ ଜମି ଭୋଗଦଖଲ କରି ଦିଅଁଙ୍କ ସେବାପୂଜାର ବ୍ୟବସ୍ଥା କରିଥିଲେ । ମୁଖ୍ୟ ମନ୍ଦିରର ଉଚ୍ଚତା ୪୦ ଫୁଟ । ଏହା ସହିତ ଏଠାରେ ଭୋଗମଣ୍ଡପ, ନାଟ ମଣ୍ଡପ, ଗରୁଡ଼ସ୍ତମ୍ଭ, ଆଭ୍ୟନ୍ତରୀଣ କାନ୍ଥ ଗାତ୍ରରେ ଖଚିତ ଦଶାବତାର, ଅଷ୍ଟଭୁଜା ପିତଳ ମହିଷା ମର୍ଦ୍ଦିନୀ ଦୁର୍ଗା, ସପ୍ତାଶ୍ୱଚାଳିତ ସୂର୍ଯ୍ୟ ଦେବତା, ଛାୟାମାୟାଙ୍କ ବିଗ୍ରହ ପୁଞ୍ଜି, ଆନନ୍ଦବଜାର, ପ୍ରଲମ୍ବିତ ଝୁଲଣଘର, ଯୋଡ଼ହସ୍ତ ନତଜାନୁ ମୁଦ୍ରାରେ ମାତା ତୁଳସୀଙ୍କ ବିଗ୍ରହ ଆଦି ରହିଛି ।

### କେନ୍ଦ୍ରାପଡ଼ା ତୁଳସୀ କ୍ଷେତ୍ରର ରଥଯାତ୍ରା

ଭକ୍ତକବି ବିପ୍ର ମାଧୁରୀ ଦାଶଙ୍କ ଲିଖିତ ତୁଳସୀକ୍ଷେତ୍ର ମାହାତ୍ମ୍ୟରେ ବଳଦେବଙ୍କ ରୀତିନୀତି ସଂପର୍କରେ ବର୍ଣ୍ଣନା ରହିଛି । ତୁଳସୀ କ୍ଷେତ୍ରରେ ବାରମାସରେ ତେର ଯାତ୍ରା ପାଳିତ ହୋଇଥାଏ । ଶ୍ରୀବଳଦେବଜୀଉ ନାନା ବେଶରେ ଭକ୍ତଙ୍କୁ ଦର୍ଶନ ଦେଇଥାନ୍ତି । ସେହି ବେଶଗୁଡ଼ିକ ହେଲା– ନିତ୍ୟବେଶ, ବଡ଼ସିଂହାର ବେଶ, ନୃସିଂହ ଶେଷଦେବ ବେଶ, ଗଜ ଉଦ୍ଧାରଣ ବେଶ, ଗଜାନନ ବେଶ, ଶ୍ରୀଗୁଣ୍ଡିଚା ରାଜବେଶ, ରଘୁନାଥ ବେଶ, ଗଙ୍ଗାଭିଷେକ ବେଶ, ସୁନା ବେଶ, ଜନ୍ମାଷ୍ଟମୀ ବେଶ, ରାଧା ଦାମୋଦର ବେଶ, କାଳୀୟ ଦଳନ ବେଶ, ଏକଲକ୍ଷ ତୁଳସୀ ଅର୍ପଣ ବେଶ, ମଧୁ ସଂହାର ବେଶ, ପ୍ରଲମ୍ବାସୁର ସଂହାର ବେଶ, ଗରୁଡ଼ ଆରୋହଣ ବେଶ, ଦ୍ୱିବିନ୍ଦ ବାନର ବେଶ, ବକାସୁର ବଧ ବେଶ, ପଦ୍ମବେଶ, ପ୍ରଥମାଷ୍ଟମୀ ରାଜବେଶ, ଧେନୁକା ମର୍ଦ୍ଦନ ବେଶ, ପୁଷ୍ୟାଭିଷେକ ବେଶ, କାଞ୍ଚି କାବେରୀ ବେଶ, କନ୍ଦରାସୁର ସଂହାର ବେଶ, କୃଷ୍ଣ ବଳରାମ ବେଶ ।

ସମ୍ପ୍ରତି ଶ୍ରୀବଳଦେବଜୀଉଙ୍କ ବିଜେସ୍ଥଳୀ ମଧ୍ୟଖଣ୍ଡି ଇଛାପୁର କେନ୍ଦ୍ରାପଡ଼ା ସହରଠାରୁ ତିନି କିଲୋମିଟର ଦୂରରେ ଅବସ୍ଥିତ । ଏହା ପୂର୍ବରୁ କେନ୍ଦ୍ରାପଡ଼ା ସହରର କଚେରୀ ପଡ଼ିଆ (ଜୁମା ମସଜିଦ୍ ସଂଲଗ୍ନ) ଦେଉଳରେ ସିଦ୍ଧ ବଳଦେବ ପୂଜା ପାଉଥିଲେ । ଭାଗବତାକାର ଅତିବଡୀ ଜଗନ୍ନାଥ ଦାସଙ୍କ ତତ୍ତ୍ୱାବଧାନରେ ଏଠାରେ ରଥଯାତ୍ରା ହେଉଥିଲା । କେନ୍ଦ୍ରାପଡ଼ାର ମଢ଼ିଆଳ ବଜାର ସେତେବେଳେ ବଳଦେବଙ୍କ ରଥଦାଣ୍ଡ ଥିଲା । ଭୀମ ରାଉତଙ୍କ କୋଠାପଛ ଅର୍ଥାତ୍ ଚମାରସାହି ଗଳିରେ ଗୁଣ୍ଡିଚା ମନ୍ଦିର ଥିଲା । ଅଦ୍ୟାବଧି ଏସବୁର ଧ୍ୱଂସାବଶେଷ (ସ୍ମାରକୀ) ରହିଛି । ୧୮୩୭ ମସିହା ନକ୍ସା ମୁତାବକ ପୁରାତନ ରେକାବି ବଜାରରୁ ରଥଯାତ୍ରା ଆରମ୍ଭ ହୋଇ ଗୁଣ୍ଡିଚା ମନ୍ଦିରରେ ଶେଷ ହେଉଥିଲା । ଅନୁରୂପ ରୀତିରେ ବାହୁଡ଼ା ଯାତ୍ରା ମଧ୍ୟ ଅନୁଷ୍ଠିତ ହୋଇ ଆସୁଥିଲା ।

୧୬ଶହ ଶତାବ୍ଦୀ ପୂର୍ବରୁ ଏଠାରେ ରଥଯାତ୍ରା ପାଳନର ସେଭଳି କୌଣସି ପ୍ରମାଣ ମିଳେନାହିଁ । କାରଣ ସେତେବେଳେ ଜଗନ୍ନାଥ ବିଗ୍ରହ ବଳଦେବଙ୍କ ପାଖରେ ପୂଜା ପାଉ ନଥିଲେ । ଅତିବଡ଼ୀ ଜଗନ୍ନାଥ ଦାସଙ୍କ ତତ୍ତ୍ୱାବଧାନରେ ଶ୍ରୀଜଗନ୍ନାଥ ବିଗ୍ରହ ବଳଦେବ ମନ୍ଦିରରେ ପ୍ରତିଷ୍ଠା କରାଯାଇଥିଲା । ଇଛାପୁରରେ ୧୭ଶହ ଶତାବ୍ଦୀଠାରୁ ରଥଯାତ୍ରା ଅନୁଷ୍ଠିତ ହୋଇଆସୁଛି । ୧୭୬୩ ମସିହାରୁ ୧୯୨୩ ମସିହା ମଧ୍ୟରେ ୧୬୦ ଥର ରଥଯାତ୍ରା ଅନୁଷ୍ଠିତ ହୋଇଥିବାର ଇତିହାସରେ ଉଲ୍ଲେଖ ରହିଛି । ପ୍ରଳୟଙ୍କରୀ ବନ୍ୟା ଓ ବାତ୍ୟା କାରଣରୁ ୧୮୮୬, ୧୯୬୬

ଏବଂ ୧୯୬୭ ମସିହାରେ ୩ ଥର ରଥଯାତ୍ରା ହୋଇପାରି ନଥିଲା ।

ତୁଳସୀ କ୍ଷେତ୍ରରେ ଗୋଟିଏ ମାତ୍ର ସୁବିଶାଳ ରଥ ହୋଇଥାଏ । ଏହାକୁ ବ୍ରହ୍ମତାଳଧ୍ୱଜ ରଥ କୁହାଯାଏ । ଏହି ରଥରେ ତ୍ରିମୂର୍ତ୍ତି ବିଜେ କରନ୍ତି ।

ଦୋଳପୂର୍ଣ୍ଣିମା ପରଦିନ ଚୈତ୍ର କୃଷ୍ଣ ପ୍ରତିପଦ ଦିବସରେ ରଥ ନିର୍ମାଣ ନିମନ୍ତେ ନିର୍ଦ୍ଦିଷ୍ଟ ବୃକ୍ଷରେ ଶ୍ରୀଜୀଉଙ୍କର ଆଜ୍ଞାମାଳ ବନ୍ଧାଯାଇ ପୂଜା ପୂର୍ବକ ବୃକ୍ଷ ଛେଦନ କରାଯାଏ । ଅକ୍ଷୟ ତୃତୀୟା ଦିନ ରଥ କାଠ ଅନୁକୂଳ ହୁଏ । ବ୍ରହ୍ମ ତାଳଧ୍ୱଜ ରଥର ଉଚ୍ଚତା ୪୧ ହାତ ଦଶ ଆଙ୍ଗୁଳି । କଳସ ଓ ନେତକୁ ବାଦ୍‌ଦେଲେ କେବଳ ରଥର ଉଚ୍ଚତା ୫୨ ଫୁଟ ୬ ଇଞ୍ଚ । ରଥର ବ୍ୟାସ ୩୮ ଫୁଟ ।

ତୁଳସୀ କ୍ଷେତ୍ରର ପହଣ୍ଡି ବଡ଼ ଆକର୍ଷଣୀୟ । ଶ୍ରୀକ୍ଷେତ୍ର ପୁରୀରେ ଜଗନ୍ନାଥଙ୍କୁ ତ୍ରିଭଙ୍ଗୀ ଠାଣିରେ ପହଣ୍ଡି କରାଇ ରଥରେ ବିଜେ କରାଯାଏ । ମାତ୍ର ତୁଳସୀକ୍ଷେତ୍ରରେ ଫଣୀଭୂଷଣ ବଳଦେବ ବୀର ଦର୍ପରେ ଆଗକୁ ପଛକୁ ଝୁଲିଝୁଲି ପହଣ୍ଡି ହୋଇଥାନ୍ତି ।

ବରିଷ୍ଠ ସାମ୍ବାଦିକ, ସମ୍ବାଦ, ଭୁବନେଶ୍ୱର

### ସହାୟକ ଗ୍ରନ୍ଥସୂଚୀ

୧) ପ୍ରଧାନ ରଂଜନ, ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ: କେନ୍ଦୁଝର ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡ଼ା, ୨୦୧୨

୨) ପଟ୍ଟନାୟକ ଆଶୁତୋଷ ପ୍ରସାଦ, ମହାଦେବତା, ପ୍ରକାଶକ: ଫ୍ରେଣ୍ଡସ ପବ୍ଲିଶର୍ସ, କଟକ, ୨୦୧୦

୩) ଚକ୍ରବର୍ତ୍ତୀ ରମେଶ ଚନ୍ଦ୍ର, କେନ୍ଦୁଝରର ବଡ଼ଠାକୁର, ପ୍ରକାଶକ: କେନ୍ଦୁଝର ଜିଲ୍ଲା ପ୍ରଗତିଶୀଳ ନାଗରିକ ମଞ୍ଚ, କେନ୍ଦୁଝର (ପ୍ରକାଶନର ସମୟ ଉଲ୍ଲେଖ ନାହିଁ)

୪) ଦାସ ଡକ୍ଟର ବାସୁଦେବ, ତୁଳସୀ କ୍ଷେତ୍ରରେ ସିଦ୍ଧ ବଳଦେବ, ଉତ୍କଳ ପ୍ରସଙ୍ଗ, ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର, ଜୁଲାଇ–୨୦୧୦

୫) ପ୍ରଧାନ ରଂଜନ, ବିଶ୍ୱ ଦେବତା: ଶ୍ରୀଜଗନ୍ନାଥ, ଉତ୍କଳ ପ୍ରସଙ୍ଗ, ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର, ଜୁଲାଇ–୨୦୧୫

୬) ପ୍ରଧାନ ରଂଜନ, ବନବାସୀଙ୍କ ବୃକ୍ଷ ଉପାସନା ଓ ନବକଳେବର, କୋଣାର୍କ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ନବକଳେବର ବିଶେଷାଙ୍କ, ୧୭୭ତମ ସଂଖ୍ୟା–୨୦୧୫

୭) ମହାନ୍ତି ସରୋଜ କୁମାର, ସଂପାଦନା ମଧୁଧାରା, କଜଳା, କେନ୍ଦ୍ରାପଡ଼ା, ଫେବୃଆରୀ–୨୦୧୮

୮) ପଣ୍ଡା ମାନସ, ମଧୁଧାରା', ସଂପାଦନା: ସରୋଜ କୁମାର ମହାନ୍ତି, କଜଳା, କେନ୍ଦ୍ରାପଡ଼ା, ଫେବୃଆରୀ–୨୦୧୮

୯) ଦାସ ପ୍ରଜ୍ଞା ପାରମିତା, ମଧୁଧାରା', ସଂପାଦନା: ସରୋଜ କୁମାର ମହାନ୍ତି, କଜଳା, କେନ୍ଦ୍ରାପଡ଼ା, ଫେବୃଆରୀ–୨୦୧୮

୧୦) କାନୁନଗୋ ଡକ୍ଟର ହରିହର, ମଧୁଧାରା', ସଂପାଦନା: ସରୋଜ କୁମାର ମହାନ୍ତି, କଜଳା, କେନ୍ଦ୍ରାପଡ଼ା, ଫେବୃଆରୀ–୨୦୧୮

୧୧) ଦାସ ଡକ୍ଟର ବାସୁଦେବ, ମଧୁଧାରା', ସଂପାଦନା: ସରୋଜ କୁମାର ମହାନ୍ତି, କଜଳା, କେନ୍ଦ୍ରାପଡ଼ା, ଫେବୃଆରୀ–୨୦୧୮

୧୨) Pradhan Ranjan, 'Sri Jagannath: The Lord of the universe', Nabakalebara, The Odisha Society of the Americas, Washington DC, USA-2015.

୧୩) Patnaik A.P. The Early Voyagers of the East, Vol.-II-2003, New Delhi.



# ସତ୍ୟବାଦୀ ବନବିଦ୍ୟାଳୟରେ ସେବାପରାୟଣତା

**ଦେବପ୍ରସାଦ ମିଶ୍ର**

ସତ୍ୟବାଦୀ ବନବିଦ୍ୟାଳୟର ପ୍ରଭାବ ଓ ପ୍ରତିଷ୍ଠା ଏତେ ପ୍ରବଳ ଯେ ଏହା ଏବେ ସୁଦ୍ଧା ଇତିହାସର ଅଙ୍ଗୀଭୂତ ହୋଇନାହିଁ । ଏହା ଲୋପ ପାଇଥିଲେ ସୁଦ୍ଧା ଏବେ ମଧ ଜୀବିତ ରହିଥିବା ଛାତ୍ରମାନଙ୍କର ସ୍ମୃତିପଟରେ ଅସଂଖ୍ୟ ଶାଖାପ୍ରଶାଖା ଧରି ଦିପ୍ତିମନ୍ତ ରହିଛି । ସତ୍ୟବାଦୀ ବନବିଦ୍ୟାଳୟର ବୈଶିଷ୍ଟ୍ୟ ଥିଲା ବହୁମୁଖୀ । ଏଠାରେ କେବଳ କେତେକ ଉଚ୍ଚଶିକ୍ଷାପ୍ରାପ୍ତ ତ୍ୟାଗପୂତ ଶିକ୍ଷକ ରହି ଛାତ୍ରମାନଙ୍କୁ ଯେ ଆଦର୍ଶ ଶିକ୍ଷା ଦେଉଥିଲେ ତାହା ନୁହେଁ, ଏହା ତ୍ୟାଗ ମନ୍ତ୍ରରେ ଗୋପବନ୍ଧୁଙ୍କ ଜୀବନାଦର୍ଶରେ ଗଠିତ ହୋଇଥିଲା । ଗୋପବନ୍ଧୁଙ୍କର ସେ ମହନୀୟ ଜୀବନାଦର୍ଶ ହେଲା ସେବାଧର୍ମ, ପରର ଦୁଃଖ ଓ ଦାରିଦ୍ର୍ୟରେ ତାଙ୍କ ବିଶାଳ ପ୍ରାଣର ସହାନୁଭୂତି, ଦୟା ଓ ଅନୁକମ୍ପା ପ୍ରବଣତା । ପରର ଦୁଃଖ ଦେଖିଲେ ତାଙ୍କ ଚକ୍ଷୁ ଅଶ୍ରୁସ୍ରାବୀ ହେଉଥିଲା । ସେ ଏହି ସେବା ଭାବରେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କୁ ଉଦବୁଦ୍ଧ କରିବା ନିମନ୍ତେ ୧୯୧୫ ମସିହା ବୈଶାଖ ମାସରେ ଛାତ୍ରାବାସରେ ସମବେତ ଛାତ୍ରମାନଙ୍କୁ ଦୟା ସମ୍ବନ୍ଧରେ ଯେଉଁ ଦୀର୍ଘ ବକ୍ତୃତା ଦେଇଥିଲେ, ତା'ର ସାରମର୍ମ ହେଲା, ଜନସେବା ହିଁ ଈଶ୍ୱର । ସେବା ମାନବ ଜୀବନ ଦୟାର ପ୍ରସ୍ରବଣ ଏବଂ ଦୟା ହିଁ ମାନବତ୍ୱ ଓ ଦେବତ୍ୱ ମଧ୍ୟରେ ସଂଯୋଗ ମାତ୍ର । ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷାପଦ୍ଧତି ମୂଳତଃ ଭଗବତ ବିଶ୍ୱାସ ଉପରେ ନିବଦ୍ଧ ଥିଲା । ଛାତ୍ରାବାସର ଦୈନନ୍ଦିନ କାର୍ଯ୍ୟକଳାପ ଆରମ୍ଭ କରାଯାଉଥିଲା ବିଷ୍ଣୁ ଉପାସନାରେ । ସେଥିପାଇଁ ଉପାସନା ନାମରେ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକା ଛାତ୍ରମାନେ ସକାଳୁ ଆବୃତ୍ତି କରୁଥିଲେ । ଶିକ୍ଷକ କିମ୍ବା ବାହାରର ଯେକୌଣସି ବିଶିଷ୍ଟ ବ୍ୟକ୍ତି ଛାତ୍ରାବାସରେ ବକ୍ତୃତା ଦେଉଥିଲେ, ସେମାନେ ସମସ୍ତେ ପ୍ରଥମେ ଏହି ଭଗବତ ପ୍ରୀତିରେ ଛାତ୍ରମାନଙ୍କୁ ଅନୁପ୍ରାଣିତ କରିବାକୁ ଚେଷ୍ଟା କରୁଥିଲେ । ଏହି ବିଶ୍ୱବ୍ରହ୍ମାଣ୍ଡରେ ସେହି ଅନ୍ତର୍ଯ୍ୟାମୀ ମହାପୁରୁଷ ରନ୍ଧ୍ରେ ରନ୍ଧ୍ରେ ବିଦ୍ୟମାନ ଓ ବିରାଜମାନ । ଆମରି ଆତ୍ମାରେ ମଧ୍ୟ ତାଙ୍କରି ଅଧିଷ୍ଠାନ । ପ୍ରତ୍ୟେକ ଲୋକର ପ୍ରାଣରେ ମଧ ସେ ବ୍ୟାପି ରହି ତା'ର ଜୀବନକୁ ନିୟନ୍ତ୍ରିତ କରୁଅଛନ୍ତି । ତେଣୁ ଆମ୍ଭେମାନେ ସମସ୍ତେ ସମାନ । କେହି କାହାକୁ ଘୃଣା ଅବଜ୍ଞା କିମ୍ବା ହେୟ ଦୃଷ୍ଟିରେ ଦେଖିବା ଉଚିତ ନୁହେଁ । ଏହିପରି ଭାବରେ ବକ୍ତୃତାମାନ ଆରମ୍ଭ ହୋଇଥାଏ । ଗୋପବନ୍ଧୁ ୧୯୧୫ ମସିହା ବୈଶାଖ ମାସରେ ଦୟା ସମ୍ବନ୍ଧରେ ଯେଉଁ ବକ୍ତୃତା ଦେଇଥିଲେ ଏବଂ ଯାହା ୧୩୭୨ ସାଲ ୧ମ ଭାଗ ୧ମ ସଂଖ୍ୟାରେ ସତ୍ୟବାଦୀରେ ପ୍ରକାଶ ପାଇଥିଲା । ସେଥିରେ ଅନ୍ୟାନ୍ୟ କଥା ମଧ୍ୟରେ ସେ ଛାତ୍ରମାନଙ୍କ ପ୍ରାଣକୁ ଦୟାରେ ଦ୍ରବୀଭୂତ କରିବା ନିମନ୍ତେ ପ୍ରାଣସ୍ପର୍ଶୀ ଭାଷାରେ ସେଦିନ କହିଥିଲେ – ପ୍ରିୟ ଛାତ୍ରଗଣ ବୁଝି ରଖ ବିଶ୍ୱବିଧାତାଙ୍କର ଅପାର କରୁଣାର ଏହି ବିଶ୍ୱରୂପ ଥରେ ହୃଦୟଙ୍ଗମ କରିପାରିଲେ ତୁମ୍ଭେ ପ୍ରକୃତ ମନୁଷ୍ୟ ହେବ । ତାହା ନହେଲେ ତୁମ୍ଭେ ଜଡ । ଏହି ଜଡତ୍ୱ ଛାଡି ନିଜ ଜୀବନକୁ ଚାହିଁ ସଂସାରକୁ ଦେଖି ଥରେ ପ୍ରକୃତ ମନୁଷ୍ୟତା ଲଭି ପାରିଲେ ତୁମ୍ଭର ଜୀବନ ଦୟାମୟ ହେବ । ତୁମ୍ଭକୁ ଦୟା ଅଭ୍ୟାସରେ ଶିଖିବାକୁ ହେବ ନାହିଁ । ଦୟାମୟଙ୍କର ସେହି ଅନନ୍ତ ଦୟା ଫଳରେ ଆମ୍ଭେମାନେ ଜୀବନଧାରଣ କରିଅଛୁ । ସେହି କରୁଣାମୟଙ୍କର ବିଚିତ୍ର ବିଧାନରେ ଆମ୍ଭମାନଙ୍କୁ ଅନ୍ୟ ପ୍ରତି ଦୟା କରିବାକୁ ହେବ । ଯେଉଁ ପରମାତ୍ମା ଚତୁର୍ଦ୍ଦିଗରେ ନ୍ୟାୟ, ପ୍ରେମ ଓ କରୁଣା ରୂପରେ ଏ ସୃଷ୍ଟିକୁ ଆଚ୍ଛାଦନ କରି ରହି

ଅଛନ୍ତି, ଆମ୍ଭମାନଙ୍କୁ ଜୀବନଦାନ କରୁଅଛନ୍ତି, ଜୀବାତ୍ମାରେ ସେହି ପରମାତ୍ମାଙ୍କୁ ଅନୁଭବ କରିବାକୁ ହେବ । ଯେଉଁ ବିଶ୍ୱମୟ କରୁଣା ହେତୁ ଆମ୍ଭର ଜୀବନ ସେହି କରୁଣା ନିଜ ମଧ୍ୟରୁ ବିଶ୍ୱମୟ ବିସ୍ତୀର୍ଣ୍ଣ କରିବାକୁ ହେବ । ଯିଏ ଭିତରକୁ ଦେଖିଅଛି, ସେ ସଂସାରକୁ ଦେଖିଅଛି । ଆମ୍ଭେମାନେ ଅନ୍ୟର ଦୟାରେ ବଞ୍ଚିଅଛୁ ଏବଂ ବାଧ୍ୟ ହୋଇ ଆମ୍ଭମାନଙ୍କୁ କେତେକ କର୍ତ୍ତବ୍ୟ ଅନ୍ୟ ପ୍ରତି କରିବାକୁ ହେବ । ଅତଏବ ଜାଣିକରି ସେହି କର୍ତ୍ତବ୍ୟକୁ ଅନୁଭବ କରି ନିଜ ଦୁଃଖ କଷ୍ଟରେ ପରର ଦୁଃଖ କଷ୍ଟ ତୋଳି ଯେ ଅନ୍ୟ ପ୍ରତି କର୍ତ୍ତବ୍ୟ ଶିଖିଅଛି, ସେହି ଏକା ପ୍ରକୃତ ମନୁଷ୍ୟ । ବିଶ୍ୱ ନିୟନ୍ତାଙ୍କର ମଙ୍ଗଳମୟ ସୃଷ୍ଟିରେ ସେହି ଏକା ପ୍ରକୃତ ଆତ୍ମଜ୍ଞାନ ପାଇଅଛି । ଏହିପରି ସଂସାରକୁ ଯିଏ ଦୟା କରି ଶିଖିଅଛି , ଯେ ଏହିପରି ଈଶ୍ୱରଙ୍କ ଦୟାର ମୂର୍ତ୍ତି ଚତୁର୍ଦ୍ଦିଗରେ ଦେଖି ସେହି ଦୟା ଧର୍ମରେ ସେହି ଈଶ୍ୱର ଭାବରେ ପ୍ରାଣକୁ ପରିପ୍ଲାବିତ କରିଅଛି, ସେହି କେବଳ ପ୍ରକୃତ ଈଶ୍ୱର ସେବା କରି ଶିଖିଛି । ସେହି କେବଳ ବୁଝିଅଛି ଜନସେବା ହିଁ ଈଶ୍ୱର ସେବା, ଜୀବେ ଦୟା ହିଁ ବିଧାତାଙ୍କର ପୂଜା । ଏହା ହିଁ ହେଲା ଗୋପବନ୍ଧୁଙ୍କ ମତରେ ଦୟା । ଏହା ହୃଦୟର ଅନୁଭବର କଥା । କିନ୍ତୁ ଅନୁଭୂତିରେ ଏହାର ଶେଷ ନାହିଁ । ଏହାକୁ କାର୍ଯ୍ୟରେ ରୂପାନ୍ତରିତ କରିବାକୁ ହେବ– ଏହି ଜଗତ ହେଉଛି ଅମୃତମୟ ଦୟା କିମ୍ବା କରୁଣାର ଉତ୍ସ ସ୍ୱରୂପ । ଏହି ଦୟାକୁ ସଂସାର କ୍ଷେତ୍ରରେ ବିକୀର୍ଣ୍ଣ କରିବାକୁ ହେଲେ ସେବା ଧର୍ମର ବାସ୍ତବ ଅନୁଶୀଳନ ଆବଶ୍ୟକ । ଏହି ସେବା ହେଉଛି ପ୍ରକୃତ ଶିକ୍ଷାର ବୀଜ । ବୋଝ ବୋଝ ବହି ପଢି କିଛି ସାର୍ଥକତା ନାହିଁ ଯଦି ଦୟାର ସଞ୍ଜିବନୀ ମନ୍ତ୍ରରେ ଦୀକ୍ଷିତ ନହୋଇ ତୁମେ ପର ସେବାରେ ଆତ୍ମ ନିୟୋଗ ନ କରିଛ । ତେଣୁ ସତ୍ୟବାଦୀ ବିଦ୍ୟାଳୟରେ ସେବା ଥିଲା ଛାତ୍ରମାନଙ୍କର ମହତ ଧର୍ମ । ସେଥିପାଇଁ ଛାତ୍ରାବାସର ଦୈନନ୍ଦିନ କାର୍ଯ୍ୟସୂଚୀରେ ସେବାର ଏତେ ଉଚ୍ଚସ୍ଥାନ । କେବଳ ଛାତ୍ରାବାସରେ ରୋଗୀସେବା ନାହିଁ ବାହାର ଲୋକଙ୍କର ସେବାରେ ଏହିପରି ଭାବରେ ମନପ୍ରାଣ ଦେଇ ଲାଗିପଡିବା କେବଳ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ବିଦ୍ୟାଳୟରେ ସମ୍ଭବ ଥିଲା । ଏବେ ଅବଶ୍ୟ ବିଶ୍ୱବିଦ୍ୟାଳୟମାନଙ୍କରେ ସେବା ନାମରେ ଗୋଟିଏ ଯୋଜନା ଅଛି । ଛାତ୍ରମାନେ ପରିଶ୍ରମ କରି ପୁଷ୍କରିଣୀ ଖନନ କରନ୍ତି । କେଉଁଠାରେ ବା ରାସ୍ତାରୁ ଆବର୍ଜନା ସବୁ ପରିଷ୍କାର କରନ୍ତି । କିନ୍ତୁ ଗୋପବନ୍ଧୁଙ୍କ ସେବା ଧର୍ମରେ ହୃଦୟର ଯେଉଁ ଉଦ୍‌ବେଳନର ଚିତ୍ର ଆମ୍ଭେମାନେ ଲକ୍ଷ୍ୟ କରିଅଛୁ ଏସବୁ ଯୋଜନାରେ ତାହା ଦେଖାଯାଏ କି ? ଏଥିରେ ଗଭୀର ହୃଦୟର ଆନ୍ତରିକତା ବା କେତେ ଦୂର । ସେବା ଧର୍ମର ବାସ୍ତବ ଅନୁଶୀଳନ ସେବାଧର୍ମର ତାତ୍ତ୍ୱିକ ବିଶ୍ଳେଷଣ ପରେ ଜୀବନରେ ପର ପ୍ରତି ଦୟାର ଅନୁଭୂତି ପରର ଦୁଃଖ ମୋଚନ କରିବାରେ ତତ୍ପରତା । ଏହି ପରଦୁଃଖ କାତରତା ଏବଂ ସେହି ଦୁଃଖ ଦୂର କରିବାର ବ୍ୟାକୁଳତା ହେଉଛି ବିଶ୍ୱ ଜନସେବା ! ମନୁଷ୍ୟ ସହିତ ମନୁଷ୍ୟର ସମ୍ବନ୍ଧ ସ୍ଥାପନ କରିବାର ଏକମାତ୍ର ଦିବ୍ୟ ସୋପାନ । ବିଶ୍ୱରେ ସର୍ବତ୍ର ବିକୀର୍ଣ୍ଣ ଈଶ୍ୱରଙ୍କ ଦୟାକୁ ପ୍ରାଣରେ ଅନୁଭବ କରି ଯେଉଁଲୋକ ବିଶ୍ୱଜନସେବାରେ ଆତ୍ମାହୂତି ଦିଏ, ସେହି ହେଉଛି ପ୍ରକୃତ ମନୁଷ୍ୟ । ତା'ର ଦୁଃସ୍ଥ ଜନସେବା ଓ ଭଗବତସେବା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଏହି ପ୍ରକାର ସେବା ଅନୁଶୀଳନର ନାମ ପ୍ରକୃତ ଶିକ୍ଷା । ସତ୍ୟବାଦୀ ବିଦ୍ୟାଳୟରେ ଏହି ସେବାପରାୟଣତା ହିଁ ଥିଲା ମୁଖ୍ୟ କଥା । ଛାତ୍ରାବାସରେ ରୋଗୀମାନଙ୍କର ସେବାଯତ୍ନଠାରୁ ଉତ୍କଳ ସମ୍ମିଳନୀର ପ୍ରକୃଷ୍ଟ ସ୍ୱେଚ୍ଛାସେବକ ଭାବେ କାର୍ଯ୍ୟ କରିବାକୁ ଛାତ୍ରମାନଙ୍କୁ ଉତ୍ସାହ ପ୍ରେରଣା ଓ ଉଦ୍ଦୀପନା ଦେବାରେ ଆଦର୍ଶ ଓ ନିରଳସ ଜନସେବକ ଗୋପବନ୍ଧୁ ଓ ତାଙ୍କର ସଖାମାନେ କଦାପି ଅବହେଳା ପ୍ରଦର୍ଶନ କରୁ ନଥିଲେ । ଏ ସମ୍ପର୍କରେ ତିନୋଟି ଉଦାହରଣ ଦେଲେ କଥାଟି ସ୍ପଷ୍ଟ ହେବ ବୋଲି ଆମ୍ଭମାନଙ୍କର ଆଶା । ପ୍ରଥମତଃ ସମାଜ ସଂସ୍କାରକ ନୀଳକଣ୍ଠଙ୍କ କଥା ଧରାଯାଉ । ସେ ୧୯୧୨ ମସିହା ବେଳକୁ ନିଜେ ସେବାକାର୍ଯ୍ୟରେ ପାରଙ୍ଗମତା ଲାଭ କରି କିପରି ବିଦ୍ୟାଳୟର ଅନ୍ୟତମ ଚରିତ୍ରବନ୍ତ ଶିକ୍ଷକ ରାମଚନ୍ଦ୍ର ରଥଙ୍କ ସହିତ ଗାଁ ଗାଁ ବୁଲି ଗୋପବନ୍ଧୁଙ୍କ ହୋମିଓପାଥିକ ବାକ୍ସ ଧରି ହଇଜାକ୍ରାନ୍ତ ରୋଗୀମାନଙ୍କର ସେବା ଶୁଶ୍ରୂଷା କରୁଥିଲେ, ତାହା ମଧ୍ୟ ବୟୋଜ୍ୟେଷ୍ଠ ଲୋକମାନଙ୍କ ସ୍ମୃତିପଟରେ ଜୀବନ୍ତ ଅଛନ୍ତି । ଗାଁରୁ କେହି ଲୋକ ଆସିଲେ ସେ କାହାକୁ ନ ଦେଖି ଫେରିଯିବ ବୋଲି ନୀଳକଣ୍ଠ ରାମଚନ୍ଦ୍ରଙ୍କ ସହିତ ଘର ବାରଣ୍ଡାରେ ଲଣ୍ଠନଟିଏ ଜାଳି ଶୋଉଥିଲେ । କେହି ଆସିବା ମାତ୍ରକେ ସେ ରାମଚନ୍ଦ୍ରଙ୍କୁ ଧରି ତା' ସହିତ ରୋଗୀର ସେବା କରିବା ନିମନ୍ତେ

ପ୍ରସ୍ତୁତ । ଏହିପରି ଭାବରେ ସତ୍ୟବାଦୀ ବିଦ୍ୟାଳୟ ରୋଗୀସେବା ନିମନ୍ତେ ପ୍ରତିଷ୍ଠା ଓ ପ୍ରସିଦ୍ଧି ଲାଭ କଲା । ଯେଉଁମାନେ ଅସହିଷ୍ଣୁ ହୋଇ ବିରାଟ ବିଦ୍ୟାଳୟ ଗୃହରେ ଅଗ୍ନିସଂଯୋଗ କରି ଆତ୍ମତୃପ୍ତି ଲାଭ କରୁଥିଲେ, ସେହିମାନେ ନୀଳକଣ୍ଠ ଓ ସତ୍ୟବାଦୀର ଛାତ୍ରମାନଙ୍କର ଏହି ଅଚିନ୍ତନୀୟ ଦୁଃସାହସିକ କର୍ମରେ ଅତ୍ୟନ୍ତ ଆନନ୍ଦ ଓ ଉତ୍ସାହ ଅନୁଭବ କରୁଥିବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ପରେ ବିଦ୍ୟାଳୟର ଜଣେ ଅନୁରକ୍ତ ଛାତ୍ର ଶ୍ରୀ ଈଶ୍ୱର ରଥଙ୍କ ଉପରେ ହୋମିଓପାଥିକ ଚିକିତ୍ସା ଭାର ନ୍ୟସ୍ତ କରାଗଲା । ସେ ଦରକାର ହେଲେ ଗ୍ରାମବାସୀଙ୍କର ସେବା କରିବାକୁ ଲାଗିଲେ । ସେତେବେଳର ନବକଳେବର ସମୟର ହଇଜା ସର୍ବତ୍ର ଏକ ଭୟଙ୍କର ଆତଙ୍କ ସୃଷ୍ଟି କରିଥିଲା । ନୀଳକଣ୍ଠ ଏହି ସମୟର ବିବରଣୀ ତାଙ୍କ 'ଆତ୍ମଜୀବନୀ'ରେ ଏହିପରି ଭାବରେ ଉଲ୍ଲେଖ କରିଅଛନ୍ତି– ସେକାଳେ ହଇଜାକୁ ଭାରି ଡର ଥିଲା । ପିଲାମାନେ ଭାରି ଭୟ କରୁଥାନ୍ତି ।

ଦ୍ୱିତୀୟତଃ କବିପ୍ରାଣ ସତ୍ୟବାଦୀ ବିଦ୍ୟାଳୟର ଅଦ୍ୱିତୀୟ ଶିକ୍ଷକ ଗୋଦାବରୀଶଙ୍କ କଥା । ଦିନେ ଗ୍ରୀଷ୍ମକାଳରେ ସତ୍ୟବାଦୀ ନିକଟବର୍ତ୍ତୀ ଗୋଟିଏ ଗ୍ରାମରେ ନିଆଁ ଲାଗିଗଲା । ଗୋଦାବରୀଶ ଛାତ୍ରମାନଙ୍କ ସହିତ ଏହି ନିଆଁଲିଭା କାର୍ଯ୍ୟରେ ଯୋଗ ଦେଇଥିଲେ । ଏପରି ପ୍ରାଣମୂର୍ଚ୍ଛା ପରସେବା କ୍ୱଚିତ୍ ଦେଖିବାକୁ ମିଳେ । ଛାତ୍ରମାନେ ନିଜ ନିଜ ପ୍ରାଣକୁ ପାଣି ଛଡ଼ାଇ ଦେଇ ଏହି କାର୍ଯ୍ୟରେ ଲାଗିଥିଲେ । ଛାତ୍ରମାନଙ୍କର ଏହି ଅପୂର୍ବ ଉନ୍ମାଦନା ଓ ମହାପ୍ରାଣତାରେ ଗୋଦାବରୀଶ ନିଜେ ବିମୋହିତ ହୋଇ ଗୋଟିଏ କବିତା ଲେଖିଲେ । କବିତାର ନାମ ହେଲା 'ଜଳରେ ଅନଳ' । ନିଆଁ ଲିଭାଇବା ସମୟରେ ଛାତ୍ରମାନଙ୍କର ପ୍ରାଣର 'ବିସ୍ତୃତି ଓ ବିଶାଳତାକୁ' ଲକ୍ଷ୍ୟ କରି ସେ ଏହି କବିତାରେ ଲେଖିଅଛନ୍ତି––

ପର ପାଇଁ ପ୍ରତି ଟିକି ହୃଦଟିରେ
କି ବିଶାଳ ସୁଧାଧାର
ବିନ୍ଦୁ ବିନ୍ଦୁ ଦାନେ ଦେଇଛ ଉତ୍ସାହ
ଏ ବିଶ୍ୱ ଭୁବନ ସାର ।
ଏ ଯେ ସୁଧ ସରି ସେନେହ ପୀରତି
ରଖିଛ ହୃଦୟେ ହରି
କଣିକାଏ ତହୁଁ ଦିଅନ୍ତ ଯେବେ ହେ
ଘର ତ ଯାଆନ୍ତା ପୂରି ।

ତୁମଠାରୁ ବାବୁ ଲଭି ଏ ସମ୍ପଦ
ଜୀବନ ଅମୂଲ୍ୟ ମଣି
ସାର୍ଥକ କରନ୍ତି ଏ ମୋର ଜନମ
ଧନୀରୁ ହୁଅନ୍ତି ଧନୀ ।

ତୃତୀୟ ଉଦାହରଣ ହେଲା ସେବାଧର୍ମର ଅନୁଶୀଳନରେ ଗୋପବନ୍ଧୁଙ୍କର ଐକାନ୍ତିକ ନିଷ୍ଠା ଓ ଗଭୀର ଅନୁରାଗ । ୧୯୨୦ ମସିହା କଥା । କୃପାସିନ୍ଧୁ ମିଶ୍ର ସେତେବେଳେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ଗୋପବନ୍ଧୁ ସମ୍ପାଦକ । ସେ କୌଣସି ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳର ଲୋକମାନଙ୍କର ସେବା କରି ମାସକ ପରେ ସତ୍ୟବାଦୀକୁ ଫେରିଥାନ୍ତି । ତହିଁପରଦିନ ସକାଳେ ସେ ତାଙ୍କ ପ୍ରକୋଷ୍ଠ ବାହାରେ ବସି ଦାନ୍ତ ଘଷୁଛନ୍ତି । ମୁଖମଣ୍ଡଳ ବିଷାଦ, ଗମ୍ଭୀର । ଗତ ରାତ୍ରିର ଅଶ୍ରୁଧାର ତାଙ୍କ ଗଣ୍ଡଦେଶରେ ଜୀବନ୍ତ ସ୍ମୃତି ଧାରଣ କରିଛି । କ୍ରମେ କ୍ରମେ ସବୁ ଶିକ୍ଷକ ଆସି ତାଙ୍କ ନିକଟରେ ପହଞ୍ଚିଲେ । କୃପାସିନ୍ଧୁ କହିଲେ, ଦାସେ ଆପଣେ, ଆପଣ ତ ବହୁଦିନ ହେଲା ସତ୍ୟବାଦୀରେ ନଥିଲେ । ମାଷ୍ଟରମାନେ ତ ତିନିମାସ ହେଲା ଦରମା ପାଇ ନାହାନ୍ତି, ସେମାନେ ଚଳିବେ କିପରି ? କୃପାସିନ୍ଧୁ ଏତିକି ମାତ୍ର ଅନୁଯୋଗ କରି କହିଅଛନ୍ତି, ଦେଖିବାକୁ ମିଳିଲା ଗୋପବନ୍ଧୁଙ୍କ ଗଣ୍ଡଦେଶ ଅଶ୍ରୁଧାରରେ ପ୍ଲାବିତ । ସେହି ଅଶ୍ରୁପ୍ଲାବନ ମଧ୍ୟରେ ସେ କହିଉଠିଲେ, କୃପାସିନ୍ଧୁ, ଏ ବିଦ୍ୟାଳୟ ଆଉ କାହାପାଇଁ ? ଆଜି ଦୁର୍ଭିକ୍ଷ ଗ୍ରସ୍ତ ଅଞ୍ଚଳର ଲୋକେ ପୋକମାଛି ପରି ଅନାହାରରେ ଟଳି ପଡ଼ୁଛନ୍ତି । ଏହି ବିଦ୍ୟାଳୟର ଛାତ୍ରମାନେ ଆଉ କାହାର ସେବା କରିବେ ଯେ, ତୁମ୍ଭେ ଏ ସ୍କୁଲ ରଖିବ ? ପ୍ରଥମେ ଲୋକ ସେବା । ପରେ ସ୍କୁଲ । ଏ ସ୍କୁଲ ଭାଙ୍ଗି ଦିଅ । ଛାତ୍ର ଓ ଶିକ୍ଷକମାନେ ସମସ୍ତେ ମିଶି ଦୁର୍ଭିକ୍ଷ ପୀଡ଼ିତ ଅଞ୍ଚଳକୁ ଯାଆନ୍ତୁ । ଜନସେବା ନିମନ୍ତେ ବିସ୍ତୃତ କ୍ଷେତ୍ର ସେଠାରେ ପଡ଼ିରହିଛି ।

କୃପାସିନ୍ଧୁ କେତେକ ଛାତ୍ର ସଙ୍ଗରେ ଧରି ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳକୁ ବାହାରି ପଡ଼ିଲେ ।

### ସେବାର ବିସ୍ତୃତି ଓ ବ୍ୟାପକତା

ସେବା ସତ୍ୟବାଦୀ ବିଦ୍ୟାଳୟର କର୍ମୀମାନଙ୍କ ମତରେ ଶିକ୍ଷାପଦ୍ଧତିର ଅପରିହାର୍ଯ୍ୟ ଓ ଅବଶ୍ୟମ୍ଭାବୀ ଅଙ୍ଗ ।

ସେତେବେଳେ ଇଂରେଜୀରେ ମୁଦ୍ରିତ ହୋଇଥିବା 'Satyabadi School Report 1912-13 to 1917-18' ରେ ସାମାଜିକ ସେବା ସମ୍ପର୍କରେ ଲେଖା ଯାଇଥିଲା,– "This Social service is considered as a part of the School work. No oppertunity is lost which gives the boys a chance to work for their neighbours. They always work with their teachers." ଛାତ୍ରମାନଙ୍କୁ ସେମାନଙ୍କର ପ୍ରତିବେଶୀମାନଙ୍କୁ ବିପଦଆପଦରେ ସାହାଯ୍ୟ କରିବା ନିମନ୍ତେ ଶିକ୍ଷକମାନଙ୍କ ପକ୍ଷରୁ ସକଳ ପ୍ରକାର ଉତ୍ସାହ ଦିଆଯାଏ । ବସ୍ତୁତଃ ଛାତ୍ରମାନେ ଶିକ୍ଷକମାନଙ୍କ ସହିତ ମିଳିମିଶି ଏହିସବୁ ସେବା କାର୍ଯ୍ୟରେ ଲାଗନ୍ତି ।

ନିକଟରେ ଗୋଟିଏ ଗଉଡ଼ର ହଇଜାରେ ଆକସ୍ମିକ ଭାବରେ ମୃତ୍ୟୁ ଘଟିଲା । ସେ ଥିଲା ତା' କୁଟୁମ୍ବର ପ୍ରଧାନ ପୋଷକ । ତା'ର ଗୁଡ଼ିଏ ପିଲାପିଲି । ସ୍ତ୍ରୀଟି ବଡ଼ ବ୍ୟାକୁଳ ହୋଇ କାନ୍ଦୁଥାଏ । ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନେ ଏହା ଜାଣିପାରି ତା' ଘରକୁ ଗଲେ । ସେହି ପିତୃହୀନ ପିଲାମାନଙ୍କୁ ଖାଇବାକୁ ପିନ୍ଧିବାକୁ ଦେଲେ । ସେମାନଙ୍କୁ ଆଶ୍ୱସ୍ତ କରାଇଲେ । କାହାରି କାହାରି ଦିନେ ଓଳିଏ ମଧ ମେସ୍‌ରେ ଖାଇବା ବନ୍ଦ । ସେମାନଙ୍କ ଏସବୁ ସେବାକାର୍ଯ୍ୟ କରିବା ନିମନ୍ତେ ସାଧୁ ପ୍ରରୋଚନା ଦେଉଥାନ୍ତି ଆଚାର୍ଯ୍ୟ ହରିହର ।

ସ୍କୁଲର ଜଣେ ଛାତ୍ର ବଂଶୀ କଳାହାଣ୍ଡିରୁ ଅଳ୍ପଦିନ ହେଲା ସତ୍ୟବାଦୀକୁ ଆସିଥିଲା ନାମ ଲେଖାଇ ପଢ଼ିବାକୁ । କିନ୍ତୁ ହଠାତ୍ ତାକୁ ବିସୂଚିକା ରୋଗ ଆକ୍ରମଣ କଲା । ନୀଳକଣ୍ଠ, ଗୋଦାବରୀଶ ଓ ଅନ୍ୟାନ୍ୟ ଛାତ୍ରମାନେ ତା'ର ପାରୁ ପର୍ଯ୍ୟନ୍ତ ସେବାଶୁଶ୍ରୂଷା କଲେ । ହାତରେ ତା'ର ମଳମୂତ୍ର ଓ ବାନ୍ତି ପୋଛିଲେ । ଗୋଦାବରୀଶ ତାକୁ କୋଳରେ ଶୁଆଇଥାନ୍ତି । ଏହିପରି ସମୟରେ ତା'ର ପ୍ରାଣବାୟୁ ଉଡ଼ିଗଲା । ସେ ଅନ୍ୟାନ୍ୟ ଛାତ୍ରମାନଙ୍କ ସହିତ ତା'ର ଶବକୁ କାନ୍ଧରେ ବୋହି ନେଇ ଶ୍ମଶାନରେ ଶେଷକ୍ରିୟା ସମ୍ପନ୍ନ କଲେ । କିନ୍ତୁ ତା'ର ମୃତ୍ୟୁରେ ଗୋପବନ୍ଧୁ ଓ ଗୋଦାବରୀଶ ପ୍ରଭୃତି ଶିକ୍ଷକ ଓ ଛାତ୍ରମାନଙ୍କର ଯେଉଁ ହୃଦୟବିଦାରକ ଶୋକ, ତାହା ଏବେ ମଧ ଆମ୍ଭମାନଙ୍କ ଚିତ୍ତକୁ କାରୁଣ୍ୟରେ ଦ୍ରବୀଭୂତ କରିଦିଏ । ବଞ୍ଚିଥିବାବେଳେ ତା'ର ସେବାଶୁଶ୍ରୂଷା କରିବାର ପ୍ରାଣମୂର୍ଚ୍ଛା ଉଦ୍ୟମ ଏବଂ ମରିଗଲା ପରେ ତା'ର ଆତ୍ମା ପାଇଁ ଏହି ନିବିଡ଼ ଶୋକାଚ୍ଛନ୍ନତା ଇତିହାସରେ ଲିପିବଦ୍ଧ ହୋଇ ରହିବାର ବିଷୟ । କବି ଗୋଦାବରୀଶ ଏହି ଉପଲକ୍ଷରେ ରଚିତ ହୋଇଥିବା 'ନିମିଷକ ଦେଖା' କବିତାରେ ଲେଖିଥିଲେ––

କ୍ଷଣେ ଲାଗି ଯଦି ଥିଲ ହେ ଅବତରି ମରତେ
କ୍ଷଣକର ଯେବେ ବନ୍ଧନ ବାନ୍ଧିଥିଲ ଜଗତେ
କ୍ଷଣିକ ସମ୍ପଦ ମୋହନେ ଯଦି ଥିଲ ହେ ଫୁଟି
ଆଉ କ୍ଷଣେ ଅବା ଅଧିକ କିମ୍ବା ରହନ୍ତ ଏଥି
କେତେ ଫୁଲ ଡାଳୁ ନ ପଡେ ଗଡ଼ି କୁସୁମ ବନେ
ଏଭଳି କି ଫୁଲ ମଉଳି ଝଡ଼ି ପଡ଼ିଛି ଦିନେ ।

ଛାତ୍ରାବାସର ଛାତ୍ରୀମାନଙ୍କର ଦୈନନ୍ଦିନ କର୍ମସୂଚୀ ମଧ୍ୟରେ ରୋଗୀସେବାକୁ ଅନ୍ତର୍ଭୁକ୍ତ କରାଯାଇ ଏହାକୁ ବାଧ୍ୟତାମୂଳକ କରାଯାଉଥିଲା । ଏହା ହେଉଛି ସେବାଧର୍ମ ଅନୁଶୀଳନର ପ୍ରଥମ ସୋପାନ । ପ୍ରତ୍ୟେକ ବଖରାର ପିଲେ ଏହି ରୋଗୀସେବା କରିବାକୁ ବାଧ୍ୟ । ପ୍ରତ୍ୟେକ ବଖରାର ପିଲେ ପାଳି କରି ଛାତ୍ରାବାସର ରୋଗୀମାନଙ୍କର ସେବାଶୁଶ୍ରୂଷା କରନ୍ତି । ରୋଗୀମାନଙ୍କ ନିମନ୍ତେ ଗୋଟିଏ ପୃଥକ୍ କୋଠରୀ ଥାଏ । ଯାହାର ରୋଗୀସେବା ପାଳି ଥାଏ, ସେହି କୋଠରୀର ଛାତ୍ରମାନେ କେବଳ ଔଷଧ ଦିଅନ୍ତି ନାହିଁ, ପଥ୍ୟପାଚନ ନିଜ ନିଜ ହାତରେ ତିଆରି କରି ରୋଗୀମାନଙ୍କୁ ଦିଅନ୍ତି । ଯେଉଁ ରୋଗୀମାନଙ୍କର ଚିକିତ୍ସା କରାଯାଏ, ସେମାନଙ୍କର ରୋଗର ଅବସ୍ଥା ଖଣ୍ଡିଏ ନୋଟ ବହିରେ ପାଳିରେ ଥିବା ଛାତ୍ରଗଣ ଲେଖିରଖନ୍ତି । ଏହାଦ୍ୱାରା ପରବର୍ତ୍ତୀ ଛାତ୍ରମାନଙ୍କର ରୋଗୀସେବା କାର୍ଯ୍ୟ ସହଜ ଓ ସୁଗମ ହୋଇଉଠେ । ପିଲାମାନେ କି ଉତ୍ସାହ ଓ ଆନନ୍ଦ ମଧ୍ୟରେ ଏସବୁ କାର୍ଯ୍ୟ ସମ୍ପାଦନା କରନ୍ତି, ତାହା ଲକ୍ଷ୍ୟ କରିବାର ବିଷୟ । ଏହି ରୋଗୀ ଚିକିତ୍ସାରୁ କ୍ରମେ ଉଦ୍ଭବ ହେଲା ହୋମିଓପାଥି ଓ କବିରାଜି ଚିକିତ୍ସା । ଦୁଇ ଜଣ ଛାତ୍ର ଏହି ଦୁଇ ପ୍ରକାର ଚିକିତ୍ସାରେ ପଟୁତା ଲାଭକରି କେବଳ ଛାତ୍ରାବାସରେ ନୁହେଁ, ବାହାରର ପୀଡ଼ାଗ୍ରସ୍ତ ଲୋକମାନଙ୍କର ସେବାଶୁଶ୍ରୂଷା କରିବାରେ ଯତ୍ନଶୀଳ ହେଲେ । ଏହି ଦୁଇ ଜଣ ଛାତ୍ର ହେଲେ ବିଦ୍ୟାଳୟର ବରପୁତ୍ର । ଏମାନେ ମେସ୍‌କୁ କୌଣସି ଖାଇବା ଖର୍ଚ୍ଚ ଦେଇ ନଥିଲେ । ସ୍କୁଲ ଦରମା ମଧ ଏମାନଙ୍କର ଛାଡ଼ ହୋଇଥିଲା । ୧୯୧୨ରୁ ୧୯୧୮

ମସିହା ପର୍ଯ୍ୟନ୍ତ ବାହାରର ପ୍ରାୟ ଏକ ସହସ୍ର ଲୋକ ବିଭିନ୍ନ ରୋଗରେ ଆକ୍ରାନ୍ତ ହୋଇ ଏହି ହୋମିଓପାଥି ଓ କବିରାଜି ଦ୍ୱାରା ଚିକିତ୍ସିତ ହୋଇଥିଲେ ।

ଏ ତ ଗଲା ଛାତ୍ରାବାସ ଭିତରର ଚିକିତ୍ସାର ପ୍ରଧାନ କଥା । ଏହି ସେବାଧର୍ମକୁ ବିକୀର୍ଣ୍ଣ ଓ ସର୍ବବ୍ୟାପୀ କରିବାର ଉଦ୍ୟମ ଏବଂ ଚେଷ୍ଟା ମଧ୍ୟ ଗୋପବନ୍ଧୁଙ୍କର ଅକ୍ଳାନ୍ତ ଥିଲା । ସେତେବେଳେ ପୁରୀର ରଥଯାତ୍ରା ସମୟରେ ଅସଂଖ୍ୟ ଲୋକ ହଇଜାରେ ଆକ୍ରାନ୍ତ ହେଉଥିଲେ । ସତ୍ୟବାଦୀ ଗୋଟିଏ ତୀର୍ଥସ୍ଥାନ । ଏଠାରେ ମଧ୍ୟ ଯାତ୍ରା ସମୟରେ ଜନସମାଗମ ଖୁବ୍ ପ୍ରବଳ ହୁଏ । ବାଟରେ କିଏ ଅପରିଚିତ ବ୍ୟକ୍ତି ମରିଶୋଇଲେ ସତ୍ୟବାଦୀର ଶିକ୍ଷକ ଓ ଛାତ୍ରମାନେ ଅକୁଣ୍ଠିତ ଚିତ୍ତରେ ଏହି ଶବର ଶେଷକ୍ରିୟା ସମ୍ପନ୍ନ କରନ୍ତି । ବିପନ୍ନ ହୋଇଥିବା ଲୋକଙ୍କୁ ଚୂଡ଼ା, ଚାଉଳ ବାଣ୍ଟନ୍ତି । ଏପରି ଭାବରେ ଦୁଃସ୍ଥ ଓ ଦୁର୍ଗତମାନଙ୍କର ପ୍ରଭୂତ ମଙ୍ଗଳ ସାଧନ କରିଥାନ୍ତି ।

ପୁରୀର ରଥଯାତ୍ରା ସମୟରେ ସେଠାରେ ସତ୍ୟବାଦୀର ସ୍ୱେଚ୍ଛାସେବକମାନଙ୍କର ଉପସ୍ଥିତି ଏକାନ୍ତ ଭାବରେ ବାଞ୍ଛନୀୟ ହୋଇଉଠେ । ପୁରୀର ଜିଲ୍ଲା ମାଜିଷ୍ଟ୍ରେଟ ଆଗରୁ ଗୋପବନ୍ଧୁଙ୍କୁ ଏ ବିଷୟରେ ସତର୍କ କରାଇ ଦେଇଥାନ୍ତି । ସତ୍ୟବାଦୀର ସ୍ୱେଚ୍ଛାସେବକମାନେ ଯଥାସମୟରେ ଆସି ପୁରୀରେ ପହଞ୍ଚିଥାନ୍ତି । ସଙ୍ଗରେ ସେମାନଙ୍କୁ ନିୟନ୍ତ୍ରିତ କରିବାକୁ ଆଚାର୍ଯ୍ୟ ହରିହର ପ୍ରସ୍ତୁତ ଥାନ୍ତି । ୧୯୧୩ ମସିହାର ରଥଯାତ୍ରା ଉତ୍ସବରେ ସତ୍ୟବାଦୀର ଛାତ୍ରମାନେ ଯେପରି ଭାବରେ ଶହ ଶହ ରୌଦ୍ରତପ୍ତ ଓ ତୃଷାତୁର ଯାତ୍ରୀମାନଙ୍କୁ ପାନୀୟ ଜଳ ଓ ପଙ୍ଖାଦ୍ୱାରା ଆପ୍ୟାୟିତ କଲେ, ତାହା ଏକ ଉଲ୍ଲେଖନୀୟ ବ୍ୟାପାର । ସେତେବେଳର ମାଜିଷ୍ଟ୍ରେଟ ପଣ୍ଡିତ ଉମାବଲ୍ଲଭ ମିଶ୍ର ଗୋପବନ୍ଧୁଙ୍କ ନିକଟକୁ ଏକ ମର୍ମସ୍ପର୍ଶୀ ପତ୍ର ଲେଖି ସତ୍ୟବାଦୀର ଛାତ୍ରମାନଙ୍କର ଉଚ୍ଚ ପ୍ରଶଂସା କରିଥିଲେ । ଅନ୍ୟାନ୍ୟ କଥା ମଧ୍ୟରେ ସେ ପତ୍ରରେ ଉଲ୍ଲେଖ ଥିଲା– "Your volunteers did splendid work yesterday for which I am very thankful." ଅର୍ଥାତ୍ ଆପଣଙ୍କ ସ୍ୱେଚ୍ଛାସେବକମାନେ କାଲି ଯେଉଁ ସୁନ୍ଦର ଓ ମହତ୍ କାର୍ଯ୍ୟ କଲେ, ମୁଁ ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ ।

ସ୍ୱାସ୍ଥ୍ୟ ବିଭାଗର ଆଉ ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଏହି ସ୍ୱେଚ୍ଛାସେବକମାନଙ୍କର ଯାତ୍ରୀସେବା କାର୍ଯ୍ୟର ଭୂରି ଭୂରି ପ୍ରଶଂସା କରି ଗୋପବନ୍ଧୁଙ୍କ ନିକଟକୁ ଲେଖିଥିଲେ– ବିଗତ ରଥଯାତ୍ରା ସମୟରେ ମୁଁ ଆପଣଙ୍କ ବିଦ୍ୟାଳୟର ଛାତ୍ର ଓ ଶିକ୍ଷକମାନଙ୍କୁ ଯାତ୍ରୀମାନଙ୍କର ସେବା କରୁଥିବାର ଦେଖି ଆଶ୍ଚର୍ଯ୍ୟ ହେଲି । ଏ ସେବା ଅତି ସଂଯମ, ନିଷ୍ଠା ଓ ଶୃଙ୍ଖଳାର ସହିତ ସମ୍ପନ୍ନ ହୋଇଥିଲା । ସ୍ୱେଚ୍ଛାସେବକ ନେତାଙ୍କ ଧୈର୍ଯ୍ୟ, ସାହସ ଓ କର୍ମଚାତୁରୀ ଅତୀବ ପ୍ରଶଂସନୀୟ ।

**ଶେଷ ପ୍ରଶ୍ନ**

ଏହି ପୁଣ୍ୟ ସେବାଧର୍ମର ଅନୁଶୀଳନରେ ମନୁଷ୍ୟର ଲାଭ କ'ଣ ? ଏହାର ଯଥାର୍ଥତା ଓ ତାତ୍ପର୍ଯ୍ୟ କେଉଁଠାରେ ? କେବଳ ବିଦ୍ୟାଳୟରେ ଗଣିତ, ଇତିହାସ ଓ ଭୂଗୋଳ ଭଲଭାବରେ ପଢ଼ି କୃତିତ୍ୱର ସହିତ ମାଟ୍ରିକୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଶିକ୍ଷା ପଦ୍ଧତିର ପୂର୍ଣ୍ଣତା କ'ଣ ଉପଲବ୍ଧି କରାଯିବ ନାହିଁ ? ଗୋପବନ୍ଧୁଙ୍କର ମତ ଏ ବିଷୟରେ ଅଭ୍ରାନ୍ତ ଏବଂ ଯେ କୌଣସି ଯୁକ୍ତିତର୍କର ବହିର୍ଭୂତ । ସେବା ହେଉଛି ନିଷ୍କାମ ଓ ନିଃସ୍ୱାର୍ଥ । ଏଥିରେ ଫଳାଫଳର ପ୍ରଶ୍ନ ନାହିଁ । ଏଥିରେ ଯଶ ଓ ନାମ ପ୍ରତି ଅଭିରୁଚି କିମ୍ବା ଆକାଂକ୍ଷା ନାହିଁ । ଏହା ପରଦୁଃଖମୋଚନ ଓ ଦୁଃଖୀ ପାଇଁ ଆହ୍ୱାନ । ଏହା ସ୍ନେହ, ସହାନୁଭୂତି ଓ ଅନୁକମ୍ପାବଦ୍ଧ ହୃଦୟର କଥା । ଯିଏ ଈଶ୍ୱରବିଶ୍ୱାସୀ ଏବଂ ଯିଏ ଆଧ୍ୟାତ୍ମିକ ଚେତନାରେ ବଳିଷ୍ଠ ଓ ଗରିଷ୍ଠ ସେହି କେବଳ ଏହାକୁ ହୃଦୟରେ ଅନୁଭବ କରେ । ଆମ ସହିତ ନିଗୂଢ଼ ସମ୍ପର୍କ ରଖି ବିଶ୍ୱରାଜ୍ୟରେ ଅଖଣ୍ଡ ଐକ୍ୟର ସ୍ଥାପନ କରାଯାଇପାରିବ । ଏହି ଦୟା ଓ ସେବାଦ୍ୱାରା ଏହା ଯେ କୌଣସି ଶିକ୍ଷାପ୍ରଣାଳୀ ସହିତ ଓତପ୍ରୋତ ଭାବରେ ଜଡ଼ିତ ରହିବା ସ୍ୱାଭାବିକ ଓ ସ୍ୱତଃସିଦ୍ଧ । ଗୋପବନ୍ଧୁଙ୍କର ଏକାନ୍ତ ବିଶ୍ୱାସ, ଏ ଜନ୍ମରେ ଏହି ସେବାଧର୍ମର ସମାପ୍ତି ନାହିଁ । ମନୁଷ୍ୟର ସବୁ ଧର୍ମ ଭିତରେ ଏହି ଧର୍ମର ଶ୍ରେଷ୍ଠତ୍ୱ ପ୍ରତି ଯୁଗର ଭକ୍ତମାନେ ପ୍ରଚାର କରିଯାଇଅଛନ୍ତି । ପ୍ରକୃତ ମାନବତ୍ୱ ଏହି ସେବାଧର୍ମର ଅନ୍ତର ମଧ୍ୟରେ ବିଦ୍ୟମାନ । ମଣିଷ ମରିଗଲେ ମଧ୍ୟ ସେ ଯେଉଁଠାରେ ଥାଉ, କିଛି ନା କିଛି ସେବାକାର୍ଯ୍ୟ କରିବାକୁ ପଡ଼ିବ ।

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ-୮

# ଶହୀଦ ଲକ୍ଷ୍ମଣ ନାଏକ : ଅନ୍ଧ ରାତିର ସୂର୍ଯ୍ୟ

**ଗୌରହରି ଦାସ**

'ଭାଇ,
ତମେ କେତେଜଣ
ଜୀବନକୁ ପାଣି ଛଡାଇ ନଦେଲେ ଚଳିବ କି
ଦଧିଚିର ପ୍ରାଣ ଉଜାଡ଼ି ନଦେଲେ
ଜଗତର ଭାଗ୍ୟ ଫେରିବ କି ?'

୧୯୪୩ ମସିହାରେ ବ୍ରହ୍ମପୁର ଜେଲ୍‌ରେ ଥିଲାବେଳେ ଜାତୀୟ କବି ବୀରକିଶୋର ଦାସ ଲେଖିଥିବା କବିତାର ଏହି ଧାଡିଗୁଡିକ ସେହି ଜେଲ୍‌ରେ ଥିବା ଲକ୍ଷ୍ମଣ ନାଏକ କାନରେ ଶୁଣିଥିଲେ କି ନାହିଁ, ଜଣାନାହିଁ । କିନ୍ତୁ ଏହି କବିତାର ଶବ୍ଦଗୁଡିକୁ ସେ କାର୍ଯ୍ୟରେ ଲଗାଇଥିଲେ । ବାସ୍ତବ ଅର୍ଥରେ ଜୀବନକୁ ପାଣି ଛଡେଇ ଦେଇ ଫାଶୀଖୁଣ୍ଟରେ ଝୁଲି ପଡିଥିଲେ ଏବଂ ଶହୀଦ ହୋଇଯାଇଥିଲେ ମାଲକାନଗିରିର ଗାନ୍ଧୀ ଲକ୍ଷ୍ମଣ ନାଏକ ।



ତାଙ୍କର ଅପରାଧ ସମ୍ପର୍କରେ ବିଟ୍ରିଶ୍ ଶାସନର ବିଚାରପତିମାନେ ଯେଉଁ ରାୟ ଦେଇଥିଲେ, ୧୯୪୩ ଜାନୁଆରୀ ୧୩ ତାରିଖର ସେ ରାୟ ଓଡ଼ିଶା ରାଜ୍ୟ ଅଭିଲେଖାଗାର ଦ୍ୱାରା ପ୍ରକାଶିତ "Quit India Movement in Odisha" ବହିରେ ବିସ୍ତୃତ ଭାବରେ ଛପାଯାଇଛି । ଲକ୍ଷ୍ମଣ ନାଏକଙ୍କ ବିରୋଧରେ ଆସିଥିବା ଅଭିଯୋଗ ଫର୍ଦ୍ଦରେ ଦର୍ଶାଯାଇଥିଲା ଯେ ୧୯୪୨ ଅଗଷ୍ଟ ମାସ ୨୧ ତାରିଖ ସକାଳ ପ୍ରାୟ ସାଢେ ୯ଟା ବେଳେ ଲକ୍ଷ୍ମଣ ନାଏକଙ୍କ ନେତୃତ୍ୱରେ ପ୍ରାୟ ୧୦୦୦ ଲୋକ କଂଗ୍ରେସ ପତାକା ଓ ଲାଠି ଧରି ମାଥିଲି ଥାନା ଉପରେ ଆକ୍ରମଣ କରିବାକୁ ଯାଇଥିଲେ । ସେମାନେ ସ୍ଲୋଗାନ୍ ଦେଇଥିଲେ– ଆମେମାନେ ଯୋଦ୍ଧା । ଆମେ ଗାନ୍ଧୀଙ୍କ ଶାସନ ଆଣିଛୁ । ବ୍ରିଟିଶ୍ ସରକାର ଶାସନ ନାହିଁ । ଆମେ ଥାନାକୁ ପୋଡ଼ିବୁ । ଯେଉଁ ଅଫିସରମାନେ ଆମକୁ ବାଧାଦେବେ ସେମାନଙ୍କୁ ହତ୍ୟା କରିବୁ । ଏଥିରେ ସଫଳ ହେଲାପରେ ଆମେ ମାଲକାନଗିରି ଯାଇ ସରକାରୀ ତହବିଲ ଲୁଟ୍ କରିବୁ । ଡିଭିଜିନାଲ୍ ଇନ୍ସପେକ୍ଟର କିଛି ପୁଲିସଙ୍କୁ ନେଇ ଏହି ଲୋକମାନଙ୍କୁ ଭେଟିଥିଲେ । ତା'ପରେ ଉତ୍ତ୍ୟକ୍ତ ଲୋକମାନେ ପାଖ ହାଟକୁ ଯାଇ ତାଙ୍କ ଭବିଷ୍ୟତର କାର୍ଯ୍ୟପନ୍ଥା ସ୍ଥିର କରିଥିଲେ । ହାଟରେ ସୁଦ୍ଧା ଉତ୍ତ୍ୟକ୍ତ ଲୋକମାନଙ୍କୁ ଲକ୍ଷ୍ମଣ ନାଏକ ଉଦ୍‌ବୋଧନ ଦେଇଥିଲେ ଏବଂ ଆଗରୁ ଯୋଉ ଯୋଉ କଥା କହିଥିଲେ ସେଇ ସେଇ କଥା କହିଲେ– ଆମେ ସରକାରୀ ଅଫିସରଙ୍କୁ ହତ୍ୟା କରିବା ଓ ତହବିଲ ଲୁଟ୍ କରିବା । ବ୍ରିଟିଶ ସରକାର ଆଉ ନାହିଁ । ଜୟପୁର

ମହାରାଜା ମଧ୍ୟ ମଲେଣି । ଏ ପ୍ରକାର ଭାଷଣ ଶୁଣି ମେଳି ବାନ୍ଧିଥିବା ଲୋକମାନେ ଆହୁରି ଉତ୍ତ୍ୟକ୍ତ ହୋଇଥିଲେ । ଏହି ଅଭିଯୋଗରେ ପୁଣି ଦର୍ଶାଯାଇଥିଲା ଯେ ଲକ୍ଷ୍ମଣ ନାଏକ ଓ ବଳରାମ ପୂଜାରୀଙ୍କ ନେତୃତ୍ୱରେ ଉତ୍ତ୍ୟକ୍ତ ଲୋକମାନେ ଥାନା ଭିତରକୁ ପଶି ଆସିଥିଲେ ଏବଂ ସବ୍ ଇନ୍ସପେକ୍ଟର ରାମମୂର୍ତ୍ତି ଏବଂ କନେଷ୍ଟବଳ ମହାନ୍ତିଙ୍କୁ ମାଡ଼ ମାରି ରକ୍ତାକ୍ତ କରିଥିଲେ । ଏହି ଗଣ୍ଡଗୋଳରେ ରାମାୟାଙ୍କ ମୃତ୍ୟୁ ହୋଇଥିଲା । ତାଙ୍କ ବେକ ଓ କାନ୍ଧରେ ଶକ୍ତ ଆଘାତ ଲାଗିଥିଲା ଓ ଖପୁରି ଭାଙ୍ଗିଯାଇଥିଲା । ରାମାୟାଙ୍କ ହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାଏକଙ୍କୁ ୩୦୨ ଦଫାରେ ଦୋଷୀ ସାବ୍ୟସ୍ତ କରାଯାଇଥିଲା । ବ୍ରିଟିଶ ଶାସନ ଲକ୍ଷ୍ମଣ ନାଏକଙ୍କ ବିରୋଧରେ ଆଣିଥିବା ଏହି ଅଭିଯୋଗର ସାକ୍ଷୀଭାବେ କିଛି ପୁଲିସ ଅଫିସରଙ୍କୁ ଯୋଗାଡ଼ କରିଥିଲେ । ତାଙ୍କ ଭିତରୁ ଜଣେ ସବ୍‌ଇନ୍ସପେକ୍ଟର ପୁଣି କହିଥିଲେ ଯେ, 'ରାମାୟାଙ୍କୁ ଲକ୍ଷ୍ମଣ ନାଏକ ଏବଂ ବଳରାମ ପୂଜାରୀ ଆକ୍ରମଣ କରିବା ମୁଁ ଦେଖିଛି । ବଳରାମ ପୂଜାରୀ ତାଙ୍କ ବେକର ଡାହାଣ ପଟେ ବାଡ଼େଇଥିଲେ ଓ ଲକ୍ଷ୍ମଣ ତାଙ୍କ ମୁଣ୍ଡକୁ ବାଡ଼େଇ ଫଟେଇ ଥିଲେ । ଏହା ଫଳରେ ରାମାୟା ମରିଯାଇଥିଲେ ।' ଜୟପୁରର ରେଭେନ୍ୟୁ ଇନ୍ସପେକ୍ଟର ମଧ୍ୟ ସମାନ କଥା କହିଥିଲେ । ପାଟନା ହାଇକୋର୍ଟରେ ଦାୟର ଅପିଲ୍ ଖାରଜ ହୋଇଯିବା ପରେ ୧୯୪୩ ମାର୍ଚ୍ଚ ୨୯ ତାରିଖ ସକାଳେ ବ୍ରହ୍ମପୁର ଜେଲ୍‌ରେ ଫାଶୀ ଦିଆଯାଇଥିଲା । ଫାଶୀ ପାଇବା ଆଗରୁ ବ୍ରହ୍ମପୁର ଜେଲ୍‌ରେ ଥିବା ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ ଏବଂ ରାଧାମୋହନ ସାହୁ ପ୍ରଭୃତି ନେତାଙ୍କୁ ଦେଖା କରିବା ପାଇଁ ସେ ଚାହିଥିଲେ । ରାଧାକୃଷ୍ଣ ବିଶ୍ୱାସରାୟ ଏବଂ ରାଧାମୋହନ ସାହୁ ଲକ୍ଷ୍ମଣଙ୍କ ପାଖକୁ ଯିବା ପାଇଁ ମାନସିକ ଶକ୍ତି ଠୁଳ କରିପାରିଲେ ନାହିଁ । ଦୁଃଖ ଏବଂ ବେଦନାରେ ଥରି ଉଠିଥିଲା ସେମାନଙ୍କର ହୃଦୟ । ସଦାଶିବ ତ୍ରିପାଠୀ କିନ୍ତୁ ଲକ୍ଷ୍ମଣ ନାଏକ ରହୁଥିବା କୋଠିକୁ ଯାଇ ଦେଖା କରିଥିଲେ । ଲକ୍ଷ୍ମଣ ନାଏକ କହିଥିଲେ, ମୋର ଅନେକ ଭାଇ ମଲେ । ଅନେକ ଜେଲ୍‌ରେ ଶଡୁଛନ୍ତି । ମୋ ପାଇଁ ଦୁଃଖ କରିବ କାହିଁକି ?

କିଛି ସମୟ ନିରବ ରହି ସେ ପୁଣି କହିଥିଲେ କିନ୍ତୁ ଗୋଟିଏ କଥା । ଆମେମାନେ ଯେଉଁ ସ୍ୱରାଜ୍ୟ ପାଇଁ ଲଢୁଛେ, ସେ ରାଜ୍ୟକୁ ଦେଖି ନପାରିବାରୁ ମନରେ ଟିକିଏ ଦୁଃଖ । ଏତିକି ଅଭାବ ଜୀବନରେ ଯାହା ରହିଗଲା ।

ଐତିହାସିକମାନେ ଲେଖିଛନ୍ତି ଫାଶୀଖୁଣ୍ଟକୁ ଗଲାବେଳେ ଲକ୍ଷ୍ମଣ ନାଏକଙ୍କର ଶେଷ କଥା ଥିଲା, 'ସୂର୍ଯ୍ୟ ଯଦି ସତ୍ୟ, ଚନ୍ଦ୍ର ଯଦି ସତ୍ୟ ହୋଇଥାଏ, ତେବେ ଭାରତ ସ୍ୱାଧୀନ ହେବାଟା ସେହିଭଳି ସତ୍ୟ ହେବ ।'

ଲକ୍ଷ୍ମଣ ନାଏକଙ୍କ ସଂଗ୍ରାମର ପୃଷ୍ଠଭୂମି ସମ୍ପର୍କରେ ଦି' ଚାରି କଥା ଏଇଠି ଆଲୋଚନା କରାଯାଇପାରେ । ୧୯୪୨ରେ ଅପ୍ରେଲ ୨୯ରୁ ମେ ୨ ଯାଏଁ ଆଲାହାବାଦରେ ଅଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ବସିଲା ଓ ପୁଣି ଦାବି ହେଲା ଯେ ଇଂରେଜ ଭାରତକୁ ସ୍ୱାଧୀନତା ଦେଉ, ଛାଡ଼ି ଚାଲିଯାଉ, ସ୍ୱାଧୀନ ହେଲେ ଯାଇ ଭାରତ ବ୍ରିଟେନ୍ ଓ ଅନ୍ୟାନ୍ୟ ଦେଶମାନଙ୍କ ସହିତ ଯେପରି ସମ୍ପର୍କ ରଖିବାକୁ ଚାହିବ ସେପରି ରଖିବ ଓ କାର୍ଯ୍ୟ କରିବ । ଗାନ୍ଧିଜୀ ନାନା ଲେଖା ଛପାଇଲେ, ତା'ର ସାର ହେଲା, 'ଇଂରେଜ, ଭାରତ ଛାଡ଼' । ୧୯୪୨ ମେ ୨୪ରେ ସେ ଲେଖିଲେ 'ଭାରତକୁ ଭଗବାନଙ୍କ ହାତରେ ଛାଡ଼ିଦିଅ ।'

୧୯୪୨ ଜୁଲାଇ ୬ରେ ୱାର୍ଦ୍ଧାରେ କଂଗ୍ରେସ ୱାର୍କିଂ କମିଟି ବସିଲା । ଗାନ୍ଧିଜୀ ମତବ୍ୟକ୍ତ କଲେ ଯେ ପ୍ରକାଶ୍ୟ ଭାବରେ ଓ ଅହିଂସା ଉପାୟରେ ଇଂରେଜ ସରକାର ବିରୁଦ୍ଧରେ ବିଦ୍ରୋହ କରାଯିବ । ଜୁଲାଇ ୧୪ରେ ୱାର୍କିଂ କମିଟି 'ଭାରତ ଛାଡ଼' ପ୍ରସ୍ତାବ ପାସ୍ କଲେ । ପ୍ରସ୍ତାବ ହେଲା 'ଭାରତରେ ବ୍ରିଟିଶ୍ ଶାସନ ତତ୍‌କ୍ଷଣାତ୍ ଶେଷ ହେଉ । ବ୍ରିଟିଶ୍ ସରକାର ରାଜି ନହେଲେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଦେଶବ୍ୟାପୀ ଅହିଂସା ସଂଗ୍ରାମ ଆରମ୍ଭ ହେବ ।' ଅଗଷ୍ଟରେ ବମ୍ବେରେ ଅଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ବସିଲା, ଅଗଷ୍ଟ ୮ରେ ବି ରାତି ଅଧାଯାକେ ଚାଲିଲା । ସେହି ପ୍ରସ୍ତାବ ହିଁ ଗୃହୀତ ହେଲା । ସେଥିରେ କୁହାଗଲା ଯେ ଇଂରେଜ ଭାରତ ଛାଡ଼ନ୍ତୁ, ସ୍ୱାଧୀନ ଭାରତ ପୂର୍ଣ୍ଣ ଶକ୍ତିସମ୍ବଳ ବିନିଯୋଗ କରି ଏ ଯୁଦ୍ଧରେ ମିତ୍ରଶକ୍ତିକୁ ସାହାଯ୍ୟ କରିବ । ଇଂରେଜ ରାଜି ନହେଲେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ପ୍ରାପ୍ତି ପାଇଁ ଦେଶବ୍ୟାପୀ ଅହିଂସା ଗଣ ସଂଗ୍ରାମ କରାଯିବ । ଯେତେବେଳେ ଆନ୍ଦୋଳନ

ଚଳାଇବାକୁ କଂଗ୍ରେସ କମିଟି ନିର୍ଦ୍ଦେଶ ଦେବାକୁ ସମର୍ଥ ହେବ ନାହିଁ, କାରଣ ନେତାମାନେ ନଥିବେ, ସେତେବେଳେ ଗଣଆନ୍ଦୋଳନରେ ଭାଗ ନେଉଥିବା ପ୍ରତ୍ୟେକ ଲୋକ ସ୍ତ୍ରୀ କି ପୁରୁଷ, କଂଗ୍ରେସ କମିଟିର ପ୍ରଚଳିତ ସାଧାରଣ ନିର୍ଦ୍ଦେଶ ଅନୁଯାୟୀ ନିଜେ ନିଜକୁ ପରିଚାଳିତ କରି ଆନ୍ଦୋଳନ ଚଳାଇବେ ।

୧୯୪୨ ଅଗଷ୍ଟ ୮ ତାରିଖ ରାତିରେ ସମ୍ମେଳନ ସରିଲା ପରେ ସକାଳ ନ ପାହୁଣୁ ମହାତ୍ମା ଗାନ୍ଧୀ, ମୌଲାନା ଆଜାଦ୍ ଓ ଅନ୍ୟାନ୍ୟ ବଡ଼ ବଡ଼ ନେତାମାନେ ଗିରଫ ହୋଇଗଲେ । ସାତଦିନ ଭିତରେ କଂଗ୍ରେସର ପ୍ରାୟ ସବୁ ନେତୃସ୍ଥାନୀୟ ବ୍ୟକ୍ତି ଗିରଫ ହୋଇ ବନ୍ଦୀ ହେଲେ ।

୧୯୪୨ ଅଗଷ୍ଟ ୯ ତାରିଖ ଆରମ୍ଭରୁ ଗାନ୍ଧିଜୀ ଓ ବଡ଼ ବଡ଼ କଂଗ୍ରେସ ନେତାମାନେ ଗିରଫ ହେବା ପଛେ ପଛେ ସାରା ଭାରତରେ ଐତିହାସିକ 'ଅଗଷ୍ଟ ବିପ୍ଳବ' ଆରମ୍ଭ ହୋଇଗଲା । ଇଂରେଜ ସରକାର କଂଗ୍ରେସ ଓ ତା'ର ସବୁ ଅନୁଷ୍ଠାନକୁ ବେଆଇନ ଘୋଷଣା କଲେ । ଅଳ୍ପ କେତେଜଣ, ଯେଉଁମାନେ ଆତ୍ମଗୋପନ କଲେ, ସେମାନଙ୍କ ଛଡ଼ା ଅନ୍ୟ ଯେ ଯେଉଁଠି କଂଗ୍ରେସର ନେତା ବା ନେତୃସ୍ଥାନୀୟ ଥିଲେ ବା କଂଗ୍ରେସ ଆନ୍ଦୋଳନ ସହିତ ସକ୍ରିୟଭାବେ ସାମାନ୍ୟ ଅଂଶରେ ଜଡିତ ଥିଲେ ସମସ୍ତଙ୍କୁ ଗିରଫ କରି ଜେଲରେ ପୂରାଇଲେ, କଂଗ୍ରେସ ଅଫିସ୍‌ଗୁଡିକ ତାଲା ପକାଇଲେ, ତା'ର କାଗଜପତ୍ର ଜବତ କଲେ, ନାନା କଟକଣା ଜାରି କଲେ, ଖବରକାଗଜମାନଙ୍କ ମୁହଁ ବନ୍ଦ କଲେ, ସଭାସମିତି ବେଆଇନ ଘୋଷଣା କଲେ, ଧରପଗଡ, ଖାନତଲାସ, ସମ୍ପତ୍ତି ବାଜ୍ୟାପ୍ତି, ନାନା ପ୍ରକାର ଦମନଲୀଳା ଆରମ୍ଭ କଲେ । ଉଦ୍ଦେଶ୍ୟ ରହିଲା କଂଗ୍ରେସ ଓ ସ୍ୱାଧୀନତା ଆନ୍ଦୋଳନକୁ ମୂଳପୋଛ କରିଦେବା । ଯେତେବେଳେ ପ୍ରତିବାଦ ହେଲା, ସେତେବେଳେ ଲାଠିମାଡ଼, ଗୁଳିମାଡ଼, ନାନା ନିର୍ଯାତନା, ଗିରଫଦାରି, ଜେଲ୍ ଆହୁରି ଖାନତଲାସ, ସମ୍ପତ୍ତି ଧ୍ୱଂସ, ସମ୍ପତ୍ତି ବାଜ୍ୟାପ୍ତି, ଭୟ ପ୍ରଦର୍ଶନ, ନିଷ୍ଠୁର ଦମନଲୀଳା ଆଦି କରି କୋକୁଆ ଭୟ ସୃଷ୍ଟି କରିବାକୁ ଲାଗିପଡ଼ିଲେ ।

ଏହି ପୃଷ୍ଠଭୂମିରେ ସଂଗ୍ରାମୀ ଲକ୍ଷ୍ମଣ ନାଏକଙ୍କର ଅଭ୍ୟୁଦୟ । ବଣଜଙ୍ଗଲ ଘେରା କୋରାପୁଟର ତେନ୍ତୁଳିଗୁମ୍ମା ଗାଁରେ ଜନ୍ମ । ତେନ୍ତୁଳିଗୁମ୍ମା ବୈପାରୀଗୁଡ଼ା ଥାନାରେ, କୋଲାବ ନଈକୂଳରେ ଗୋଟେ ଅଖ୍ୟାତ ଗାଁ ସେଇଠି ଗୋଟେ ସମ୍ପନ୍ନ ଭୂୟାଁ ପରିବାରରେ ଲକ୍ଷ୍ମଣ ନାଏକ ବାପା ପଦଲାମ ନାଏକଙ୍କର ଦ୍ୱିତୀୟ ସନ୍ତାନ ରୂପେ ଜନ୍ମ ନେଇଥିଲେ । ଚାଷବାସ ସହ ଗାଈଗୋରୁ, ମେଣ୍ଢା ଆଦି ଗୃହପାଳିତ ପଶୁ ଥିଲେ । ବାପା ଥିଲେ ଜୟପୁର ମହାରାଜାଙ୍କ ମୁସ୍ତାଦାର– ଚାରିଖଣ୍ଡି ଗାଁ ବେଜୁଣିଗୁଡ଼ା, ଅଁଳାଗୁଡ଼ା, ଲେକିଗୁଡ଼ା ଓ ତେନ୍ତୁଳିଗୁମ୍ମାର ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ରାଜାଙ୍କ ରାଜକୋଷରେ ଦେଉଥିଲେ ସେ । ଲକ୍ଷ୍ମଣ ମଧ୍ୟ ଏ କାମ ଦକ୍ଷତାର ସହ କରି ରାଜାଙ୍କଠାରୁ ପ୍ରଶଂସା ପାଇଥିଲେ ।

୧୯ବର୍ଷ ବୟସରେ ବାହା ହୋଇଥିଲେ ମୁସ୍ତାଦାର ଲକ୍ଷ୍ମଣ ନାଏକ । ବିବାହର ଦେଢ଼ବର୍ଷ ପରେ ପୁଅ ଜନ୍ମ ହୋଇଥିଲା– ରଘୁନାଥ ।

ମୁସ୍ତାଦାର ଥିବାବେଳେ ଗୋଟିଏ କଥା ଲକ୍ଷ୍ମଣ ନାଏକଙ୍କୁ ଖୁବ୍ କଷ୍ଟ ଦେଉଥିଲା । କୋରାପୁଟ ଜିଲ୍ଲାର ସରଳ ଲୋକମାନେ ଦୁଇଆଡୁ ନିର୍ଯାତିତ ହେଉଥିଲେ– ସରକାର ଓ ସାହୁକାର । ସାହୁକାରମାନଙ୍କ ଶୋଷଣ ତ ଅଭ୍ୟାସରେ ପଡ଼ିଯାଇଥିଲା, ମାତ୍ର ସରକାରୀ କର୍ମଚାରୀଙ୍କ ଜୁଲୁମ ଖୁବ୍ ବାଧୁଥିଲା ଲୋକଙ୍କୁ । ସରକାରୀ ଅମିନ ଓ ରେଭେନ୍ୟୁ ଇନ୍ସପେକ୍ଟରଙ୍କୁ ଲୋକେ ସବାରିରେ ବୋହିକି ଆଣୁଥିଲେ । ସେମାନେ ପାଦରେ ଚାଲୁ ନଥିଲେ । ଏକଥା ଲକ୍ଷ୍ମଣ ନାଏକଙ୍କୁ ସ୍ୱାଭାବିକ ଭାବେ ଭଲ ଲାଗୁ ନଥିଲା । ଏଇ କର୍ମଚାରୀମାନେ ଗ୍ରାମକୁ ଆସିଲେ ଲୋକଙ୍କ ଭିତରେ ଆତଙ୍କ ଖେଳିଯାଉଥିଲା । ମୁସ୍ତାଦାରଙ୍କ ଜରିଆରେ ଲୋକଙ୍କ ପନିପରିବା, ଅଣ୍ଡା, କ୍ଷୀର ଇତ୍ୟାଦି ସରକାରୀ ଅଫିସରଙ୍କ ସେବାରେ ଲାଗୁଥିଲା । କାରଣ ସେମାନେ ଲୋକଙ୍କ ନିକଟରେ ଥିଲେ ଇଷ୍ଟ ମହାପ୍ରଭୁ ।

୧୮୬୯ ମସିହାରେ କୋରାପୁଟ ପାଖ ଆନ୍ଧ୍ରପ୍ରଦେଶର ଗୋଦାବରୀ ଜିଲ୍ଲାରେ ଗୋଟେ ମେଳି ହୋଇଥିଲା ଯାହା

କୋୟା ମେଳି ଭାବରେ ବିଦିତ । ବିଦ୍ରୋହୀମାନେ ସଂଗଠିତ ହୋଇ ଆନ୍ଧ୍ରପ୍ରଦେଶର ଗୋଟେ ଫାଣ୍ଡି ଉପରେ ଆକ୍ରମଣ କରି ତାହା ନିଜ ଅକ୍ତିଆରକୁ ନେଇଯାଇଥିଲେ ଓ ସେଠାରେ ମୁତୟନ ୬ଜଣ କନେଷ୍ଟବଳଙ୍କୁ ହତ୍ୟା କରିଥିଲେ । ପିଲାଦିନେ ଏ ମେଳିର କାହାଣୀ ଶୁଣିଥିଲେ ଲକ୍ଷ୍ମଣ ନାଏକ । ଏହା ସାଙ୍ଗକୁ ୧୯୧୦-୧୧ର ବସ୍ତର ମେଳି କଥା ମଧ୍ୟ ସେ ଶୁଣିଥିଲେ । କୁହାଯାଏ, ଏହି ମେଳିର କଥା ଶୁଣି ସେ ଅନୁଭବ କରିଥିଲେ ଯେ ପ୍ରଜାମାନେ ଏକାଠି ହେଲେ ସରକାରଙ୍କୁ ବିରୋଧ କରିବା ସମ୍ଭବ ହେବ । ଲକ୍ଷ୍ମଣ ନାଏକ ଚନ୍ଦ୍ର କୁଟିଆଙ୍କୁ ଜାଣିଥିଲେ ଏବଂ ତାଙ୍କଠାରୁ ଗରିଲା ଯୁଦ୍ଧର କୌଶଳ ଶିକ୍ଷା କରିଥିବା ମଧ୍ୟ ଶୁଣାଯାଏ ।

୧୯୩୦ ମସିହାରେ ଲକ୍ଷ୍ମଣ ନାଏକ ଜୟପୁର ରାଜାଙ୍କ ମୁସ୍ତାଦାର ଭାବେ ନିଯୁକ୍ତ ହେଲେ । ଲୋକଙ୍କ ଉନ୍ନତି ପାଇଁ ସେ ଅନେକ କାମ କରିଥିଲେ । ତା' ଭିତରେ ସରକାରୀ ଅଫିସରମାନଙ୍କର ଜୁଲୁମ ଚାଲିଥାଏ । ମାତ୍ର ଗୋଟେ ସମୟ ଆସିଲା ସେ ଏହାର ବିରୋଧ କଲେ । ଶିସ୍ତୁ (ଖଜଣା) ଜମା କରିବାଲାଗି ସେ ରାମଗିରି ଯାଉଥିଲେ ଓ ସେଇଠି ନୀଳକଣ୍ଠ ପାତ୍ରଙ୍କ ସହ ପରିଚୟ ହୋଇଥିଲା । ଏହି ସମୟରେ ଗାନ୍ଧୀଙ୍କ ନେତୃତ୍ୱରେ ଚାଲିଥିବା ସ୍ୱାଧୀନତା ପାଇଁ ଆନ୍ଦୋଳନରେ ସେ ସାମିଲ ହେଲେ । ୧୯୩୦ରେ ଲବଣ ସତ୍ୟାଗ୍ରହ ସାରା ଭାରତରେ ଆନ୍ଦୋଳନ ସୃଷ୍ଟି କରିସାରିଥାଏ ।

୧୯୩୬ ମସିହାରେ ଓଡ଼ିଶା ଭାଷା ଭିତ୍ତିରେ ସ୍ୱତନ୍ତ୍ର ପ୍ରଦେଶ ହେଲା । ଓଡ଼ିଶାର ପ୍ରଥମ ଲାଟ୍ ସାହେବ ବା ଗଭର୍ଣ୍ଣର ହେଲେ ସାର୍ ଜନ୍ ହବାକ୍ । ତାଙ୍କର କୋରାପୁଟ ଗସ୍ତ ସମୟରେ ରାମେଶ୍ୱର ଓ ଗୁପ୍ତେଶ୍ୱର ଅଞ୍ଚଳରେ ଶିକାର ଓ ମନୋରଞ୍ଜନର ବ୍ୟବସ୍ଥା କରାଗଲା । ଏଥିପାଇଁ ଅନେକ ନିରୀହ ଆଦିବାସୀଙ୍କୁ ବେଠି କାମରେ ଲଗାଗଲା । ଶହ ଶହ ସଂଖ୍ୟାରେ ପୋଷା କୁକୁଡା ଛଡ଼େଇ ନିଆଗଲା । ଏକଥା ଦେଖି ଲକ୍ଷ୍ମଣ ନାଏକ ଥୟ ଧରିପାରିଲେ ନାହିଁ । ସେ 'ସମାଜ'ରେ ଏକଥା ପ୍ରକାଶ ପାଇଁ ପଠେଇଥିଲେ ଓ ତାହା ପ୍ରକାଶ ପାଇବା ପରେ ସରକାରୀ କର୍ମଚାରୀଙ୍କ ଅତ୍ୟାଚାର ପ୍ରମାଣିତ ହୋଇଥିଲା ଏବଂ ସରକାର ନିଜ ଭୁଲ ଜାଣିପାରି କ୍ଷତିପୂରଣ ଦେବାକୁ ଘୋଷଣା କଲେ । ଏ ଘଟଣା ଲକ୍ଷ୍ମଣଙ୍କ ନେତୃତ୍ୱ ପ୍ରତି ଜନସମର୍ଥନ ବୃଦ୍ଧି କରିଥିଲା ।

କୋରାପୁଟ ଜିଲ୍ଲାର ଜୟପୁର ପାଖ ନୂଆପୁଟରେ ଯେଉଁ ଟ୍ରେନିଂ ଶିବିର ଅନୁଷ୍ଠିତ ହୋଇଥିଲା ସେଥିରେ ଲକ୍ଷ୍ମଣ ନାଏକ ଯୋଗ ଦେଇଥିଲେ । ତାଙ୍କ ସହ ଆହୁରି ୫୦ଜଣ ଆଦିବାସୀ ମଧ୍ୟ ଏଇଥିରେ ଯୋଗ ଦେଇଥିଲେ । ଏହିଠାରେ ବଡ଼ ବଡ଼ କଂଗ୍ରେସ ନେତାଙ୍କ ସହ ଲକ୍ଷ୍ମଣଙ୍କର ପରିଚୟ ହୁଏ । ତିନିମାସ ଧରି ଚାଲିଥିବା ଏହି ଶିବିରରୁ ରାସ୍ତା ତିଆରି, ନାଳ ସଫେଇ ଓ ଗାଁ ସଫେଇ ଇତ୍ୟାଦି ରଚନାତ୍ମକ କାମ ଶିଖନ୍ତି ଲକ୍ଷ୍ମଣ ନାଏକ ।

ଏଇ ଶିବିରରେ ଯୋଗଦାନ ଲକ୍ଷ୍ମଣଙ୍କ ଉପରେ ଗଭୀର ପ୍ରଭାବ ପକାଏ । ସେ ଖଦିକୁ ଗ୍ରହଣ କରନ୍ତି ଓ ଶିକାର କରିବା ଛାଡ଼ିଦିଅନ୍ତି । ତାଙ୍କ ଉଦ୍ୟମରେ ତେନ୍ତୁଳିଗୁମ୍ମାରୁ ହଳଗୁଡ଼ା ପର୍ଯ୍ୟନ୍ତ ୬ମାଇଲ ମାଟିରାସ୍ତା ତିଆରି ହୁଏ । କୋଲାବ ଓ ସପ୍ତଧାରା ନଈରେ ବାଉଁଶ ପୋଲହୁଏ । ଆଦିବାସୀ ପିଲାଙ୍କ ପାଇଁ ବିଦ୍ୟାଳୟ ଓ ପ୍ରୌଢ଼ମାନଙ୍କ ଲାଗି ନୈଶ ବିଦ୍ୟାଳୟ ଖୋଲେ । କ୍ରମେ ଲକ୍ଷ୍ମଣ ସେ ଅଞ୍ଚଳରେ ଅତ୍ୟନ୍ତ ଲୋକପ୍ରିୟ ଓ ସୁପରିଚିତ ହୋଇଯାଆନ୍ତି ।

କଂଗ୍ରେସ ଶିବିରରୁ ଫେରିବା ପରେ ଲକ୍ଷ୍ମଣ ନାଏକ ବୁଲି ବୁଲି ଖଜଣା ନଦେବାକୁ ଲୋକଙ୍କୁ କହିଲେ । କାରଣ, ୧୯୪୨ ଭାରତଛାଡ଼ ଆନ୍ଦୋଳନ ବେଳେ କଂଗ୍ରେସ ନିମ୍ନଲିଖିତ ନିଷ୍ପତ୍ତି ନେଇଥିଲା ।

୧) ଇଂରେଜ ସରକାର ସହ ସମ୍ପୂର୍ଣ୍ଣ ଅସହଯୋଗ । ସରକାରୀ ଅଫିସ୍, କଚେରି ଓ କର୍ମଚାରୀଙ୍କୁ ବର୍ଜନ ।

୨) ଗ୍ରାମେ ଗ୍ରାମେ ସ୍ୱାଧୀନ ପଞ୍ଚାୟତ ଗଠନ, ଗ୍ରାମ ଶାସନ ପ୍ରଚଳନ, ସ୍ୱେଚ୍ଛାସେବକ ସଂଗ୍ରହ କରି ସେମାନଙ୍କୁ ନେଇ ସ୍ୱରାଜ ସୈନିକ ଗଠନ ।

୩) ଖଜଣା, ଟିକସ ବନ୍ଦ ହେବ । ସରକାରୀ ବ୍ୟବସ୍ଥା ସମ୍ପୂର୍ଣ୍ଣ ଅଚଳ କରି ସରକାରୀ ସଂସ୍ଥାସବୁକୁ ଦଖଲ କରି ନିଆଯିବ । ଭାରତୀୟ ସରକାରୀ କର୍ମଚାରୀଙ୍କୁ ଇସ୍ତଫା ଦେଇ ଆନ୍ଦୋଳନରେ ଭାଗନେବାକୁ ଅନୁରୋଧ କରାଯିବ ।

ସେମାନେ ଇସ୍ତଫା ନଦେଲେ ସେମାନଙ୍କୁ ସାମାଜିକ ବାସନ୍ଦ କରାଯିବ ।

୪) ଥାନା, ଡାକଘର, ଜଳକର ଅଫିସ୍ ଦଖଲ କରି ସ୍ୱରାଜ ସୈନିକଙ୍କ ଦ୍ୱାରା ପରିଚାଳନା କରିବାକୁ ହେବ । ପୁଲିସ ଓ ସୈନ୍ୟମାନଙ୍କୁ ଗ୍ରାମ ଭିତରକୁ ବା ଅଞ୍ଚଳ ଭିତରକୁ ପ୍ରବେଶରେ ବାଧା ଦିଆଯିବ । ସ୍ଥାନବିଶେଷରେ ସେମାନଙ୍କର ଅଗ୍ରଗତି ରୋକିବା ଲାଗି ରାସ୍ତାରେ ଗଛକାଟି ପକାଇବାକୁ, ନାଳବନ୍ଧ କାଟିଦେବାକୁ, ନଦୀର ଘାଟଡଙ୍ଗା ସେମାନଙ୍କୁ ବ୍ୟବହାର କରିବାକୁ ନଦେବା ଲାଗି ବ୍ୟବସ୍ଥା କରିବାକୁ ହେବ ।

୫) ଟେଲିଗ୍ରାମ୍, ଟେଲିଫୋନ୍ ଓ ରେଳ ଲାଇନକୁ ଅଚଳ କରି ଦିଆଯିବ । ଆମର ଜାତୀୟ ସମ୍ପତ୍ତିକୁ ଯେତେଦୂର ସମ୍ଭବ ନଷ୍ଟ କରାଯିବ ନାହିଁ । ଇଂରେଜ ସରକାରର ପ୍ରତୀକ ହେଉଛି ଥାନା । ସେହି ଥାନାଗୁଡ଼ିକୁ ଦଖଲ କରିନେଲେ ଲୋକଙ୍କ ମନରୁ ଭୟ ଦୂର ହେବ ।

୬) ସମାନ୍ତରାଳ ସରକାର ପ୍ରତିଷ୍ଠା କରାଯିବ । ଖାଦ୍ୟ ପାଣି ବ୍ୟବସ୍ଥା କରାଯିବ । ବିଭିନ୍ନ ଅଞ୍ଚଳକୁ ଖବର ଦେଣନେଣ ପାଇଁ ଗୁପ୍ତଚର ବାହିନୀ ଗଠନ କରାଯିବ । ୪/୫ଟି ଗ୍ରାମକୁ ନେଇ ଗୋଟିଏ ଗୋଟିଏ ଅଞ୍ଚଳ ଗଠନ କରାଯିବ । (ଅନିର୍ବାଣ– ପଦ୍ମ ଚରଣ ନାଏକ)

ଲକ୍ଷ୍ମଣ ନାଏକ କଂଗ୍ରେସର ଏସବୁ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାକୁ ଅଣ୍ଟା ଭିଡ଼ିଥିଲେ ।

ଜ୍ଞାନପୀଠ ବିଜେତା ଗୋପୀନାଥ ମହାନ୍ତି ତାଙ୍କର 'ଧୂଳିମାଟିର ଗଛ' ବହିରେ ଲକ୍ଷ୍ମଣ ନାଏକଙ୍କ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଲେଖିଛନ୍ତି, 'ଶ୍ରୀ ନାଏକ ନିଜ ଚେଷ୍ଟାରେ ଓଡ଼ିଆ ପଢ଼ିଥିଲେ । ସେ ଚାହିଥିଲେ ତାଙ୍କ ବାପାଙ୍କ ପରି ସୁଖରେ ଜୀବନ ବିତାଇପାରିଥା'ନ୍ତେ । ସେ ଶାନ୍ତ, ବିନୀତ, ଅମାୟିକ, ସରଳ, ନିରାଡ଼ମ୍ବର ମଣିଷଟିଏ, ଖୁବ୍ ଜନପ୍ରିୟ ଥିଲେ, ଲୋକଙ୍କ ଦୁଃଖ ସହିପାରନ୍ତି ନାହିଁ, ସାହାଯ୍ୟ କରନ୍ତି । ସେ କିଛି ଦେଶୀ ଚିକିତ୍ସା ବି ଶିଖିଥିଲେ ଓ ସୁବିଧା ପାଇଲେ ଜଡ଼ିବୁଟି ଔଷଧ ଦେଉଥିଲେ । ସ୍ୱଦେଶ ପ୍ରୀତି ଓ ସ୍ୱାଧୀନତା ଆନ୍ଦୋଳନରେ ସେ କାଳକ୍ରମେ ଉଦ୍‌ବୁଦ୍ଧ ହୋଇଉଠିଲେ । କୋରାପୁଟ ଜିଲ୍ଲାରେ ସେତେବେଳେ କଂଗ୍ରେସ ନେତାମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ, ଶ୍ରୀ ସଦାଶିବ ମିଶ୍ର, ଶ୍ରୀ ରାଧାମୋହନ ସାହୁ ଇତ୍ୟାଦି । ଶ୍ରୀ ଲକ୍ଷ୍ମଣ ନାଏକ ସେହିମାନଙ୍କଠାରୁ ପରାମର୍ଶ ନେଲେ । XXX ପ୍ରକାର ପ୍ରକାର କର୍ମଚାରୀଙ୍କ ଜୁଲୁମ ଓ 'ମାସୁଲ'ମାନ ବନ୍ଦ କରାଇବା, ହାଟମାନଙ୍କରେ ଅନ୍ୟାୟ ଟିକସ ଆଦାୟ ବନ୍ଦ କରାଇବା, ବେଠି ବନ୍ଦ କରାଇବା, ମଦ, ଗଞ୍ଜେଇ, ଅଫିମ ଦୋକାନ ବନ୍ଦ କରାଇବା, ଲୋକଙ୍କ ଭୟ ଛଡ଼ାଇବା, ଲୋକଙ୍କୁ ସଂଗଠିତ କରାଇବା, ଲୋକଙ୍କ ଭିତରେ ସ୍ୱାଧୀନତା ପାଇଁ ଆବେଗମୟ କାମନା ସୃଷ୍ଟି କରାଇବା, ସ୍ୱାଧୀନତାର ବାଣୀ ପ୍ରଚାର କରାଇବା, ଏସବୁ ଥିଲା ତାଙ୍କ କାର୍ଯ୍ୟାବଳୀର ଅନ୍ତର୍ଭୁକ୍ତ । ଏସବୁ ବାର୍ତ୍ତା ପ୍ରଚାର କରି ସେ ନାନା ସ୍ଥାନକୁ ଗଲେ । ଫଳରେ ଶୋଷକ, ଅତ୍ୟାଚାରୀ, ଜୁଲମବନ୍ତ 'ମାସୁଲ' ପିପାସୁ ସାହୁକାର ଓ ସରକାରୀ କର୍ମଚାରୀଙ୍କ ଦୃଷ୍ଟିରେ ପଡ଼ିଲେ । ସେମାନେ ରାଜାଙ୍କ ପାଖରେ ଯାଇ ଅଭିଯୋଗ କଲେ । ମୁସ୍ତାଦାର ଲକ୍ଷ୍ମଣ ନାଏକ ପରିଚିତ ହେଲେ ମେଳି ସର୍ଦ୍ଦାର ରୂପେ । ବିଖ୍ୟାତ ଲେଖକ ଗୋପୀନାଥ ମହାନ୍ତି ଲେଖିଛନ୍ତି, 'ବିଚାରରେ କାର୍ଯ୍ୟରେ, ଶାନ୍ତିପ୍ରିୟ, ସରଳ, ନିରୀହ ମଣିଷଟିଏ । ଚାଲି ଚାଲି ବଣ ପାହାଡ଼ ଭେଦି ବହୁତ ଦୂରକୁ ଯାଆନ୍ତି । ବହୁତ ପରିଶ୍ରମ କରନ୍ତି । ନାନା ଦୁଃଖକଷ୍ଟ ସହନ୍ତି । କିନ୍ତୁ ଲାଗି ରହିଥାଆନ୍ତି । ନାନା ସ୍ଥାନରେ ସଭା କରୁଥାଆନ୍ତି । ପ୍ରଶଂସା ପାଇବା, ନେତା ହେବା, ପ୍ରତାପ ଓ ପ୍ରତିପତ୍ତି ଅର୍ଜିବା ତାଙ୍କ କଳ୍ପନାରେ ନଥିଲା । ନିଜକୁ ମଣୁଥିଲେ ଦେଶ ପାଇଁ ଉତ୍ସର୍ଗୀକୃତ ସାଧାରଣ କର୍ମୀଟିଏ ।

ଏପରି ଜଣେ ଶାନ୍ତିପ୍ରିୟ ନେତା ଭାରତଛାଡ଼ ଆନ୍ଦୋଳନ ବେଳେ ଭୀଷଣ କ୍ଷୁବ୍ଧ ହୋଇଥିଲେ । ବସ୍ତୁତଃ ଭାରତର ଜନଗଣ ଆଉ ଅଧିକ କାଳ ବିଦେଶୀ ଶାସନ ବରଦାସ୍ତ କରିବା ଅବସ୍ଥାରେ ନଥିଲେ । ଗାନ୍ଧୀଙ୍କ ଅହିଂସ ଆହ୍ୱାନ ବହୁ ସ୍ଥାନରେ ହିଂସାତ୍ମକ ରୂପ ଧାରଣ କରିଥିଲା । କୋରାପୁଟରେ ମଧ୍ୟ ଏ ଡାକରା ପହଞ୍ଚିଥିଲା । ତେନ୍ତୁଳିଗୁମ୍ମାର ଲକ୍ଷ୍ମଣ ନାଏକ ହାତରେ ପତାକା ଓ ଲାଠି ଧରି ଆଇନ ଅମାନ୍ୟ ଆନ୍ଦୋଳନ ଆୟୋଜନ

କଲେ । ପଛରେ ଶହ ଶହ ଆଦିବାସୀ । ଯାହା ବାରମ୍ବାର ଆଲୋଚିତ ହୋଇଛି, ୧୯୪୨ ମସିହା ଅଗଷ୍ଟ ୧୫ ତାରିଖରେ ବଡ଼ ଧରଣର ଅଭିଯାନ ହେଲା ଯେଉଁଥିରେ ଶହ ଶହ ଆଦିବାସୀ ଜୟପୁର ଅଭିମୁଖେ ଚାଲିଲେ । ସେମାନେ ପ୍ରଥମେ ତାଲୁକ ଅଫିସ୍ ଘେରାଉ କଲେ । ପୁଲିସ ପାଲଟା ଜବାବ ଆରମ୍ଭ କଲା । ଲକ୍ଷ୍ମଣ ନାଏକ ଗିରଫଦାରିକୁ ଏଡ଼ାଇବା ଲାଗି ଘୁମୁରା ଆସି ତାଙ୍କ ବନ୍ଧୁ ନୀଳକଣ୍ଠ ପାତ୍ରଙ୍କ ଘରେ ରହିଲେ । ଆନ୍ଦୋଳନ କିନ୍ତୁ ଚାଲିଥିଲା । କୋରାପୁଟରେ ଅଫିସ୍ ଦୋକାନ ଆଗରେ ସତ୍ୟାଗ୍ରହ ହୋଇ ଅଫିମ ଜବତ କରାଗଲା । ମଦ ଦୋକାନ ଆଗରେ ବିକ୍ଷୋଭ କରି ଦୋକାନ ବନ୍ଦ କରାଗଲା । ମଦ ଓ ଅଫିମ ବ୍ୟବସାୟକୁ ବନ୍ଦ କରିବାକୁ ଏହି କଂଗ୍ରେସ କର୍ମୀମାନେ ଶପଥ ନେଇଥିଲେ ।

ଇଂରେଜ ସରକାର ଅତିଷ୍ଠ ହୋଇ କୋରାପୁଟରେ କଂଗ୍ରେସକୁ ବେଆଇନ ଘୋଷଣା କଲା । ସେତେବେଳେ ଲକ୍ଷ୍ମଣ ନାଏକ ଅଗଷ୍ଟ ୨୧ରେ ସତ୍ୟାଗ୍ରହ ପାଇଁ ସ୍ଥିର କରିଥିଲେ । ସୂର୍ଯ୍ୟ ଉଦୟ ହେବା ଆଗରୁ ଲକ୍ଷ୍ମଣ ନାଏକ ତେନ୍ତୁଳିଗୁମ୍ମା ସମେତ ଆଖପାଖ ଗାଁର ହଜାର ହଜାର ଲୋକଙ୍କୁ ନେଇ ମାତିଲି ଅଭିମୁଖେ ଅଭିଯାନ ଆରମ୍ଭ କଲେ । ହାତରେ କଂଗ୍ରେସ ପତାକା, ମୁହଁରେ ସ୍ଲୋଗାନ, ମନରେ ଅଦ୍ଭୁତ ଉଦ୍ଦୀପନା । ସେମାନଙ୍କର ଏ ଅଭିଯାନ ଦେଖି ମଦ ଦୋକାନୀମାନେ ଡରରେ ନିଜ ନିଜ ଦୋକାନ ବନ୍ଦ କରିଦେଲେ । ମାତିଲିରେ ବଡ଼ ସଭାଟିଏ ହେଲା, ଉଦ୍‌ବୋଧନ ଦେଲେ ଲକ୍ଷ୍ମଣ ନାଏକ । 'ବନ୍ଦେ ମାତରଂ' ସ୍ଲୋଗାନରେ ସଭାସ୍ଥଳ ଉଚ୍ଛୁଳି ପଡ଼ିଲା । ଲକ୍ଷ୍ମଣ ନାଏକ ତାଙ୍କ ଦେଶୀୟ ଭାଷାରେ କହିଥିଲେ, 'ଭାଇମନ୍, ଗାନ୍ଧୀ ମହାପ୍ରଭୁ କହିଛନ୍ତି ସାହବମାନେ ଏଠାରୁ ଚାଲିଯିବେ । ଏ ହେବ ଆମର ଗାଁ । ବଣ ଜଙ୍ଗଲ ସବୁ ଆମର । ବେଠି ବେଗାରି ଆଉ ରହିବ ନାହିଁ । ହାଟ ପାନୁ ନାଇଁ । କାଠ କଟା ପାନୁ ନାଇଁ । ଗଛ ମାଛ ଆମର ହେବ । ପୁଲିସି ଥାନା, ରିବିନି ଅଫିସ ସବୁ ଆମର ।'

ବିକ୍ଷୁବ୍ଧ ଜନତା ଥାନା ଉପରେ ଚଢ଼ାଉ କଲେ । ପୂର୍ବରୁ ପ୍ରସ୍ତୁତ ହୋଇଯାଇଥିବା ପୁଲିସ ଆରମ୍ଭ କରିଦେଲା ନିର୍ମମ ଲାଠି ଚାଳନା । ଲକ୍ଷ୍ମଣଙ୍କୁ ପିଟି ପିଟି ଅଚେତ କରିଦିଆଗଲା । ତାଙ୍କ ନିଶରେ ନିଆଁ ଲଗାଇ ଭୀଷଣ ନିର୍ଯ୍ୟାତନା ଦିଆଗଲା । ଯନ୍ତ୍ରଣାରେ ଛଟପଟ ହେଉଥାଆନ୍ତି ଲକ୍ଷ୍ମଣ ନାଏକ । ତାଙ୍କ ଅବସ୍ଥା ଦେଖି ଅନ୍ୟଜଣେ ସତ୍ୟାଗ୍ରହୀ ବଳରାମ ପୂଜାରୀ ଥାନା ଭିତରକୁ ଧସେଇ ପଶିଲେ । ସଂଘର୍ଷ ଚାଲିଲା । ସଂଜ୍ଞାହୀନ ଲକ୍ଷ୍ମଣ ମରିଗଲେଣି ଭାବି ତାଙ୍କୁ କନେଷ୍ଟବଳମାନେ ଘୋଷାରି ଘୋଷାରି ପାଖ ନଳାରେ ଫୋପାଡିଦେଲେ । ଏହି ସଂଘର୍ଷ ସମୟରେ ଅଫିମଖୋର ଫରେଷ୍ଟଗାର୍ଡ ଜି. ରାମାୟା ପଶି ଆସିଥିଲା । ସତ୍ୟାଗ୍ରହୀମାନଙ୍କୁ ମାରଧର କରିବାବେଳେ ପୁଲିସର ଗୋଟେ ଗୁଳି ତା' ଉପରେ ବାଜିଥିଲା ଓ ସେଥିରେ ସେ ମରିଯାଇଥିଲା । ମାତ୍ର ପୁଲିସ ଅଭିଯୋଗ ଆଣିଲା ଯେ ଠେଙ୍ଗାମାଡ଼ରେ ରାମାୟାଙ୍କର ମୃତ୍ୟୁ ହୋଇଥିଲା, ଯାହା ପ୍ରଥମରୁ କୁହାଯାଇଛି । ଡାକ୍ତରଙ୍କଠାରୁ ମିଥ୍ୟା ରିପୋର୍ଟ ସଂଗ୍ରହ କରାଗଲା । ସେହି ଗଣ୍ଡଗୋଳ ସମୟରେ କିଛି କଂଗ୍ରେସକର୍ମୀ ଗୁଳିମାଡ଼ରେ ଟଳିପଡ଼ିଥିଲେ । ବଡ଼ କଷ୍ଟରେ ଜୀବନ ବଞ୍ଚେଇ ଲକ୍ଷ୍ମଣ ନାଏକ ସେଠାରୁ ଯାଇ କିଛି କାଳ ଆତ୍ମଗୋପନ କରିଥିଲେ । ସେପ୍ଟେମ୍ବର ୨୦ ତାରିଖରେ ପୁଲିସ ତାଙ୍କ ଗାଁ ଘେରାଉ କରି ଲକ୍ଷ୍ମଣ ଏବଂ ତାଙ୍କ ପୁଅକୁ ଗିରଫ କଲା । ତାଙ୍କର ସମ୍ପର୍କୀୟ ବନସିଂ ପୂଜାରୀ ମଧ୍ୟ ଗିରଫ ହେଲେ । କିଛିଦିନ ମାତିଲି ଥାନା ହାଜତରେ ତାଙ୍କୁ ରଖାଯାଇ ପରେ ଜୟପୁର ଜେଲ ଏବଂ ଶେଷରେ ବ୍ରହ୍ମପୁର ଜେଲକୁ ପଠାଇ ଦିଆଯାଇଥିଲା ।

ଲକ୍ଷ୍ମଣ ନାଏକ ଏବଂ ଅନ୍ୟ ୫୩ଜଣଙ୍କ ବିରୋଧରେ ଥାନାପୋଡି, ଲୁଟତରାଜ ଏବଂ ନରହତ୍ୟା ଅଭିଯୋଗରେ କେସ୍ ରୁଜୁ ହୋଇଥିଲା । ଲକ୍ଷ୍ମଣ ନାଏକ ଶେଷ ପର୍ଯ୍ୟନ୍ତ କହିଥିଲେ ଯେ ସେ ରାମାୟାକୁ ହତ୍ୟା କରିନାହାନ୍ତି । ମାତ୍ର ବିଚାରପତି ତାଙ୍କ ବୟାନକୁ ଗ୍ରହଣ କରି ନଥିଲେ । ଶେଷରେ ତାଙ୍କୁ ମୃତ୍ୟୁଦଣ୍ଡ ଏବଂ ଅନ୍ୟ ୪୯ ଜଣଙ୍କୁ ଯାବଜ୍ଜୀବନ କାରାଗାର ଶାସ୍ତି ଦିଆଯାଇଥିଲା । ଲକ୍ଷ୍ମଣଙ୍କୁ ଫାଶୀ ଦେବା ଇଂରେଜ ସରକାରଙ୍କ ସୁପରିକଳ୍ପିତ ଯୋଜନା ଥିଲା । ଏ ବିଚାର କେବଳ ଥିଲା ଲୋକଙ୍କୁ ଦେଖାଇବା ପାଇଁ । ଲକ୍ଷ୍ମଣ ନାଏକ ରକ୍ତମାଂସର ମଣିଷ ଥିଲେ । ଦିନେ ନା ଦିନେ ନଶ୍ୱର ଦେହ ତ୍ୟାଗ

କରିଥାଆନ୍ତେ, ମାତ୍ର ଦେଶ ପାଇଁ ଶହୀଦ ହେବା ଥିଲା ତାଙ୍କର ନିୟତି ।

ମୃତ୍ୟୁ ପୂର୍ବରୁ ଦେଶବାସୀ ବିଶେଷକରି ସେଇ ଆଦିବାସୀ ଭାଇମାନଙ୍କ ଉଦ୍ଦେଶ୍ୟରେ ଲକ୍ଷ୍ମଣ ନାଏକ ଯାହା କହିଯାଇଥିଲେ ତାହାହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସେ କହିଥିଲେ, 'ଦେଶ ନିଶ୍ଚୟ ସ୍ୱାଧୀନ ହେବ । କଂଗ୍ରେସ ପକ୍ଷରୁ ଯେଉଁମାନେ ଶାସକ ଦାୟିତ୍ୱରେ ରହିବେ ସେମାନଙ୍କୁ ଅନୁରୋଧ ଯେ ସେମାନେ ଏପରି କାମ କରିବେ ଯେପରି ମୋର ଅର୍ଦ୍ଧନଗ୍ନ ଓ ଅର୍ଦ୍ଧଭୁକ୍ତ ଭାଇଭଉଣୀମାନଙ୍କୁ ପିନ୍ଧିବାକୁ ଖଣ୍ଡେ ଲୁଗା ମିଳିବ ଓ ପେଟ ପୂରାଇ ଗଣ୍ଡେ ଖାଇବାକୁ ମିଳିବ ।'

ଲକ୍ଷ୍ମଣ ନାଏକଙ୍କର ଏହି ବାକ୍ୟରେ ଭୀମ ଭୋଇଙ୍କର ଉଦାତ୍ତ କବିତାର ପ୍ରତିଧ୍ୱନି ଶୁଣିବାକୁ ମିଳେ । ତାଙ୍କ ଭିତରେ ଏହି ଅଙ୍ଗୀକାର ଏବଂ ଅବିମିଶ୍ର ଜାତିପ୍ରେମ ତାଙ୍କୁ ଅନ୍ଧାରୀ ଉପତ୍ୟକାର ସୂର୍ଯ୍ୟ ଏବଂ ମାଲକାନଗିରିର ଗାନ୍ଧୀରେ ପରିଚିତ କରିଥିଲା । ୧୯୪୩,୨୯ ମାର୍ଚ୍ଚର ସୂର୍ଯ୍ୟୋଦୟ ଦେଖିପାରି ନଥିବା ଲକ୍ଷ୍ମଣ ନାଏକ ନିଜ ଛାତିର ରକ୍ତ ଦେଇ ଓଡ଼ିଶାର ମାନଚିତ୍ରରେ ଆଙ୍କି ଦେଇଥିଲେ ସ୍ୱାଧୀନତାର ପୂର୍ବରାଗ । ତାଙ୍କରି କଥା ସତ୍ୟ ହୋଇଥିଲା । ମହାପରାକ୍ରମଶାଳୀ ବ୍ରିଟିଶ ସରକାର ହାରିଯାଇ ଭାରତୀୟଙ୍କ ହାତରେ ଭାରତକୁ ଛାଡ଼ି ଚାଲିଯିବାକୁ ବାଧ ହୋଇଥିଲେ ।

ଲକ୍ଷ୍ମଣ ନାଏକ ଅନ୍ଧରାତିର ସୂର୍ଯ୍ୟ । ସଂକଳ୍ପ ଓ ଦେଶପ୍ରେମର ଉଦାତ୍ତ ଉଚ୍ଚାରଣ । ଶେଷ ପର୍ଯ୍ୟନ୍ତ ଲକ୍ଷ୍ମଣ ନାଏକ ଥିଲେ ନିର୍ଭୀକ, ଈଶ୍ୱର ବିଶ୍ୱାସୀ, ଭାରତର ସ୍ୱାଧୀନତା ପ୍ରେମୀ । ମହାତ୍ମା ଗାନ୍ଧୀଙ୍କ ପ୍ରତି ତାଙ୍କର ଥିଲା ଗଭୀର ଅନୁରକ୍ତି । ଜେଲ୍ କୋଠରିରେ ସେ ଶ୍ରୀ ଜଗନ୍ନାଥ ଦାସଙ୍କ ଭାଗବତ ହିଁ ପଢୁଥିଲେ । ଆବୃତ୍ତି କରୁଥିଲେ । ତାଙ୍କୁ ଫାଶୀ ଦିଆଯିବ ଶୁଣି ବ୍ରହ୍ମପୁର ଜେଲ୍‌ରେ ସବୁ ରାଜବନ୍ଦୀ ମର୍ମାହତ, ଶୋକାଚ୍ଛନ୍ନ ଓ ଉତ୍ତେଜିତ ହେଲେ । ସେମାନେ ସମସ୍ତେ ରାତିସାରା ଚେଇଁ ପ୍ରାର୍ଥନା କରିଥିଲେ । ରାତି ଶେଷ ହେଲାବେଳକୁ, ଫାଶୀ ଦେବା ବେଳ ପାଖେଇ ଆସିବାବେଳକୁ ସେମାନେ ଉତ୍ତେଜିତ ହୋଇ ସମସ୍ୱରରେ ବାରମ୍ବାର ଧ୍ୱନି ଦେଉଥିଲେ ।

ସେତେବେଳେ ସେହି କାରାଗାରରେ ଥିବା ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ସେନାପତି ଗୋପବନ୍ଧୁ ଚୌଧୁରୀ ଧୀର ଓ କରୁଣ ସ୍ୱରରେ କହିଥିଲେ, 'ଆଉ କାହିଁକି ? ତାକୁ ଶୁଣାଯିବ ନାହିଁ ।'

ଓଡ଼ିଶା ସରକାର ତାଙ୍କ ନାମରେ କୋରାପୁଟର ମେଡ଼ିକାଲ୍ କଲେଜକୁ ନାମିତ କରି ଯଥାର୍ଥ ପଦକ୍ଷେପ ନେଇଛନ୍ତି । ଶହୀଦ ଲକ୍ଷ୍ମଣ ନାଏକଙ୍କର ସ୍ମୃତି ତର୍ପଣ କେବଳ ବାର୍ଷିକ ସଭା ଆୟୋଜନ ଓ ବକ୍ତୃତା ଭିତରେ ସୀମିତ ନରହୁ । ସେ ଯେଉଁ ଆଦର୍ଶ ନେଇ କାମ କରୁଥିଲେ ଏବଂ ଯେଉଁ ସ୍ୱପ୍ନ ଦେଖିଥିଲେ ତା'ର ପୂରଣ ଦିଗରେ ଆମମାନଙ୍କର ଉଦ୍ୟମ ଜାରି ରହୁ । ତାହା ପ୍ରକୃତରେ ତାଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ହେବ ।

ଭୁବନେଶ୍ୱର



# ସମୟର ମୟୂଖରେ ଓଡ଼ିଶା ଓ ଝାଡ଼ଖଣ୍ଡ

ଜୟନ୍ତୀ ରଥ

ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ, ଖ୍ରୀଷ୍ଟପୂର୍ବ ୫୦୦ ଶତାବ୍ଦୀରେ ଷୋଡ଼ଶ ମହାଜନପଦ ସମଗ୍ର ଭାରତରେ କ୍ଷମତା ବିସ୍ତାର କରିଥିଲେ। ତନ୍ମଧ୍ୟରୁ ମଗଧ ମହାଜନପଦର ଅଧୀନରେ ଥିଲା ଝାଡ଼ଖଣ୍ଡର ଦକ୍ଷିଣ ଭାଗ। କଳିଙ୍ଗ ମହାଜନପଦର ଅଧୀନରେ ଥିଲା ଝାଡ଼ଖଣ୍ଡର ଉତ୍ତର ଭାଗ। କିମ୍ବଦନ୍ତୀ କହେ ଯେ, ତ୍ରୟୋଦଶ ଶତାବ୍ଦୀରେ ଓଡ଼ିଶାର ରାଜା ଜୟସିଂହ ଦେଓ ଝାଡ଼ଖଣ୍ଡରେ ରାଜତ୍ୱ ପ୍ରତିଷ୍ଠା କରିଥିଲେ। ଅଧୁନା ଝାଡ଼ଖଣ୍ଡ ଅନ୍ତର୍ଗତ ଷଢ଼େଇକଳାର ସପ୍ତଦଶ ଶତାବ୍ଦୀରେ ନିର୍ମିତ ଜରାଜୀର୍ଣ୍ଣ ରାଜପ୍ରାସାଦରେ ଏବେ ମଧ୍ୟ ଶୋଭା ପାଉଛି ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ ତାଙ୍କ ପିତାମାତାଙ୍କ ଫଟୋ। ସ୍ୱର୍ଗତ ସିଂହଦେଓ ଷଢ଼େଇକଳାରୁ ରାଜା ପୃଥ୍ୱୀରାଜ ସିଂହଦେଓ (ତତ୍କାଳୀନ ପାଟ୍ନାଗଡ଼ ଅଧୁନା ବଲାଙ୍ଗୀରର)ଙ୍କ ପୋଷ୍ୟପୁତ୍ର ଭାବେ ଆସିଥିଲେ ଏବଂ ପୃଥ୍ୱୀରାଜଙ୍କ ମୃତ୍ୟୁ ପରେ ପାଟ୍ନା ରାଜ ସିଂହାସନରେ ଅଭିଷିକ୍ତ ହୋଇଥିଲେ। ପରବର୍ତ୍ତୀ କାଳରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ମଣ୍ଡନ କରିଥିଲେ।

୧୭୬୫ ମସିହାରେ ଝାଡ଼ଖଣ୍ଡ ବ୍ରିଟିଶ ଶାସନ କବଳକୁ ଆସିଥିଲା। ଘନ ଅରଣ୍ୟବେଷ୍ଟିତ ଜନଜାତି ଅଧ୍ୟୁଷିତ ଏହି ଭୂଖଣ୍ଡରେ ବିପ୍ଳବର ସ୍ୱର ଉତ୍ତୋଳିତ ହୋଇଥିଲା ପ୍ରଥମ ସ୍ୱାଧୀନତା ସଂଗ୍ରାମର ଶହେ ବର୍ଷ ପୂର୍ବରୁ। ୧୯୩୬ ଅପ୍ରେଲ ପହିଲାରେ ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଗଲା। ପରେ ପରେ ୧୯୪୮ ମସିହା ଜାନୁଆରୀ ପହିଲାରେ ୨୫ଟି ଗଡ଼ଜାତ ରାଜ୍ୟ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ନିର୍ଦ୍ଦେଶମତେ ଓଡ଼ିଶା ସହ ମିଶ୍ରଣ କରାଗଲା ବୋଲି ଘୋଷଣା କରାଗଲା। ସେହି ପଚିଶଟି ଗଡ଼ଜାତ ମଧ୍ୟରେ ଷଢ଼େଇକଳା ଓ ଖରସୁଆଁ ଥିଲେ ଅନ୍ୟତମ। ଷଢ଼େଇକଳା ଓ ଖରସୁଆଁ ଅଧିବାସୀଙ୍କର କଥିତ ଭାଷା ଥିଲା, ଓଡ଼ିଆ ଏବଂ ସେମାନଙ୍କ ସାମାଜିକ ଚଳଣି, ଲୋକାଚାର ଓଡ଼ିଆ ସଂସ୍କୃତି ସହ ଓତଃପ୍ରୋତ ଭାବେ ଜଡ଼ିତ ଥିଲା। ତେବେ ପରେ ପରେ ପ୍ରଶାସନିକ ସୁବ୍ୟବସ୍ଥା ନିମନ୍ତେ ଏହି ଦୁଇ ଗଡ଼ଜାତ ରାଜ୍ୟକୁ ବିହାର ସହ ମିଶ୍ରଣ କରାଗଲା। ଏହାର ପ୍ରତିବାଦରେ ଓଡ଼ିଶାରେ ଜନ ଆନ୍ଦୋଳନ ତେଜି ଉଠିଥିଲା। ଏହି ଆନ୍ଦୋଳନରେ ଓଡ଼ିଶାର ସୁନୀଲ ଦେ ଓ ବେଙ୍ଗପାଣିଆ ଶହୀଦ ହୋଇଥିଲେ।

୧୮ ମେ, ନଭେମ୍ବର ୨୦୦୦ରେ ବିହାରଠାରୁ ବିଚ୍ଛିନ୍ନ ହୋଇ ଝାଡ଼ଖଣ୍ଡ ଏକ ନୂତନ ରାଜ୍ୟର ପରିଚିତି ଲାଭ କଲା। ଷଢ଼େଇକଳା ଓ ଖରସୁଆଁ ନବଗଠିତ ଝାଡ଼ଖଣ୍ଡ ରାଜ୍ୟର ଅନ୍ତର୍ଭୁକ୍ତ ହେଲେ। ତେବେ ରାଜନୀତିର ଏଇ ଛାଇ ଆଲୋକର ଖେଳ ଓଡ଼ିଶା ଓ ଝାଡ଼ଖଣ୍ଡ ମଧ୍ୟରେ ସାଂସ୍କୃତିକ ସଂଯୋଗର ଧାରାକୁ ପ୍ରତିହତ କରିନାହିଁ।

ରାଞ୍ଚିରେ ଷଢ଼େଇକଳାରେ ଓଡ଼ିଶାର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କର ସୁଦୃଶ୍ୟ ମନ୍ଦିର ରହିଛି ଏବଂ ସମସ୍ତ ରୀତି ନୀତି ସହ ନିତ୍ୟ ଉପାସନା ହେଉଛି ତିନି ବିଗ୍ରହଙ୍କର। ଖେଚୁଡ଼ି ଓ ପିଠା ଓଡ଼ିଶାର ଅଧିବାସୀଙ୍କ ପ୍ରିୟ ପରି ଝାଡ଼ଖଣ୍ଡବାସୀଙ୍କର ମଧ୍ୟ ପ୍ରିୟ ଖାଦ୍ୟ। ଓଡ଼ିଶା ଓ ଝାଡ଼ଖଣ୍ଡର ଜନଜାତି ବିଶେଷତଃ ସାନ୍ତାଳୀମାନଙ୍କର ଜୀବନଚର୍ଯ୍ୟାରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ। ସାନ୍ତାଳୀ ଲିପି ଅଲିଚିକ୍‌ର ସ୍ରଷ୍ଟା ପଣ୍ଡିତ ରଘୁନାଥ ମୁର୍ମୁ ଉଭୟ ଓଡ଼ିଶା ଓ ଝାଡ଼ଖଣ୍ଡବାସୀଙ୍କର ନମସ୍ୟ। ଝାଡ଼ଖଣ୍ଡରେ ଜନ୍ମିତ ବୀର ଶହୀଦ ଭଗବାନ ବିର୍ସା ମୁଣ୍ଡାଙ୍କର ପ୍ରଥମ ପ୍ରତିମୂର୍ତ୍ତିର ନିର୍ମାତା ହେଉଛନ୍ତି ଓଡ଼ିଶାର ବରେଣ୍ୟ ସ୍ଥପତି

ସ୍ୱର୍ଗତ ବିପ୍ର ଚରଣ ମହାନ୍ତି। ଓଡ଼ିଶାର ପୁରପଲ୍ଲୀରେ ବିର୍ସାମୁଣ୍ଡାଙ୍କ ଅପୂର୍ବ ସାହସ, ବୀରତ୍ୱ ଏବେ ଚର୍ଚ୍ଚିତ ବିଷୟ। ସେ ଓଡ଼ିଶା ଇତିହାସର ଏକ ଦେଦୀପ୍ୟମାନ ବ୍ୟକ୍ତିତ୍ୱ।

ମୟୂରଭଞ୍ଜ, ଷଢ଼େଇକଳା ଓ ପୁରୁଲିଆର ଛଉ ନୃତ୍ୟ ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛି। ଏହି ତିନୋଟି ସ୍ଥାନ ବର୍ତ୍ତମାନ ଭାରତରେ ତିନୋଟି ସ୍ୱତନ୍ତ୍ର ପ୍ରଦେଶରେ ଅନ୍ତର୍ଭୁକ୍ତ ହୋଇଥିଲେ ହେଁ, ଭାରତର ପ୍ରାକୃତିକ ଭୂଗୋଳରେ ଏ ସ୍ଥାନ ନିର୍ଦ୍ଦିଷ୍ଟ ଏକ ସାଂସ୍କୃତିକ ପରିମଣ୍ଡଳର ଅନ୍ତର୍ଗତ। ସାମାଜିକ ସଙ୍ଗଠନ, ଜୀବନଧାରା, ଭୌତିକ ସଂସ୍କୃତି ଓ ପ୍ରାଚୀନ ସାମରିକ ପରମ୍ପରା ସହ ପ୍ରଚଳିତ ବିଭିନ୍ନ ଖେଳ ଓ ନାଚର ପ୍ରଭାବରେ ଏପରି ଏକ ନାଚର ସୃଷ୍ଟି। ଏ ସମସ୍ତ ଅଞ୍ଚଳର ପ୍ରାକୃତିକ, ଭୌଗୋଳିକ ପରିସ୍ଥିତି ଓ ଆରଣ୍ୟକ ସଂସ୍କୃତି ଛଉ ନାଚ ସୃଷ୍ଟିର ଏକ କାରଣ। ମୟୂରଭଞ୍ଜ ଛଉରେ ପ୍ରଚଳିତ ବ୍ୟାକରଣ ଷଢ଼େଇକଳା ଛଉରେ ମଧ୍ୟ ପ୍ରଚଳିତ ଥିଲା। ପରବର୍ତ୍ତୀ ସମୟରେ ନୂତନ ସଂଯୋଜନ ଓ ସଂସ୍କରଣ ଫଳରେ ଏଥିରେ ପରିବର୍ତ୍ତନ ଘଟିଛି। ଷଢ଼େଇକଳା ଛଉ ଶୈଳୀ ଫରୀଖଣ୍ଡା ଖେଳ ଆଧାରିତ। ଏହି ନୃତ୍ୟରେ ଶିଳ୍ପୀମାନେ ମୁଖା ପରିଧାନ କରିଥାଆନ୍ତି। ମୟୂରଭଞ୍ଜ ଛଉ ନୃତ୍ୟରେ ମୁଖା ପରିଧାନର ନିୟମ ନାହିଁ । ଓଡ଼ିଶାର ଅଧିବାସୀଙ୍କ ସହିତ ଝାଡ଼ଖଣ୍ଡର ଅଧିବାସୀଙ୍କ ସାମାଜିକ ସମ୍ପର୍କ ଅତି ଗଭୀର। ବୈବାହିକ ସୂତ୍ରରେ କ୍ରମବର୍ଦ୍ଧମାନ ଏହି ସମ୍ପର୍କ ଯୋଗୁଁ ଷଢ଼େଇକଳା, ଖରସୂଆଁ ତଥା ସମୁଦାୟ ଝାଡ଼ଖଣ୍ଡରେ ଓଡ଼ିଶାର ଚଳଣି, ରୀତି, ନୀତିର ପ୍ରଭାବ ପରିସ୍ଫୁଟ। ଝାଡ଼ଖଣ୍ଡର ବହୁ କବି, ସାହିତ୍ୟିକ ସେମାନଙ୍କ ଲେଖନୀରେ ଓଡ଼ିଆ ବାଣୀଭଣ୍ଡାରକୁ ସମୃଦ୍ଧ କରିଛନ୍ତି। ୧୭ଶହ ଶତାବ୍ଦୀରେ ଷଢ଼େଇକଳାରେ ଜନ୍ମିତ ନୃସିଂହ କବି ଆଷାଢ଼ ମାହାତ୍ମ୍ୟ ଓ ବୈଶାଖ ମାହାତ୍ମ୍ୟ ରଚନା କରିଥିଲେ। ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' କାବ୍ୟର ସବୁ ପଂକ୍ତି 'ବ'ରୁ ଆରମ୍ଭ ହେଲା ପରି ଷଢ଼େଇକଳାର କାଶୀନାଥ କବି ମୋଗଲତିକା କାବ୍ୟ ରଚନା କରିଥିଲେ, ଯାହାର ପ୍ରତ୍ୟେକ ପଂକ୍ତି ଆରମ୍ଭ ହୋଇଥିଲା 'ମ' ଅକ୍ଷରରୁ। ମହେଶ୍ୱର କବିଙ୍କ ରଚିତ ବହୁ ଚଉତିଶା ଓ କୀର୍ତ୍ତିସାର କାବ୍ୟ ଓଡ଼ିଶାର କାବ୍ୟ ଜଗତରେ ଆଦୃତି ଲାଭ କରିଥିଲା। ଊନବିଂଶ ଶତାବ୍ଦୀର ଶେଷ ପାଦରେ ପ୍ରକାଶ ପାଇଥିଲା ନିତ୍ୟାନନ୍ଦ କବିଙ୍କ ରଚିତ ଦମୟନ୍ତୀ ନାଟକ ଓ ଭୃଙ୍ଗଦୂତ ଚଉତିଶା। ଭାଷାଭିତ୍ତିରେ ଉତ୍କଳ ପ୍ରଦେଶ ଗଠନ କରିବା ଆଭିମୁଖ୍ୟ ନେଇ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, ପ୍ରଚାରକ ଅନନ୍ତ ମିଶ୍ର, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ ବହୁବାର ଚକ୍ରଧରପୁର, ଷଢ଼େଇକଳା, ଖରସୂଆଁ ଅଞ୍ଚଳକୁ ଯାଇଥିଲେ। ସେଠାରେ ଓଡ଼ିଆ ବିଦ୍ୟାଳୟ ସ୍ଥାପନ କରିବାରେ ଏବଂ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରଚାର ପ୍ରସାର ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ଗୋଦାବରୀଶଙ୍କ ଆତ୍ମଜୀବନୀ 'ଅର୍ଦ୍ଧଶତାବ୍ଦୀରେ ଓଡ଼ିଶା ଓ ତହିଁରେ ମୋ ସ୍ଥାନ'ରେ ତାଙ୍କର ଚକ୍ରଧରପୁର ରହଣି କାଳର ରସୋତ୍ତୀର୍ଣ୍ଣ ବର୍ଣ୍ଣନା ରହିଛି। କବିଚନ୍ଦ୍ର କାଳୀପ୍ରସନ୍ନ କବିଙ୍କ ବହୁସ୍ରାବୀ ଲେଖନୀରୁ ସୃଷ୍ଟି ହୋଇଥିଲା ବହୁ ଗଳ୍ପ, ଉପନ୍ୟାସ, ଗୀତି କବିତା, ଭ୍ରମଣ କାହାଣୀ ଏବଂ ନାଟକ। ବିଚ୍ଛିନ୍ନାଞ୍ଚଳର ସଂସ୍କୃତି ଓ ସାହିତ୍ୟର ସୁରକ୍ଷା ପାଇଁ ସେ ସତତ ଚେଷ୍ଟିତ ଥିଲେ। ପ୍ରତିକୂଳ ପରିସ୍ଥିତିରେ ଲେଖନୀ ଚାଳନା କରି ସେ ଓଡ଼ିଆ ସାହିତ୍ୟକୁ ବଞ୍ଚେଇ ରଖିବାକୁ ଚେଷ୍ଟା କରିଥିଲେ। 'ସହକାର' ପତ୍ରିକାରେ ତାଙ୍କର ବହୁ ଲେଖା ପ୍ରକାଶିତ ହୋଇଥିଲା। ୧୯୬୫ ମସିହାରେ କଟକରେ ସେ ଇହଧାମ ତ୍ୟାଗ କରିଥିଲେ। ଓଡ଼ିଶା ସହ ମିଶ୍ରଣ ଦାବି ନେଇ ଷଢ଼େଇକଳାର ମିହିର କବି ସ୍ୱର ଉତ୍ତୋଳନ କରି ପ୍ରବଳ ଜନ ସମର୍ଥନ ହାସଲ କରିଥିଲେ। ସମ୍ପ୍ରତି ଓଡ଼ିଆ ସାହିତ୍ୟରେ ପ୍ରାବନ୍ଧିକ ଏବଂ ସମାଲୋଚକ ଭାବେ ଖ୍ୟାତି ଅର୍ଜନ କରିଥିବା ସ୍ୱର୍ଗତ ଅସିତ କବି, ଅତନୁ କବି ଏବଂ ଗାଳ୍ପିକ ଭାବେ ସୁନାମ ଅର୍ଜନ କରିଥିବା ତରୁଣ କୁମାର ସାହୁ, ବିନି ଷଡ଼ଙ୍ଗୀଙ୍କ ଜନ୍ମସ୍ଥାନ ଝାଡ଼ଖଣ୍ଡ ରାଜ୍ୟରେ।

ବହୁ ବର୍ଷ ପୂର୍ବେ ଷଢ଼େଇକଳାର ରାଜପୁତ୍ର ରାଜେନ୍ଦ୍ର ନାରାୟଣ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ ହୋଇଥିଲେ । ବର୍ତ୍ତମାନ ଓଡ଼ିଶା ମାଟିର କନ୍ୟା ଦ୍ରୌପଦୀ ମୁର୍ମୁ ଝାଡ଼ଖଣ୍ଡର ରାଜ୍ୟପାଳ। ସାମାଜିକ, ସାଂସ୍କୃତିକ, ରାଜନୈତିକ ଦୃଷ୍ଟିରୁ ଝାଡ଼ଖଣ୍ଡ ସହ ଓଡ଼ିଶାର ସମ୍ପର୍କ ବିଚ୍ଛିନ୍ନ ହୋଇପାରିବ ନାହିଁ।

---

ସଚିବ, ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# ବୈଜ୍ଞାନିକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

ନିର୍ମଳା କୁମାରୀ ମହାପାତ୍ର

ଆନ୍ତର୍ଜାତିକ ବିଖ୍ୟାତ କଳିଙ୍ଗ ପୁରସ୍କାର- ୨୦୧୦ ଲାଭ କରିବାରେ ପ୍ରଥମ ଓଡ଼ିଆ ବିଜ୍ଞାନୀ ଥିଲେ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର । ପରେ ଡକ୍ଟର ବସନ୍ତ କୁମାର ବେହୁରା ଓ ଡକ୍ଟର ତ୍ରିଲୋଚନ ପ୍ରଧାନ ଯଥାକ୍ରମେ ୨୦୧୨ ଓ ୨୦୧୪ ମସିହାରେ ଏଇ ପୁରସ୍କାର ଲାଭ କରିଛନ୍ତି । ବିଜ୍ଞାନକୁ ଲୋକପ୍ରିୟ କରାଇବା ଉଦ୍ଦେଶ୍ୟରେ ଶ୍ରୀ ବିଜୁ ପଟ୍ଟନାୟକ ୧୯୫୧ ମସିହାରେ କଳିଙ୍ଗ ପୁରସ୍କାର ନ୍ୟାସ (The Kalinga Prize Trust) ପ୍ରତିଷ୍ଠା କରିଥିଲେ । ପ୍ରତିବର୍ଷ ବିଶ୍ୱ ବିଜ୍ଞାନ ଦିବସ, ନଭେମ୍ବର ୧୦ ତାରିଖରେ ଜାତିସଂଘର ଶିକ୍ଷା–ବିଜ୍ଞାନ ଦିବସ ଓ ସଂସ୍କୃତି ସଂସ୍ଥା (Untied Nations Education-Science and Cultural Organization = UNESCO) ତରଫରୁ ଏଇ ପୁରସ୍କାର ପ୍ରଦାନ କରାଯାଇଥାଏ । ସନ ୧୯୫୨ ମସିହାରୁ ଏଇ କଳିଙ୍ଗ ପୁରସ୍କାରର ରାଶି ହେଲା ଚାଳିଶ ହଜାର ଆମେରିକୀୟ ଡଲାର । ଏଥିସହିତ ସଂପୃକ୍ତ ବିଜ୍ଞାନୀଙ୍କୁ ପ୍ରଦତ୍ତ ହୁଏ ସାର୍ଟିଫିକେର୍ଟ୍ ଓ ଆଲବର୍ଟ ଆଇନଷ୍ଟାଇନ୍ ସ୍ମାରକୀ ରୂପା ମେଡ଼ାଲ । ପ୍ରୋକ୍ତ ଗୌରବାବହ ସମ୍ମାନ–କଳିଙ୍ଗ ପୁରସ୍କାର–୨୦୧୦କୁ ଲାଭ କରିବାରେ ପ୍ରଥମ ଓଡ଼ିଆ ଥିଲେ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର (୧୯୨୨ – ୨୦୧୩)



ଆଲୋଚ୍ୟ ଶିଶୁ ଗୋକୁଳାନନ୍ଦ ମହାପାତ୍ର ମାତା ଫୁଲଦେଈ ଓ ପିତା ବିଜୟ–ଗୋବିନ୍ଦ ମହାପାତ୍ରଙ୍କ ପରିବାରରେ ୧୯୨୨, ମଇ ୨୪ ତାରିଖରେ ଭଦ୍ରକ ସହରରେ ଜନ୍ମଲାଭ କରିଥିଲେ । ତାଙ୍କର ପିତା ବିଜୟ ଗୋବିନ୍ଦ ଥିଲେ ବଡ଼ ବ୍ୟବସାୟୀ । ମାଆ ଫୁଲ ଦେଈ ଜଣେ ଗୃହିଣୀ । ବାଳକ ଗୋକୁଳାନନ୍ଦ ଭଦ୍ରକର ନାରାୟଣ ଚନ୍ଦ୍ର ମାଇନର ସ୍କୁଲ, ଭଦ୍ରକ ହାଇସ୍କୁଲରେ ଅଧ୍ୟୟନ କରିଥିଲେ । ସନ ୧୯୪୧ରେ ସେ ପ୍ରଥମ ଶ୍ରେଣୀରେ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ପାଶ୍ କଲେ । କଟକର ରେଭେନ୍ସା କଲେଜରୁ ଆଇ.ଏସ୍‌ସି ଓ ବି.ଏସ୍‌ସି ପାଶ୍ କଲେ ଯଥାକ୍ରମେ ୧୯୪୩ ଓ ୧୯୪୫ରେ । କଲିକତାର ପ୍ରେସିଡ଼େନ୍‌ସି କଲେଜରେ ପଢ଼ି ରସାୟନ ବିଜ୍ଞାନରେ ଏମ୍.ଏସ୍‌ସି ପାଶ୍ କରି ୧୯୪୮ରେ ରେଭେନ୍ସା କଲେଜରେ ଅଧ୍ୟାପକ ହେଲେ ।

ଛାତ୍ରାବସ୍ଥାରୁ ଗୋକୁଳାନନ୍ଦ ଲେଖାଲେଖି କରୁଥିଲେ । ସେ ସ୍ନାତକୋତ୍ତର ଶ୍ରେଣୀରେ ପଢୁଥିବା କାଳରେ (୧୯୪୫–୪୭) କଲିକତା ଆକାଶବାଣୀରୁ ଓଡ଼ିଶା ପାଇଁ ରାତି ୯.୩୦ରୁ ୧୦ଟା ଯାଏଁ ହେଉଥିବା କାର୍ଯ୍ୟକ୍ରମରେ ବିଜ୍ଞାନ ପ୍ରସଙ୍ଗ ଉପସ୍ଥାପନ କରୁଥିଲେ । ସେତେବେଳକୁ ଓଡ଼ିଶାରେ

ଆକାଶବାଣୀ କେନ୍ଦ୍ର ସ୍ଥାପିତ ହୋଇ ନଥିଲା । ସାକ୍ଷାତକାରରେ ସ୍ୱୟଂ ଗୋକୁଳାନନ୍ଦ କହିଥିଲେ ଯେ ସେକାଳରେ ପ୍ରବନ୍ଧ ପିଛା ଆକାଶବାଣୀରୁ ସେ ପାଉଥିଲେ ଦଶଟଙ୍କା । 'ଶଙ୍ଖ' ପତ୍ରିକାର ପ୍ରତିଟି ଲେଖା ପାଇଁ ପାଉଥିଲେ ପାଞ୍ଚଟଙ୍କା । ସେକାଳ (୧୯୪୫-୪୦)ରେ ସେଇ ଲେଖକୀୟ ପ୍ରାପ୍ୟ ଥିଲା ବେଶ୍ ଉତ୍ସାହଜନକ ।

ଅଧ୍ୟାପକ ମହାପାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି ଓ ଆମେରିକାର ବ୍ରାଣ୍ଡାଇଟ୍ ବିଶ୍ୱବିଦ୍ୟାଳୟରୁ ପୋଷ୍ଟ ଡକ୍ଟରେଟ୍ ଉପାଧି ଲାଭ କରିଥିଲେ । DNA Structure Elucidation ଥିଲା ଅଧ୍ୟାପକ ଗୋକୁଳାନନ୍ଦଙ୍କର ପୋଷ୍ଟ ଡକ୍ଟରାଲ ଗବେଷଣାର ବିଷୟବସ୍ତୁ । ସେଥିରେ ସେ ତିନିଗୋଟି ଫାଇନାଲ ପ୍ରଡ଼କ୍ଟ ପାଇ DNA ଷ୍ଟ୍ରକ୍ଚରକୁ ସଂପୂର୍ଣ୍ଣ ରୂପେ ନିର୍ବିବାଦୀୟ ନିଷ୍ପତ୍ତି ବୋଲି ଜଣାଇଥିଲେ । ଏଇ ଅଢ଼େଇବର୍ଷର ଅଧ୍ୟୟନ କାଳରେ ସେ କାନାଡ଼ା, ଇଂଲଣ୍ଡ, ଫ୍ରାନ୍ସ, ସୁଇଜରଲାଣ୍ଡ, ଜର୍ମାନୀ, ଇଟାଲି ପ୍ରଭୃତି ଦେଶ ଭ୍ରମଣ କରିଥିଲେ । ଅଧ୍ୟୟନ କାଳରେ ସେ ପ୍ରିନ୍ସଟନ୍ ବିଶ୍ୱବିଦ୍ୟାଳୟ ତନ୍ନତନ୍ନ କରି ଦେଖିଲେ । ଏକଦା ସେଠାରେ ଆଲବର୍ଟ ଆଇନଷ୍ଟାଇନ୍ ସେଇ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିଲେ । ଅଦୂରରେ ଥିବା ଆଇନଷ୍ଟାଇନଙ୍କ ବାସଗୃହ ମଧ୍ୟ ସେ ଦେଖିଥିଲେ । ସେ ମଧ୍ୟ ଆମେରିକାସ୍ଥିତ କେମ୍ବ୍ରିଜ ସହରରେ ଥିବା ପ୍ରସିଦ୍ଧ ଶିକ୍ଷା ପ୍ରତିଷ୍ଠାନଗୁଡ଼ିକୁ ପରିଦର୍ଶନ କଲେ । ହାରଭାର୍ଡ଼ ବିଶ୍ୱବିଦ୍ୟାଳୟର ସେମିନାରରେ ଯୋଗଦେଲେ । ତାଙ୍କର ଲୋକପ୍ରିୟତା ଯୋଗୁଁ ତାଙ୍କର ଗୃହ ଥିଲା ସେଠାକାର ଭାରତୀୟମାନଙ୍କ ମିଳନସ୍ଥଳ ।

ଆମେରିକାରୁ ଫେରି ଡକ୍ଟର ଗୋକୁଳାନନ୍ଦ ପୁନଶ୍ଚ ରେଭେନ୍ସା କଲେଜରେ ଯୋଗଦେଲେ । ତା' ପରେ ହେଲେ ଓଡ଼ିଶାର ପାଠ୍ୟପୁସ୍ତକ ବ୍ୟୁରୋର ପ୍ରଥମ ନିର୍ଦ୍ଦେଶକ । ସମଗ୍ର ଜୀବନ ତାଙ୍କର ବିଜ୍ଞାନ ଗବେଷଣାରେ ବିନିଯୁକ୍ତ ହୋଇଥିଲା । ବିଜ୍ଞାନକୁ ଜନପ୍ରିୟ କରିବା ପାଇଁ ସେ ସରଳ ଓଡ଼ିଆ ଭାଷାରେ ଲେଖିଛନ୍ତି ଅନେକ । ପାଖାପାଖି ୧୦୨ ଖଣ୍ଡ ବହି । ତନ୍ମଧ୍ୟରୁ କେତେଗୋଟିର ନାମ ନିମ୍ନରେ ପ୍ରଦତ୍ତ । ଯଥା:- ବିଜ୍ଞାନର ଶ୍ରେଷ୍ଠ ଆବିଷ୍କାର, ଦୂରବୀକ୍ଷଣ ଯନ୍ତ୍ର, ଗୋକୁଳାନନ୍ଦ ବିଜ୍ଞାନ ବିଚିତ୍ରା, ଟେଲିଗ୍ରାଫ୍ ଓ ଟେଲିଫୋନ୍, ଟେଲିଭିଜନ, ଭିଟାମିନ୍ ଓ ହରମୋନ୍, ବିଜ୍ଞାନର ଅପ ବ୍ୟବହାର, ଦୈନନ୍ଦିନ ବ୍ୟବହାରରେ ପଲିମର, ଶିଶୁର ରୋଗ, ଶିଶୁର ଯତ୍ନ, ଆଇନଷ୍ଟାଇନ୍ ଓ ଆପେକ୍ଷିକ ତଥ୍ୟ, ବିଜ୍ଞାନ ଜଗତର ନୂଆ ନୂଆ ଆବିଷ୍କାର, ଯନ୍ତ୍ର ମଣିଷ, ପରମାଣୁ ବୋମା, ବିଜ୍ଞାନର କୃତିତ୍ୱ - ପ୍ରଥମ ଓ ଦ୍ୱିତୀୟ ଭାଗ, ଆଜିର ଶ୍ରେଷ୍ଠ ଉଦ୍‌ଭାବନ, ରେଡ଼ିଓ ଓ ର୍‌ୟାଡ଼ର, ଗ୍ରାମଫୋନ୍ ଓ ଟେପ୍‌ରେକର୍ଡ଼ର, ଆଧୁନିକ ଫଟୋଗ୍ରାଫି, ଆପେକ୍ଷିକ ତତ୍ତ୍ୱ, ନୂତନ ଜୀବନ ଓ ନୂତନ ଆଲୋକ, ମାଡ଼ାମ୍ କ୍ୟୁରୀ, ଗାଲିଲିଓ, ଆରିଷ୍ଟୋଟଲ ଏବଂ ଆର୍କମେଡ଼ିସ୍, ବିଚିତ୍ର ବିଶ୍ୱ, ବିଜ୍ଞାନର ଆଦିପର୍ବ, ଆଲକାତରା, ଆଣ୍ଟିବାଓଟିକ୍‌ସ, ଚନ୍ଦ୍ର ଅଭିଯାନ, ଭିଡ଼ିଓ ଟେଲିଫୋନ୍, ବିଜ୍ଞାନ ଜଗତର ନୂଆ ନୂଆ ଉଦ୍‌ଭାବନ, ବୈଜ୍ଞାନିକ ମଜାକଥା, ଶାନ୍ତି ଓ ଅଶାନ୍ତିରେ ପରମାଣୁ ଶକ୍ତି, ଓଡ଼ିଶାର ପ୍ରାକୃତିକ ସଂପଦ ଓ ଶିଳ୍ପ ସଂଭାବନା । ଏତଦ୍‌ବ୍ୟତୀତ ବିସ୍ତୃତ ଜ୍ଞାନାଲୋକ ପାଇଁ ଲେଖିଛନ୍ତି - ବୈଜ୍ଞାନିକ ଜ୍ଞାନକୋଷ ପ୍ରଥମ ଓ ଦ୍ୱିତୀୟଭାଗ, ବୈଜ୍ଞାନିକ ଶବ୍ଦକୋଷ । ଭ୍ରମଣଜନିତ ତାଙ୍କର ଅନୁଭୂତିକୁ ନେଇ ସେ ଲେଖିଛନ୍ତି ନିମ୍ନୋକ୍ତ ତିନିଖଣ୍ଡ ଗ୍ରନ୍ଥ । ଯଥା- ନୀଳଚକ୍ରବାଳ ସେପାରେ, ପାଶ୍ଚାତ୍ୟ ସ୍ମୃତି ଓ ଇଉରୋପ ଭ୍ରମଣ । ବୈଜ୍ଞାନିକ ଚିନ୍ତାଧାରାକୁ ନେଇ ଉପନ୍ୟାସ ରଚନା କରିବାରେ ସେ ଥିଲେ ସିଦ୍ଧହସ୍ତ । ତାଙ୍କର ସେହି ଉପନ୍ୟାସଗୁଡ଼ିକ ମଧ୍ୟରୁ କେତେଗୋଟି ହେଲା - ଡାଇନୋସରର ହସ, ପୃଥିବୀ ବାହାରେ ମଣିଷ, କୃତ୍ରିମ ଉପଗ୍ରହ, ମଧ୍ୟାହ୍ନର ଅନ୍ଧକାର, ସୁନାର ଓଡ଼ିଶା, ନିଷ୍ଫଳ ପୃଥିବୀ, ନିସ୍ତବ୍ଧ ଗୋଧୂଳି, ସମୟର ଫାଟ, ମୃତ୍ୟୁ ଏକ ମାତୃତ୍ୱର ଓ ସ୍ପୁଟ୍‌ନିକ୍ । ସେ ମଧ୍ୟ ଡ.ସି.ଭି. ରମଣଙ୍କର 'Aspects of Science' କୁ ଓଡ଼ିଆରେ ଅନୁବାଦ କରିଛନ୍ତି, ଯାହାର ନାମ ହେଲା 'ବିଜ୍ଞାନର ଦୃଶ୍ୟ' । ବିଜ୍ଞାନକୁ ଭିତ୍ତିକରି ସେ ଲେଖିଛନ୍ତି ନାଟକ, ଯାହାର ନାମ ହେଲା - 'ରାଜନର୍ତ୍ତକୀ' । ଶିଶୁମାନଙ୍କ ମନରେ ବିଜ୍ଞାନ ଚିନ୍ତା ଭରିଦେବା ପାଇଁ ସେ ବାରଖଣ୍ଡ ବହି ଲେଖିଛନ୍ତି । ସେଗୁଡ଼ିକ ହେଲା - କିଏ ବେଶୀ ଭାରୀ, ତୁମକୁ ସତ ମୋତେ ମିଛ, ବିଜ୍ଞାନର କରାମତି, ପୃଥିବୀର ସପ୍ତାଶ୍ଚର୍ଯ୍ୟ, ତରଳବାୟୁ ଓ ତରଳ ବରଫ, ଛବି କେମିତି କଥା କହେ, ଆମ ପରିବେଶ, ଚିନି କେମିତି ତିଆରି ହୁଏ, କାଚ କେମିତି ତିଆରି ହୁଏ, କାଗଜ କେମିତି ତିଆରି ହୁଏ ଓ କିରୋସିନି କୁଆଡୁ ଆସେ । ତାଙ୍କର ରଚନାବଳୀ ପ୍ରକାଶିତ

ହୋଇଅଛି । ଗୋକୁଳାନନ୍ଦ ରଚନାବଳୀ ପ୍ରଥମ, ଦ୍ୱିତୀୟ ଓ ତୃତୀୟଭାଗ ଏବେ ଉପଲବ୍ଧ । ପ୍ରକାଶକ ହେଲେ ବିଦ୍ୟାପୁରୀ, ବାଲୁବଜାର, କଟକ । ପ୍ରକାଶ ଥାଉ କି ଡକ୍ଟର ଗୋକୁଳାନନ୍ଦଙ୍କ ବିଜ୍ଞାନ ଉପନ୍ୟାସ 'ପୃଥିବୀ ବାହାରେ ମଣିଷ'ର ଇଂରାଜୀ ଅନୁବାଦ (MAN BEYOND EARTH) କରିଛନ୍ତି ତାଙ୍କର ସୁଯୋଗ୍ୟା କନ୍ୟା ଡ. ଜ୍ୟୋସ୍ନା ମହାପାତ୍ର । ଏହିପରି ଦେଖିଗଲେ ସାଧାରଣ ମଣିଷକୁ ବାସ୍ତବ ଜ୍ଞାନ ଦେବା ପାଇଁ ତାଙ୍କର ପ୍ରଚେଷ୍ଟା ଥିଲା ଜୀବନବ୍ୟାପୀ । ବିଜ୍ଞାନ ଗବେଷକଙ୍କୁ ପ୍ରୋତ୍ସାହିତ କରିବା ପାଇଁ ସେ ୧୯୯୫ରେ ପ୍ରତିଷ୍ଠା କରିଛନ୍ତି ତାଙ୍କ ପିତାଙ୍କ ନାମରେ 'ବିଜୟ ଗୋବିନ୍ଦ ଦାତବ୍ୟ ଟ୍ରଷ୍ଟ' । ଏଇ ଟ୍ରଷ୍ଟଦ୍ୱାରା ଗବେଷକ, ଲୋକପ୍ରିୟ ବିଜ୍ଞାନ ଲେଖକ, ଶିଶୁ ସାହିତ୍ୟିକଙ୍କୁ ସମ୍ମାନିତ କରାଯାଏ । ଏହାଛଡ଼ା ସେ ଗୋକୁଳାନନ୍ଦ–ନିତ୍ୟାନନ୍ଦ ମହାପାତ୍ର ଫାଉଣ୍ଡେସନ୍ (GNK Foundation) ମଧ୍ୟ ଗଢ଼ି ଯାଇଛନ୍ତି । କଲ୍ୟାଣକର କାର୍ଯ୍ୟରେ ସେ ସଦାସର୍ବଦା ମନ ଦେଉଥିଲେ । ବିଜ୍ଞାନକୁ ଲୋକାଭିମୁଖୀ କରାଇବା ପାଇଁ ସେ ବିଜ୍ଞାନ ପ୍ରଚାର ସମିତି ୧୯୪୯, ଅଗଷ୍ଟ ୭ ତାରିଖରେ ପ୍ରତିଷ୍ଠା କରିଥିଲେ । ଇତିମଧ୍ୟରେ ୨୦୧୭ ସୁଦ୍ଧା ଏହାର ୬୦ଟି ବାର୍ଷିକ ଅଧିବେଶନ ଓ ୧୦୦୦ରୁ ଅଧିକ ସାଧାରଣ ଅଧିବେଶନ ହୋଇସାରିଲାଣି । ଏହି ପ୍ରଚାର ସମିତିର ସଭ୍ୟସଭ୍ୟାଗଣଙ୍କ ମଧ୍ୟରୁ ଅନେକେ ବୈଜ୍ଞାନିକ ତଥ୍ୟାଶ୍ରୟୀ ଓଡ଼ିଆ ପୁସ୍ତକମାନ ରଚନା କରିଛନ୍ତି ।

ସାରସ୍ୱତ ସାଧକ ପ୍ରଫେସର ଗୋକୁଳାନନ୍ଦଙ୍କ ସାଧନା–ସିଦ୍ଧିକୁ ସ୍ୱୀକାର କରି ଯେଉଁ ସମ୍ମାନ ପ୍ରଦତ୍ତ ହୋଇଥିଲା, ତହିଁରୁ କିଂଚିତ ନିମ୍ନରେ ପ୍ରଦତ୍ତ । ଯଥା– ସର୍ବଭାରତୀୟ ସ୍ତରୀୟ କୁପର ସ୍ମୃତି ସ୍ୱର୍ଣ୍ଣପଦକ (୧୯୬୧), ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟି ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ୧୯୬୪, ଓଡ଼ିଶା ସାହିତ୍ୟ ଏକାଡ଼େମୀର ରଜତ ଜୟନ୍ତୀ ଉତ୍ସବରେ ବିଜ୍ଞାନ ସାହିତ୍ୟ ସୃଷ୍ଟି ପାଇଁ ତାମ୍ରଫଳକ ଓ ଉପାୟନ (୧୯୮୨), ସାମନ୍ତ ଚନ୍ଦ୍ରଶେଖର ପୁରସ୍କାର (ଓଡ଼ିଶା ବିଜ୍ଞାନ ଏକାଡ଼େମୀଦ୍ୱାରା (୧୯୮୮), ସାରଳା ପୁରସ୍କାର (୧୯୯୪), ଉତ୍କଳ ସାହିତ୍ୟ ସମାଜଦ୍ୱାରା ପ୍ରାଣକୃଷ୍ଣ ପରିଜା ସ୍ମୃତି ପୁରସ୍କାର, ରସାୟନ ବିଜ୍ଞାନରେ ଗବେଷଣା ଓ ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ପାଇଁ ଓଡ଼ିଶା ପରିବେଶ ସୋସାଇଟି ଦ୍ୱାରା ମାନପତ୍ର (୧୯୯୬), ବିଜ୍ଞାନ ସାହିତ୍ୟ ସୃଷ୍ଟିର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ବିଜ୍ଞାନ ପ୍ରଚାର ସମିତି ତରଫରୁ ମାନପତ୍ର ଓ ଉପାୟନ (୧୯୯୬), ଓଡ଼ିଶା କେମିକାଲ ସୋସାଇଟିଦ୍ୱାରା ସମ୍ବର୍ଦ୍ଧନା ସପ୍ତମ ରାଜଧାନୀ ପୁସ୍ତକମେଳା ପୁରସ୍କାର ୨୦୦୬ ଭଦ୍ରକ ପୂଜ୍ୟପୂଜା ସଂସଦ ସମ୍ମାନ, ମାତୃଭୂମି–ସହକାର ମକରମିଳନ ପୁରସ୍କାର, ରୋଟାରୀ କ୍ଲବ, କଟକର ପୁରସ୍କାର, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରର ସମ୍ବର୍ଦ୍ଧନା ଓ ସର୍ବୋପରି କଳିଙ୍ଗ ପୁରସ୍କାର– ୨୦୧୦ ଇତ୍ୟାଦି ।

ଏହି ସାରସ୍ୱତ ସାଧକ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କର ଦେହାନ୍ତ ହୁଏ ୨୦୧୩ ମସିହା ଜୁଲାଇ ୧୦ ତାରିଖରେ । ତାଙ୍କର ଅବଦାନ ପାଇଁ ସେ ଆଜି ଅମର ।

ସେକ୍ଟର ୨/୪୨୬, ନୀଳାଦ୍ରି ବିହାର
ଭୁବନେଶ୍ୱର–୭୫୧୦୨୧



# ଶ୍ରୀମନ୍ଦିରରେ ଦେବ ଦୀପାବଳି ଉତ୍ସବ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ ତିଥିଠାରୁ ଶୁକ୍ଳ ପ୍ରତିପଦ ତିଥି ପର୍ଯ୍ୟନ୍ତ ତିନିଦିନ ବ୍ୟାପୀ ଦେବତାମାନଙ୍କର ଦୀପାବଳି ବା ଦୀପଦାନ ଉତ୍ସବ ପାଳିତ ହୁଏ । ଏହି ସମୟରେ ଓଡ଼ିଶାର ବିଭିନ୍ନ ମନ୍ଦିରଗୁଡ଼ିକୁ ଆଲୋକମାଳାରେ ସଜ୍ଜିତ କରାଯାଏ । ବିଶ୍ୱପ୍ରସିଦ୍ଧ ଶ୍ରୀମନ୍ଦିର ଓ ଶ୍ରୀଲିଙ୍ଗରାଜ ମନ୍ଦିରରେ ଏହା ବିଶେଷ ଭାବରେ ପାଳିତ ହୋଇଥାଏ । ସାକ୍ଷୀଗୋପାଳଠାରେ ମଧ୍ୟ ସାକ୍ଷୀଗୋପାଳଙ୍କ ମନ୍ଦିରରେ ଏହି ଉତ୍ସବ ମହାସମାରୋହରେ ପାଳନ କରାଯାଏ । କିନ୍ତୁ ଶ୍ରୀମନ୍ଦିରରେ ଏହି ଦୀପାବଳି ଉତ୍ସବ ଶ୍ରୀଜଗନ୍ନାଥଙ୍କ ପିତୃଶ୍ରାଦ୍ଧ ପରମ୍ପରା ଭାବେ ଏକ ସ୍ୱତନ୍ତ୍ର ନୀତିରେ ପାଳନ କରାଯାଏ । ପ୍ରଭୁ ଶ୍ରୀଜଗନ୍ନାଥ ମାନବବାଦୀ ଦେବତା ହୋଇଥିବାରୁ ତାଙ୍କର ସମସ୍ତ ରୀତିନୀତି ଓ ଉତ୍ସବ ମାନବବାଦରେ ପାଳନ କରାଯାଏ । ଶ୍ରୀଜୀଉମାନେ ତିନିଦିନ ଲୁଗା ଓ ଚଦର ପରିଧାନ କରି ଶ୍ରାଦ୍ଧବେଶରେ ସଜ୍ଜିତ ହୋଇ ପିତୃଗଣଙ୍କୁ ଶ୍ରାଦ୍ଧ ପ୍ରଦାନ ପୂର୍ବକ ଦୀପଦାନ କରିଥାନ୍ତି ।

ଶ୍ରୀଜଗନ୍ନାଥାଦିଙ୍କ ଶ୍ରାଦ୍ଧ ସମୟର ବସ୍ତ୍ରକୁ କାଶୀଧଡ଼ିଆ ବସ୍ତ୍ର କୁହାଯାଏ । ଏହି ବସ୍ତ୍ରର ରଙ୍ଗ ଶ୍ୱେତବର୍ଣ୍ଣ ଓ ଲାଲ ରଙ୍ଗ ଧଡ଼ିରେ ବଡ଼ ବଡ଼ କୁମ୍ଭମାନ ପଡ଼ିଥାଏ । ଶ୍ରୀଜଗନ୍ନାଥଙ୍କର ଶ୍ୱେତ ପାଟବସ୍ତ୍ରର ଲମ୍ବ ୧୬–୧୮ ହାତ, ଚଉଡ଼ା ୫ ହାତ ଓ ଧଡ଼ିର ଓସାର ୧ ଫୁଟ୍ । ସେହିଭଳି ବଳଭଦ୍ରଙ୍କର ଶ୍ୱେତ ପାଟବସ୍ତ୍ରର ଲମ୍ବ ୧୪ ହାତ, ଚଉଡ଼ା ୪ ହାତ ଓ କଳାବର୍ଣ୍ଣ ଧଡ଼ିର ଓସାର ୧ ଫୁଟ୍ । ଦେବୀ ସୁଭଦ୍ରାଙ୍କର ପାଟବସ୍ତ୍ରର ଲମ୍ବ ୧୨ ହାତ, ଚଉଡ଼ା ୩ ଫୁଟ୍ ୬ ଇଞ୍ଚ ଓ ହଳଦିଆ ରଙ୍ଗ ଧଡ଼ିର ଓସାର ୧ ଫୁଟ୍ । ଏସବୁ ବସ୍ତ୍ର ସହିତ ଶ୍ରୀଜୀଉମାନଙ୍କୁ ଚାଦରରେ ମଣ୍ଡନ କରାଯାଇ ଶୀରରେ ଶ୍ରୀକପଡ଼ା ନାମକ ସ୍ୱତନ୍ତ୍ର ବସ୍ତ୍ରରେ ଶୋଭିତ କରାଯାଏ । ପୁଷ୍ପାଳକ ସେବକମାନେ ଶ୍ରୀଜୀଉମାନଙ୍କୁ ଚିତ୍ତାକର୍ଷକ ଶ୍ରାଦ୍ଧବେଶରେ ସଜ୍ଜିତ କରିଥାନ୍ତି । ଏହି ବେଶରେ ଠାକୁରମାନେ ନଳିଭୁଜ, କୁଣ୍ଡଳ, ଚନ୍ଦ୍ରସୂର୍ଯ୍ୟ, ଆଡ଼କାନି, ତଡ଼ଗି, ହରିଡ଼ାମାଳି ଓ ଅଷ୍ଟାକମରପଟି ପ୍ରଭୃତି ସୁବର୍ଣ୍ଣ ଅଳଙ୍କାର ପରିଧାନ କରିଥାନ୍ତି ।

ଶ୍ରୀମନ୍ଦିରରେ ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ପ୍ରଭୁ ବାମନ ରୂପରେ ଦେବ ପିତାମାତା ସତ୍ୟଯୁଗର କଶ୍ୟପ ଋଷି ଓ ଅଦିତିଙ୍କ ପ୍ରତି ପିଣ୍ଡ ଓ ଦୀପୋତ୍ସର୍ଗ କରନ୍ତି । ମାର୍ଗଶିର ଅମାବାସ୍ୟା ତିଥିରେ ପ୍ରଭୁ ଶ୍ରୀରାମଚନ୍ଦ୍ର ରୂପରେ ତ୍ରେତୟାଯୁଗର ପିତା ଦଶରଥ ଓ କୌଶଲ୍ୟା ମାତାଙ୍କୁ ପିଣ୍ଡ ଓ ଦୀପଦାନ କରନ୍ତି । ମାର୍ଗଶିର ଶୁକ୍ଳ ପ୍ରତିପଦ ତିଥିରେ ପ୍ରଭୁ ଶ୍ରୀକୃଷ୍ଣ ରୂପରେ ଦ୍ୱାପର ଯୁଗର ପିତା ବସୁଦେବ ଓ ମାତା ଦେବକୀଙ୍କୁ ଏବଂ ନନ୍ଦ ଓ ଯଶୋଦାଙ୍କୁ ପିଣ୍ଡ ଓ ଦୀପଦାନ କରନ୍ତି ।

ସୂର୍ଯ୍ୟବଂଶର ବିଷ୍ଣୁଭକ୍ତ ଗଜପତି ମହାରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କ ଦର୍ଶନ ପାଇଁ ବହୁ କାମନା କରିଥିଲେ । ସେ ପାଞ୍ଚଶହ ବର୍ଷ ମଧ୍ୟରେ ପ୍ରଭୁଙ୍କ ଆଜ୍ଞାରେ ଏକହଜାର ଅଶ୍ୱମେଧ ଯଜ୍ଞ କରି ଶ୍ରୀନୀଳମାଧବଙ୍କୁ ଦାରୁ ରୂପେ ପ୍ରାପ୍ତ ହୋଇଥିଲେ ବୋଲି କଥିତ ଅଛି । ପ୍ରଭୁଙ୍କ ଆଜ୍ଞାରେ ବାଙ୍କୀମୁହାଣଠାରେ ଭାସୁଥିବା ଦାରୁ ଆଣି ମୂର୍ତ୍ତି ଗଠନ କଲେ । ଗୁଣ୍ଡିଚା ମନ୍ଦିରଠାରେ ବ୍ରହ୍ମାଙ୍କ ଆଜ୍ଞାରେ ଯଜ୍ଞ କରାଇଥିଲେ । ଏକହଜାର ହାତ ଉଚ୍ଚରେ ବଡଦେଉଳ କରାଇଥିଲେ ବୋଲି କିମ୍ବଦନ୍ତୀ ରହିଛି, ଯାହାକି ବର୍ତ୍ତମାନ ଲୁପ୍ତ । ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ ଓ ଦେବୀ ସୁଭଦ୍ରା ଆଦି ତିନିମୂର୍ତ୍ତି ସ୍ଥାପନ କରି ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇଥିଲେ । ପ୍ରଭୁ ଶ୍ରୀନୀଳମାଧବ ଆୟୁଧ ଶ୍ରୀସୁଦର୍ଶନଙ୍କ ସହିତ ଚତୁର୍ଦ୍ଧାମୂର୍ତ୍ତି ରୂପେ ପୂଜା ପାଇଲେ । ବରଦାନରେ ସେ ନିଜେ ବଂଶହୀନ ହେବା ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା କରିଥିଲେ । ଯାହାଦ୍ୱାରା ପ୍ରଭୁଙ୍କ

କୀର୍ତ୍ତି ପାଇଁ ତାଙ୍କ ପରେ କେହି ଅହଙ୍କାର କରିବେ ନାହିଁ । ତେଣୁ ଏହି ଦୀପାବଳିରେ ମାର୍ଗଶିର ଶୁକ୍ଳ ପ୍ରତିପଦ ତିଥିରେ ପ୍ରଭୁ ଶୁଭ୍ରବସ୍ତ୍ର ଓ ଚଦର ପରିଧାନ କରି ପିତାମାତା ଭାବେ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ରାଣୀ ଗୁଣ୍ଡିଚାଙ୍କୁ ପିଣ୍ଡ ଓ ଦୀପଦାନ କରନ୍ତି ।

ଏପରି ଭକ୍ତ ଓ ଭଗବାନଙ୍କ ସମ୍ପର୍କ ଦେଖିବାକୁ ବିରଳ । ଏହି ଦିନମାନଙ୍କରେ ପ୍ରଭୁଙ୍କର ଶ୍ରାଦ୍ଧବେଶ ଓ ଶ୍ରୀମନ୍ଦିରର ଆଲୋକସଜ୍ଜା ଅତ୍ୟନ୍ତ ମନୋମୁଗ୍ଧକର ହୋଇଥାଏ । ବିଧି ଅନୁସାରେ ଚୂନରା ସେବକ ମହାଦୀପ ଧରି ଶ୍ରୀମନ୍ଦିରକୁ ଦୀପରେ ସଜ୍ଜିତ କରିଥାନ୍ତି । ଶ୍ରୀମନ୍ଦିରର ଗୁମୁଟି, ରାଜନଅର ଓ ଶ୍ରୀମନ୍ଦିର କାର୍ଯ୍ୟାଳୟକୁ ବିଭିନ୍ନ ଆଲୋକମାଳାରେ ସଜ୍ଜିତ କରାଯାଏ । ପିତୃଶ୍ରାଦ୍ଧ ଓ ଦୀପଦାନ ପରେ ଚୂନରା ସେବକ ଶ୍ରୀମନ୍ଦିରର ତିନିଦେଉଳ ଉପରେ ମହାଦୀପ ଜାଳି ଗଜପତିଙ୍କୁ ମହାପ୍ରଭୁଙ୍କ ଆଶୀର୍ବାଦ ଦିଅନ୍ତି ।

ମାର୍ଗଶିର ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ସନ୍ଧ୍ୟାଧୂପ ପରେ ଧୋପଖାଳ ହେବା ପରେ ରତ୍ନସିଂହାସନ ତଳେ ଭଣ୍ଡାରମେକାପ ଚାଉଳରେ ଗୋଟିଏ ଗଛ ନିର୍ମାଣ କରନ୍ତି । ପାଳିଆ ମେକାପ ବଇଠାମାନଙ୍କରେ ଘୃତ ପୂର୍ଣ୍ଣକରି ଚାଉଳଗଛରେ ବତି ବସାନ୍ତି । ସମୁଦାୟ ଅଠେଇଶ ଗୋଟି ବତି ବସାଯାଏ । ତନ୍ମଧ୍ୟରୁ ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ନିମନ୍ତେ ନଅଗୋଟି କରି ଅଠର ଏବଂ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନିମନ୍ତେ ଦଶଗୋଟି ଦୀପ ବସାଯାଇଥାଏ । ତିନିଗୋଟି ସୁନା ଆଳତି ଲଗାଇବା ପରେ ପୂଜାପଣ୍ଡା ସେବକ ଚାଉଳଗଛ ଓ ଦୀପମାନଙ୍କୁ ସଂସ୍କାର କରନ୍ତି । ଏହାପରେ ପୂଜାପଣ୍ଡା, ପତିମହାପାତ୍ର ଓ ମୁଦିରସ୍ତ ସେବକମାନେ ସିଂହାସନ ଉପରକୁ ଉଠି ତିନିବାଡ଼ରେ ବନ୍ଦାପନା କରନ୍ତି । ତା'ପରେ ତିନିଗୋଟି ମହାଦୀପରେ ବନ୍ଦାପନା କରାଯାଏ । ତତ୍ପରେ ପୂଜକ ତିନିଜଣ ମହାଦୀପଗୁଡ଼ିକୁ ହାତରେ ଧରି ଜୟବିଜୟ ଦ୍ୱାରର ଭିତର ପାଖକୁ ଆସନ୍ତି । ସେଠାରେ ଆସ୍ଥାନପଢ଼ିଆରୀ କରିଥିବା ଚାଉଳଗଛକୁ ଜଣେ ପୂଜାପଣ୍ଡା ସଂସ୍କାର କରି ପାଣି ଛଡ଼ାନ୍ତି । ସେହି ମହାଦୀପ କଳସଗୁଡ଼ିକୁ ପାଳିଆ ଚୂନରାଙ୍କୁ ଦିଆଯାଏ । ସଂପୃକ୍ତ ଚୂନରା ସେବକ ବଡ଼ଓଡ଼ିଆ ମଠ ପ୍ରଦତ୍ତ ତେଲ ଓ ଘିଅ ନେଇ ମନ୍ଦିରର ଅଁଳା ବେଢ଼ା ଉପରେ ଦୀପମାନ ଜାଳନ୍ତି ଓ ଚନ୍ଦ୍ର ଉଦିଆ ଜାଳି 'ଗଜପତି ମହାରାଜାଙ୍କୁ ମହାପ୍ରଭୁ ଶଙ୍ଖେ ପୂରାଇ ଚକ୍ରେ ଆଉୁଆଳ କରନ୍ତୁ' କହି ହରିବୋଲ ଡାକ ଦିଅନ୍ତି ।

ଅମାବାସ୍ୟା ଦିନ ଠିକ୍ ପୂର୍ବୋକ୍ତ ରୀତିରେ ନୀତି ଅବିକଳ ପାଳିତ ହୋଇଥାଏ । କିନ୍ତୁ ପ୍ରତିପଦା ଦିନ ପାଣି ପଡ଼ି ଚାଉଳଗଛ ହେବା ପରେ ମଦନମୋହନ ଭିତର ସିଂହାସନକୁ ବିଜେ କରନ୍ତି । ସେଠାରେ ମୁଦିରସ୍ତ ପ୍ରସାଦ ଲାଗି କଲାପରେ ତିନିଜଣ ପାଳିଆ ପୂଜାପଣ୍ଡା ଚାଉଳ ଗଛକୁ ସଂସ୍କାର କରି ପାଣି ଛଡ଼ାଇବା ପରେ ତିନିବାଡ଼ରେ ବନ୍ଦାପନା ହୁଏ । ମଦନମୋହନ ଓ ଲକ୍ଷ୍ମୀ ସରସ୍ୱତୀ ଆଜ୍ଞାମାଳ ପାଇ ଜୟବିଜୟ ଦ୍ୱାର ଭିତରପାଖେ ବିଜେ କରିଥିବା ବେଳେ ସେଠାରେ ନିର୍ମିତ ଚାଉଳ ଗଛର ସଂସ୍କାର କାର୍ଯ୍ୟ ବଢ଼େ ଓ ଜୟବିଜୟ ଦ୍ୱାର ଫିଟାଯାଏ । ତା'ପରେ ଠାକୁରମାନେ ଝୁଲଣମଣ୍ଡପ ତଳେ ଥିବା ବିମାନରେ ବିଜେ କରନ୍ତି । ଏହିଠାରେ ଠାକୁରମାନଙ୍କର ରୁନ୍ଧା ବଢ଼ିବା ପରେ ବିମାନକୁ ଜଗନ୍ନାଥ ବଲ୍ଲଭ ମଠକୁ ନିଆଯାଏ । ଏହି ସ୍ଥାନରେ ମୂଳିଆ ସୁଆଁସିଆ ଦେଇଥିବା କାଷ୍ଠ ନିର୍ମିତ ଭଦ୍ରାସନ ଉପରେ ଆସ୍ଥାନପ୍ରତିହାରୀ ଚାଉଳଗଛ ତିଆରି କରି ଦୀପ ବସାଇଥାନ୍ତି । ସେଠାରେ ମୁଦିରସ୍ତ ପ୍ରସାଦ ଲାଗି କରିବା ପରେ ପୂଜାପଣ୍ଡା ଚାଉଳଗଛକୁ ସଂସ୍କାର କରନ୍ତି ଓ ମୁଦିରସ୍ତ ବନ୍ଦାପନା କରିଥାନ୍ତି । ତା'ପରେ ସେଠାରୁ ଠାକୁରମାନେ ବାହୁଡ଼ାବିଜେ କରି ସ୍ୱ ସ୍ୱ ସ୍ଥାନକୁ ଯାଇଥାନ୍ତି । ଏହି ଅବସରରେ ଉଭୟ ଶ୍ରୀମନ୍ଦିର ଓ କାର୍ଯ୍ୟାଳୟକୁ ଦୀପମାଳାରେ ସୁସଜ୍ଜିତ କରାଯାଇଥାଏ । ଏହି ପାବନ ଯାତ୍ରା କାଳରେ ଯେଉଁମାନେ ଶ୍ରୀଜୀଉଙ୍କର ଦର୍ଶନ ଲାଭ କରନ୍ତି, ସେମାନେ ଇହ ଲୋକରେ ସୁଖ ଓ ପରଲୋକରେ ବିଷ୍ଣୁଲୋକରେ ସ୍ଥାନ ଲାଭ କରନ୍ତି । ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କର ପିତୃଶ୍ରାଦ୍ଧ ପରମ୍ପରା ଏକ ଗୁପ୍ତସେବା ହୋଇଥିବାରୁ ସାଧାରଣ ଭକ୍ତଙ୍କ ଦର୍ଶନ ହୁଏ ନାହିଁ ।

ପ୍ରତିମାଃ ସ୍ୱପଦେ ରକ୍ଷେଦେତତ୍ ପଶ୍ୟତି ଯୋ ନରଃ ।
ଇହ ଲୋକେ ସୁଖଂ ଭୁକ୍ତ୍ୱା ବ୍ରଜେଦନ୍ତେ ହରେଃ ପଦମ୍ ।୭୮।
ତ୍ରୟୋବିଂଶୋଦ୍ଧ୍ୟାୟଃ (ବାମଦେବ ସଂହିତା)

ଅର୍ଥ – ପ୍ରଭୁଙ୍କର ଏହି ଦୀପଦାନ ଉତ୍ସବକୁ ଯେଉଁ ମନୁଷ୍ୟ ଭକ୍ତିଭାବରେ ଦର୍ଶନ କରେ, ସେ ଏହି ଲୋକରେ ସୁଖଭୋଗ କରିବା ସଙ୍ଗେ ସଙ୍ଗେ ଶେଷରେ ହରିଙ୍କ ଚରଣକମଳରେ ସ୍ଥାନ ପାଇଥାଏ ।୭୮।

ଏ.ଏଲ-୫୩, ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର

# ମୋ ଉତ୍କଳ ମାତା

**ଶ୍ରୀମତ୍ ବ୍ରହ୍ମଚୈତନ୍ୟ ବ୍ରହ୍ମଚାରୀ**

ବନ୍ଦେ ଉତ୍କଳ ଜନନୀ । ତୋ କୋଳରେ ଜନ୍ମ ନେଇ, ତୋର ପାଣି ପବନ ଭୋଗ କରି ଜୀବନର ଅନ୍ତିମ ଅବସରରେ ଉପନୀତ ହେଲେଣି । ମାତ୍ର ତୋ ସେବା ତୋ ମନଲାଖି ମୁଁ କରିପାରେନି । ଖାଲି ତୋରି ସାରସ୍ୱତ ବାଣୀକୁ ସୁଖ ପାଇଛି । ମନର କେତେ ଅବ୍ୟକ୍ତ ଭାବକୁ ତୋର ଭାଷାରେ ପ୍ରକାଶ କରିବାକୁ ଚେଷ୍ଟିତ ହୋଇଛି । ତୋର କୋଳରେ ଜନ୍ମ ନେଇଥିବା କେତେ ବରପୁତ୍ରଙ୍କୁ ମୁଁ ଭଲ ପାଇଛି । ତୋର ବାଣୀରେ ରଚିତ ଯଥାସମ୍ଭବ କବିତା–ପ୍ରବନ୍ଧ–ଗଳ୍ପ ପାଠ କରିବା ଓ ରାଗ –ରାଗିଣୀ–ରଞ୍ଜିତ ସଙ୍ଗୀତ ଏହି ହତଭାଗ୍ୟ କଣ୍ଠରେ ଗାୟନ କରିଛି । ତୋର ଜାତୀୟ ନୃତ୍ୟ ସନ୍ଦର୍ଶନରେ ମୁଗ୍ଧ ହୋଇଛି । ତୋର କେତେ ଯୋଗ୍ୟ ସନ୍ତାନମାନଙ୍କର ଚାରୁ ଶିଳ୍ପ କଳା ଏ ଦୁଇ ନୟନରେ ନିରେଖି ବିଭୋର ହୋଇଛି । ତୋ କୋଳରେ ଗଢି ହୋଠିଥିବା ପୂତ ତୀର୍ଥରାଜିରୁ ସାମାନ୍ୟତମ ହେଲେବି ଉପଭୋଗ କରେ ଶାନ୍ତି–ସାନ୍ତ୍ୱନା । କେତେ ପ୍ରିୟ ପରିଜନ ବନ୍ଧୁବାନ୍ଧବଙ୍କର ମମତାର ଅମୃତ ପାନ କରିଛି । ବୈଷୟିକ ଓ ଆଧ୍ୟାତ୍ମିକ ଶିକ୍ଷାଧନରୁ ବି କିଛି ସାଉଁଟି ପାରିଛି । ବିଶେଷ କରି ତୋର ଗୁଣ ଗରିମା ବର୍ଣ୍ଣିତ ମହା ଅମୂଲ୍ୟ ଉତ୍କଳ ପ୍ରସଙ୍ଗ ଗ୍ରନ୍ଥ ଯଥା ସମ୍ଭବ ପାଠ କରି ପରମ ତୃପ୍ତିଲାଭ କରିଛି । କେତେ ମହାନ ଶିକ୍ଷା ଗୁରୁବର୍ଗଙ୍କ ସାନ୍ନିଧ୍ୟରେ ଜୀବନକୁ ଧନ୍ୟ କରିଛି । ପାରିବାରିକ ଜୀବନରେ ପିତୃ–ମାତୃ, ଆଦର୍ଶ ଭ୍ରାତା–ଭଗିନୀଙ୍କର ସ୍ନେହ–ସାହଚର୍ଯ୍ୟରେ ଜୀବନକୁ ଭାଗ୍ୟବାନ ମଣିଛି । ସବୁଜ କବି ମହୀୟାନ ବୈକୁଣ୍ଠନାଥ ପଟ୍ଟନାୟକଙ୍କର 'ଜୀବନ ପାତ୍ର ମୋ ଭରିଛ କେତେ, ମୋତେ ନଦେଲ କିଛି ବୋଲି କହିବିକି ହେ ଆଉ' ଜୀବନ ପ୍ରିୟତମ, ହୋଇଛ ମୋ ଭରମ, ତରଣୀ ମୋର ତବ ସାଗରେ ବହିଯାଉ, ...ଏହି କବିତା, କଲିକତା ଆକାଶବାଣୀରୁ ମା' ଗାୟିକା ଶ୍ରୀମତୀ ସୁନନ୍ଦା ପଟ୍ଟନାୟକଙ୍କ କଣ୍ଠରୁ ହୃଦୟଗ୍ରାହୀ ସ୍ୱର ଝଙ୍କାର ଶ୍ରବଣ ପୂର୍ବକ ସ୍ୱୟଂ ଗାୟକଙ୍କର ପରମ ଆଧ୍ୟାତ୍ମିକ ସ୍ରୋତରେ ନିଜକୁ ହଜେଇ ପାରିଛି । ତା'ର ରୁଗ୍ଣ ଜୀବନରେ – ସନାତନ ଧର୍ମର ଚତୁଃସାଧ ସିଦ୍ଧ ନିର୍ବିକଳ୍ପ ସମାଧିବ୍ୟୁତ୍‌ଥିତ ଶ୍ରୀ୧୦୮ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ପରମହଂସ ଦେବଙ୍କ ସବିଶେଷ କରୁଣାରୁ ବିଶ୍ୱବିଦ୍ୟାଳୟର ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ ନପାରିଲେ ମଧ୍ୟ ତାଙ୍କର ପ୍ରଚାରିତ ଅସାମ୍ପ୍ରଦାୟିକ ଓ ସର୍ବସାମ୍ପ୍ରଦାୟିକ ତାରକ ବ୍ରହ୍ମ ସିଦ୍ଧ ଜୟଗୁରୁ ମହାନାମର ଆଶ୍ରୟରେ ଶାରୀରିକ ଶାନ୍ତିଲାଭ ଏବଂ ଜୀବନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ସ୍ୱାଦ ହୃଦ୍‌ବୋଧ କରିପାରିଛି ।

ଜୀବନର ସଂଖ୍ୟାତୀତ ଉପଭୋଗ୍ୟ ବସ୍ତୁରୁ ଯଥାସମ୍ଭବ ଲାଭକରି ତୃପ୍ତ ହେଲେହେଁ ଆଜି ଗୋଟାଏ ଅଭାବ ଅନୁଭବ ଯୋଗୁଁ ମୁଁ ତୀବ୍ର ବେଦନା ପ୍ରାପ୍ତ ହେଉଛି । ଅନ୍ତରରେ ଯେ – ପିଲା ବୟସରେ ସ୍କୁଲ ଛାତ୍ର ଥିବା ଅବସରରେ ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କ ସମବେତରେ ସ୍ଲୋଗାନ୍ କରେ ଗ୍ରାମରୁ ଗ୍ରାମାନ୍ତର ଭ୍ରମଣ କରୁଥିଲୁ – ଷଡେଇକଳା –ଖରସୁଆଁ ଆମର ଦାବି, ଏହି

ଦାବି ଟିକକ ଆଜି ପରିଣତ ବୟସରେ 'ଉତ୍କଳ ପ୍ରସଙ୍ଗ'ର ସାମୟିକ ପାଠକ ହୋଇ ମୋର ମନ ବାହୁନୀ ହୋଇ ଉଠୁଛି ସେଦିନର ସ୍ଲୋଗାନ୍‌ର ବସ୍ତୁ ଟିକକ ଲାଭ କରିବାକୁ । କାରଣ ସାରସ୍ୱତ ମଠ (ହାଲସହର, ୨୪ପ୍ରଗଣା, ପଶ୍ଚିମବଙ୍ଗ)ର ଅନ୍ତେବାସୀ ଥିବା ବେଳେ ବିହାରର ସିଂହଭୂମ ଜିଲ୍ଲା, ଖରସୁଆଁର ଦୁଇଟି ପିଲା ମଠର ସଂସ୍କୃତ କଲେଜରେ ଛାତ୍ର ଥିଲେ – 'ନୀଳକମଳ ତିୱାରୀ' ଓ 'ସୁଶାନ୍ତ' ସ୍ପଷ୍ଟ ଓଡ଼ିଆଭାଷୀ । ନୀଳ କମଳ ପିଲାଟି ତା'ର ପିତା ସ୍ୱର୍ଗତ ଶ୍ରୀନିବାସ ତିୱାରୀଙ୍କ ପରେ ଏକ ମୁଖରେ ଓଡ଼ିଆ, ବଙ୍ଗଳା ଓ ହିନ୍ଦୀରେ କେତେ ଜଗନ୍ନାଥଙ୍କ ଜଣାଣ ଓ ଅନ୍ୟାନ୍ୟ ରାଗ ସଂଗୀତ ସୁମଧୁର ସ୍ୱରରେ ଗାନ କରି ଶ୍ରୋତାବର୍ଗଙ୍କୁ ଚମକୃତ କରୁଥିଲା । ପିଲାଟି କହୁଥାଏ ଆମେ ଓଡ଼ିଶାର ତ୍ରିପାଠୀ ପଦବୀଧାରୀ ବ୍ରାହ୍ମଣ । ମାତ୍ର ବିହାରର ପ୍ରଦେଶବାସୀ ହୋଇ ତିୱାରୀ ପଦବୀ ପ୍ରାପ୍ତ ହୋଇଛୁ । ଏହା ଶୁଣି ମୋ ଛାତି ଫାଟି ହୋଇଯାଉଥାଏ– ମୋର ମନେ ପଡିଯାଉଥାଏ – ସେହି ଛାତ୍ର ଅବସ୍ଥାରେ ଆନ୍ଦୋଳନ ଓ ସ୍ଲୋଗାନ କଥା – ମନେ ମନେ କହୁଥାଏ, – ହାୟରେ ଆମ ଉତ୍କଳର ଧନ ଏମାନେ – ଆଜି ଆମେ ଏମାନଙ୍କୁ ଆମ ଉତ୍କଳର ସନ୍ତାନ ବୋଲି ଭାବି କୋଳେଇ ଟାଣି ଆଣିବାର ଶକ୍ତି ନାହିଁ । କାହିଁକି ଭାରତ ସରକାର ଏହି ସିଂହଭୂମ ପିଲା, ଷଢେଇକଳା, ଖରସୂଆଁ ଆମ ଉତ୍କଳ ଭୂମିରୁ ଛଡାଇ ନେଲେ ? ପ୍ରାଣ କାନ୍ଦି ଉଠେ । ମୋତେ କେହି ଏ ପ୍ରାଣର ହାହାକାର ଶାନ୍ତି କରିପାରୁ ନାହିଁ । କେବଳ ସେହି ଠାକୁରଙ୍କୁ ଜଣାଇବା ଛଡା ମୋର ଆଉ ସାନ୍ତ୍ୱନା କାହିଁ ?

---

ଅନ୍ତେବାସୀ ସେବକ
ଓଳିନ୍ଦା ଶ୍ରୀ ଶ୍ରୀ ନିଗମାନନ୍ଦ ସାରସ୍ୱତ ଆଶ୍ରମ
ଶାନ୍ତିନଗର, ଜଳେଶ୍ୱର,ବାଲେଶ୍ୱର



# ଅନନ୍ୟ ଯୋଗୀ ଗାନ୍ଧିଜୀ

ଡକ୍ଟର ତୃପ୍ତି ମିଶ୍ର

ଇତିହାସର ରଥଚକ୍ର ତଳେ ପ୍ରାଚୀନତାର ଅନେକ ସଂକେତ ନିଶ୍ଚିହ୍ନ ହୋଇଯିବାର ଦୃଷ୍ଟାନ୍ତ ବିରଳ ନୁହେଁ । ପ୍ରାଚୀନ ଭାରତର ଇତିହାସର ଉନ୍ମୋଚନ କଲେ, ତାହା ଯେ କେତେ ଘଟଣାବହୁଳ, ସହଜରେ ଅନୁମେୟ । ଯେଉଁ ବସ୍ତୁ ବା ତଥ୍ୟର କିଛି ବାସ୍ତବତା ବା ସତ୍ୟତା ଉପଲବ୍ଧ କରାଯାଏ, ତାହା ଚିରଦିନ ପାଇଁ ମାନବ ସମାଜର ସ୍ମରଣୀୟ, ପରିଶୀଳନୀୟ, ଅଧ୍ୟୟନ ଯୋଗ୍ୟ ତଥା ଗବେଷଣାର ଉତ୍ସ ହୋଇରହିଥାଏ । ପୁଣ୍ୟଭୂମି ଭାରତରେ ଏହିପରି ଅନେକ ଘଟଣାବଳୀ, ତଥ୍ୟ ଓ ବ୍ୟକ୍ତି ବିଶେଷଙ୍କ ଆବିର୍ଭାବ ହୋଇଛି, ଯେଉଁମାନଙ୍କର ଜୀବନ ଦୃଷ୍ଟାନ୍ତର ପୃଷ୍ଠା ଯେତେ ଉନ୍ମୋଚନ କଲେ ମଧ୍ୟ ତାହାରି ପରିସମାପ୍ତି ହେବ ନାହିଁ । ସାଧୁସନ୍ଥମାନଙ୍କର ଆବାସସ୍ଥଳୀ ଭାବେ ଓ ଜ୍ଞାନର ଭଣ୍ଡାର ଭାବେ ଭାରତର ପ୍ରାକ୍ ବିଦ୍ୱାନମାନେ ବିଶ୍ୱ ଦରବାରରେ ଖ୍ୟାତି ଅର୍ଜନ କରିଛନ୍ତି । ସେଥିପାଇଁ ହିଁ ଭାରତ ବିଶ୍ୱଗୁରୁ ବା ଜଗତ୍‌ଗୁରୁ ଭାବେ ପ୍ରତିଷ୍ଠିତ, ଯେପରି ଭାରତ ଭୂଖଣ୍ଡର ଅନେକ ବ୍ୟକ୍ତିତ୍ୱ ସମଗ୍ର ବିଶ୍ୱ ଦରବାରରେ ବର୍ତ୍ତମାନ ସୁଦ୍ଧା ସ୍ମରଣୀୟ ହୋଇ ରହିଛନ୍ତି । ସେମାନଙ୍କର ଜୀବନଚର୍ଯ୍ୟାରୁ ସେମାନେ ଜଣେ ଜଣେ ଶ୍ରେଷ୍ଠଯୋଗୀ ବା ସନ୍ନ୍ୟାସୀ ରୂପେ ପ୍ରତିଭାତ ହୁଅନ୍ତି ।



ଗୀତାରେ ଉଲ୍ଲେଖ ଅଛି, ଯେଉଁ ପୁରୁଷ କର୍ମଫଳକୁ ଆଶ୍ରୟ ନକରି କର୍ତ୍ତବ୍ୟ କର୍ମ କରନ୍ତି, ସେ ସନ୍ନ୍ୟାସୀ ତଥା ଯୋଗୀ ଅଟନ୍ତି । କେବଳ ଅଗ୍ନି ତ୍ୟାଗ କରିଥିବା ଲୋକ ସନ୍ନ୍ୟାସୀ ନୁହଁନ୍ତି କି କେବଳ କର୍ମ ତ୍ୟାଗ କରିଥିବା ଲୋକେ ଯୋଗୀ ନୁହଁନ୍ତି । 'ଶ୍ରୀମଦ୍ ଭାଗବତ ଗୀତା'ର ଉପରୋକ୍ତ ଉକ୍ତିଟି ମହାତ୍ମା ଗାନ୍ଧୀଙ୍କ ଜୀବନର ପ୍ରତିଟି ପଦକ୍ଷେପରେ ଦୃଷ୍ଟିଗୋଚର ହୁଏ । ଯୋଗ ଏପରି ଏକ କୌଶଳ ଯାହା ଇନ୍ଦ୍ରିୟଜାତ ଆଲୋଡନକୁ ସ୍ତମ୍ଭିତ କରି ମନୁଷ୍ୟକୁ ବିଶ୍ୱ ଚେତନା ସହିତ କ୍ରମଶଃ ଏକୀଭୂତ ହେବା ପାଇଁ ଅଧିକରୁ ଅଧିକ ସୁଯୋଗ ଦିଏ । ଗାନ୍ଧିଜୀ ଏହି କୌଶଳକୁ ହିଁ ଅବଲମ୍ବନ

କରିଥିଲେ । ଯୋଗୀଟିଏ ଆସକ୍ତି ହୀନ, ସଂଯମୀ, ନିରାଡମ୍ବର, ସତ୍ୟବାଦୀ, ପରିଶ୍ରମୀ, ବ୍ରହ୍ମଚାରୀ, ନିର୍ଭୀକ ତଥା ସମସ୍ତ ଧର୍ମ ପ୍ରତି ସମାନ ଭାବେ ସମ୍ମାନ ପ୍ରଦର୍ଶନ କରିଥାଏ । ଗାନ୍ଧିଜୀ ତାଙ୍କ ଆଚରଣରେ ମଧ୍ୟ ସେହିପରି ଏକାଦଶ ବ୍ରତ ପାଳନ କରି ପ୍ରତ୍ୟହ ପ୍ରାର୍ଥନା ସମୟରେ ମନ୍ତ୍ରର ଉଚ୍ଚାରଣ କରୁଥିଲେ । ଯଥା 'ଅହିଂସା, ସତ୍ୟ ମସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ, ଦୈହିକ ପରିଶ୍ରମ, ରସନା ସଂଯମ, ନିର୍ଭୀକତା, ସବୁ ଧର୍ମ ପ୍ରତି ସମ୍ମାନ ପ୍ରଦର୍ଶନ, ସ୍ୱଦେଶୀ ଏବଂ ଅସ୍ପୃଶ୍ୟତା ପରିହାର ।' ଯୋଗୀ ତଥା ସାଧୁସନ୍ଥମାନଙ୍କର ଉଚ୍ଚାରଣ ଓ ଆଚରଣରେ ସାମ୍ୟତା ଥାଏ, ଯାହାକି ଗାନ୍ଧୀଙ୍କର ଜୀବନରେ ପରିଲକ୍ଷିତ ହୋଇଥିଲା । ତେଣୁ ତାଙ୍କ ଜୀବନକାଳରେ ସେ ନିଜକୁ ଜଣେ ଶ୍ରେଷ୍ଠ ଯୋଗୀ ତଥା ସନ୍ନ୍ୟାସୀ ରୂପେ ପ୍ରତିପାଦିତ କରିପାରିଥିଲେ ।

ଗାନ୍ଧିଜୀଙ୍କର ପରିଧାନ, ବେଶ ପରିପାଟୀରୁ ସେ ଜଣେ ନିରାସକ୍ତ ବ୍ୟକ୍ତି ତଥା ତାଙ୍କର ଜୀବନ ଚରିତ୍ରକୁ ଅଧ୍ୟୟନ କଲେ ସେ ଜଣେ ନିରାଡମ୍ବର ବ୍ୟକ୍ତିତ୍ୱ ଭାବେ ନିଃସନ୍ଦେହରେ ପରିଗଣିତ ହେଉଥିଲେ । ମହାତ୍ମା ଗାନ୍ଧୀ ତାଙ୍କର ଖାଦ୍ୟରେ ରୁଟି, କିଛି ସିଝା ପରିବା, କିଛି କଞ୍ଚାପରିବା ଓ ଫଳ ଗ୍ରହଣ କରୁଥିଲେ ।  ଏଥିରୁ ତାଙ୍କର ଖାଦ୍ୟରେ ସଂଯମତାର ଆଭାସ ମିଳୁଥିଲା । ୧୯୩୫ ମସିହା ଅଗଷ୍ଟ ମାସରେ ମହାନ୍ ସନ୍ଥ ପରମହଂସ ଯୋଗାନନ୍ଦ ଓ୍ୱାର୍ଦ୍ଧାରେ ମହତ୍ମାଙ୍କୁ ଭେଟିଥିଲେ । ମହାତ୍ମା ନିମ୍ବପତ୍ର ବଟାକୁ ବିକାର ବିହୀନ ରୂପେ ଖାଉଥିବାର ଦେଖି ପରମହଂସ ଯୋଗାନନ୍ଦ ବୁଝିଗଲେ ଯେ, ଇଚ୍ଛା ଅନୁଯାୟୀ ମନକୁ ଇନ୍ଦ୍ରିୟ ବୋଧରୁ ଅଲଗା କରିପାରିବାର କ୍ଷମତା ମହାତ୍ମାଙ୍କ ନିକଟରେ ଅଛି, ଯାହାକି ବିନା ନିଶ୍ଚେତକରେ ତାଙ୍କର ଆପେଣ୍ଡିକ୍ସ ଅପେରସନରୁ ପରିଦୃଷ୍ଟ ହୁଏ ।

ପ୍ରତି ସୋମବାର ଦିନ ସାପ୍ତାହିକ ମୌନବ୍ରତ ପାଳନ କରି ସେ ଜଣେ ସଫଳ ଯୋଗୀର ପରିଚୟ ପ୍ରଦାନ କରିଥିଲେ । ମହାତ୍ମା ଗୃହସ୍ଥ ହୋଇଥିଲେ ମଧ୍ୟ, ତାଙ୍କର ଚାରୋଟି ସନ୍ତାନ ଉତ୍ପତ୍ତି ପରେ ଉଭୟ କସ୍ତୁରବା ଓ ଗାନ୍ଧିଜୀ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା ପାଇଁ ପ୍ରତିଜ୍ଞା କରିଥିଲେ । ମହାତ୍ମାଙ୍କ ଜୀବନର ଏକ ସତ୍ୟର ରହସ୍ୟକୁ ସୂଚେଇ ଦେବାକୁ ଯାଇ ସିଏ ନିଜେ କୁହନ୍ତି ଯେ, 'ବହୁ ବର୍ଷ ପୂର୍ବେ, ମୋର ଚିଠିପତ୍ରଗୁଡ଼ିକର ଦେଖାଶୁଣା କରିବାପାଇଁ ସମୟ ପାଇବାକୁ ସପ୍ତାହରେ ଗୋଟିଏ ଦିନ ମୁଁ ମୌନ ଦିବସ ରୂପେ ପାଳନ କରିବା ଆରମ୍ଭ କରିଦେଇଥିଲି । କିନ୍ତୁ ବର୍ତ୍ତମାନ ସେହି ୨୪ଘଣ୍ଟା ମୋର ଗୋଟିଏ ପ୍ରଧାନ ଆଧ୍ୟାତ୍ମିକ ଆବଶ୍ୟକତା ହୋଇଉଠିଛି । ସାମୟିକ ମୌନ ବ୍ରତ ପାଳନ ଯନ୍ତ୍ରଣାଦାୟକ ନୁହେଁ, ବରଂ ଏକ ଆଶୀର୍ବାଦ ।'

ଗୋ ରକ୍ଷା ପ୍ରତି ଗାନ୍ଧିଜୀଙ୍କର ଦୃଷ୍ଟିଭଙ୍ଗୀରୁ ଜଣାପଡେ ଯେ, ଗାଇ ସମୁଦାୟ ମାନବେତର ଜଗତକୁ ବୁଝାଏ, ଯାହା ମାଧ୍ୟମରେ ମନୁଷ୍ୟର ସହାନୁଭୂତି, ସ୍ୱ–ଜାତି ଛଡା ଅନ୍ୟାମାନଙ୍କ ଆଡକୁ ପ୍ରସାରିତ ହୁଏ । ମନୁଷ୍ୟ ସମସ୍ତ ଜୀବନ୍ତ ପ୍ରାଣୀମାନଙ୍କ ସହିତ ନିଜର ଐକ୍ୟ ଗାଇ ମାଧ୍ୟମରେ ଉପଲବ୍ଧି କରିପାରେ । ପ୍ରାଚୀନ ଋଷିମାନେ ଦେବତ୍ୱ ଆରୋପ କରି ପୂଜା ପାଇଁ ଗାଇକୁ କାହିଁକି ବାଛିଥିଲେ, ତାହା ମହାତ୍ମାଙ୍କୁ ବେଶ୍ ଭଲଭାବେ ଜଣାଥିଲା । ଭାରତରେ ଗାଇ ହେଉଛି ସର୍ବୋତ୍କୃଷ୍ଟ ଦୃଷ୍ଟାନ୍ତ, ସେ ଦିଏ ପ୍ରାଚୁର୍ଯ୍ୟ । ସେ ଯେ ଖାଲି ଦୁଧ ଦିଏ, ତାହା ନୁହେଁ କୃଷି କାର୍ଯ୍ୟ ତା' ଯୋଗୁଁ ସମ୍ଭବ ହୁଏ । ଗାଇ ହେଲା ଅନୁକମ୍ପାର ଏକ କାବ୍ୟ ରୂପ, ଏହି ଶାନ୍ତ ପ୍ରାଣୀଠାରେ ମନୁଷ୍ୟ ଦେଖେ ଅନୁକମ୍ପା । କୋଟି କୋଟି ଲୋକଙ୍କ ପାଇଁ ସେ ଦ୍ୱିତୀୟ ମାତା । ଗୋ–ରକ୍ଷାର ଅର୍ଥ ହେଲା, ଭଗବାନଙ୍କର ସମସ୍ତ ମୂକ ଜଗତର ରକ୍ଷା । ସୃଷ୍ଟିର ନିମ୍ନସ୍ତରର ପ୍ରାଣୀମାନଙ୍କର ଆବେଦନ ଅଧିକ ଶକ୍ତିଶାଳୀ, କାରଣ ତାହା ବାକ୍‌ଶକ୍ତି  ବିହୀନ । ଉପରୋକ୍ତ ଭାବଧାରା 'ସର୍ବ ପ୍ରାଣୀଷୁ ସମଭାବାପନ୍ନ'କୁ ଆଧାର କରି ଗାନ୍ଧିଜୀ ନିଜ ଆଶ୍ରମ ପ୍ରାଙ୍ଗଣରେ ଏକ ଗୋଶାଳା କରି ଗୋ ସେବାରେ ନିଜକୁ ନିୟୋଜିତ କରିଥିଲେ, ଯାହାକି ଜଣେ ଶ୍ରେଷ୍ଠ ଯୋଗୀ ନିକଟରେ ପରିଦୃଷ୍ଟ ।

ଗାନ୍ଧିଜୀଙ୍କର ଅସୀମ ନମ୍ରତା, କରୁଣାମୟ ସହାୟତା, ଉଷ୍ମ ସୂର୍ଯ୍ୟାଲୋକ ସଦୃଶ ସର୍ବସାଧାରଣଙ୍କୁ ଆଚ୍ଛାଦିତ କରିଥିଲା । ସେ ଥିଲେ ଭାରତର ଜଣେ ସଚ୍ଚା ରାଷ୍ଟ୍ରଦୂତ, ଯେକି

ପ୍ରାଚୀନ ଭାରତର ଦିବ୍ୟଜ୍ଞାନର ବାହକ ରୂପେ ସାରା ପୃଥିବୀରେ ଅହିଂସାର ମନ୍ତ୍ର ପ୍ରଚାର କରିଥିଲେ । ବର୍ତ୍ତମାନର ବିଶୃଙ୍ଖଳିତ ପୃଥିବୀ ସେହି ମହାନ୍ ଯୋଗୀଙ୍କର ପଦାଙ୍କ ଅନୁସରଣ କରିବା ଏକାନ୍ତ ଆବଶ୍ୟକ ତଥା ଅପରିହାର୍ଯ୍ୟ ।

ତାଙ୍କର ନିଃସ୍ୱାର୍ଥପର ଜୀବନର ସମସ୍ତ ତ୍ୟାଗ ଶେଷ ମୁହୂର୍ତ୍ତରେ ତାଙ୍କର ସ୍ନେହପୂର୍ଣ୍ଣ ଅଭିବ୍ୟକ୍ତିକୁ ସମ୍ଭବପର କରିଥିଲା । ମହାତ୍ମାଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଆଲବର୍ଟ ଆଇନ୍‌ଷ୍ଟାଇନ୍ ଲେଖିଥିଲେ 'ଭବିଷ୍ୟତରେ ଅନେକ ପୁରୁଷ ଯାଏଁ ଲୋକମାନେ ବିଶ୍ୱାସ କରିବେ ନାହିଁ ଯେ, ରକ୍ତ ମାଂସ ଦେହଧାରୀ ଏଭଳି ଜଣେ ଲୋକ ପୃଥିବୀ ପୃଷ୍ଠରେ ଚାଲୁଥିଲା ।' କୌଣସି ନିର୍ଦ୍ଦିଷ୍ଟ ମହତ୍ ଉଦ୍ଦେଶ୍ୟ– ସାଧନ ପାଇଁ ଯେଉଁ ମହାପୁରୁଷମାନେ ଏହି ପୃଥିବୀକୁ ଆସନ୍ତି, ସେମାନଙ୍କର ଜୀବନ ସାଙ୍କେତିକ ଘଟଣାରେ ପରିପୂର୍ଣ୍ଣ । ଭାରତରେ ଏକତା ସ୍ଥାପନ କରିବା ପାଇଁ ଗାନ୍ଧିଜୀଙ୍କର ନାଟକୀୟ ମୃତ୍ୟୁ, ଏକତାର ଅଭାବରେ ଛିନ୍ନଭିନ୍ନ ପୃଥିବୀର ପ୍ରତ୍ୟେକ ମହାଦେଶ ସମ୍ମୁଖରେ ତାଙ୍କର ବାଣୀକୁ ଉଜ୍ଜ୍ୱଳ ଭାବରେ ପ୍ରକାଶ କରିଛି । ଅହିଂସା ଲୋକମାନଙ୍କ ମଧ୍ୟରେ ପ୍ରବେଶ କରିଛି ଏବଂ ଏହା ବଞ୍ଚି ରହିବ । ପୃଥିବୀରେ ଶାନ୍ତି ଆଣିବା ପାଇଁ ଏହା ହେଉଛି ଅଗ୍ରଦୂତ ।

ଯେଉଁ ମହାମନୀଷୀମାନେ ନିଜର ନାମକୁ ଇତିହାସର ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି, ସେମାନଙ୍କ ମଧ୍ୟରୁ ମହାତ୍ମା ଜଣେ ଅକଳନୀୟ, ଅକଳ୍ପନୀୟ ମୂଲ୍ୟର ବିରଳ ରତ୍ନ ତୁଲ୍ୟ ଅଟନ୍ତି । ମହାତ୍ମା ଆମ ରାଷ୍ଟ୍ରର ପିତା ପ୍ରିୟ ବାପୁଜୀ । ଭାରତରେ ମହାତ୍ମାଙ୍କର ଉପସ୍ଥିତି ଥିଲା ଘୋର ତିମିରାସନ୍ନ ଅନ୍ଧକାର ମଧ୍ୟରେ ଏକ ଉଜ୍ଜ୍ୱଳତମ ଆଭାର ଚମକ ସଦୃଶ । ମାନବ ସମାଜର ଯଥାର୍ଥ ଆବଶ୍ୟକତାର ପୂର୍ତ୍ତି ପାଇଁ ଏପରି ମହାମାନବମାନଙ୍କର ଆବିର୍ଭାବ ହୋଇଥାଏ । ତେଣୁ ମହାତ୍ମା ଗାନ୍ଧୀ କେବଳ ଭାରତରେ ନୁହେଁ, ବରଂ ସମଗ୍ର ବିଶ୍ୱ ଦରବାରରେ ବର୍ତ୍ତମାନ ସୁଦ୍ଧା ଚିରସ୍ମରଣୀୟ ହୋଇ ରହିଛନ୍ତି ଓ ରହିଥିବେ ମଧ୍ୟ । ସେ ଭାରତବର୍ଷର ଗୌରବ ତଥା ପ୍ରାଚୀନ ମୁନିଋଷିମାନଙ୍କର ଜଣେ ଆଦର୍ଶ ପ୍ରତିନିଧି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅଧ୍ୟାପିକା (ସଂସ୍କୃତ ବିଭାଗ)
କିସ୍ ମାନିତ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



# ଆମ ରାଜ୍ୟରେ ବିଦ୍ୟୁତ୍ ସେବା କ୍ଷେତ୍ରରେ ସେସୁର ଭୂମିକା

**ଗୋଲକ ବିହାରୀ ସାହୁ**

ଏବେ ଆମ ଦେଶରେ ବିଦ୍ୟୁତ୍ ଉତ୍ପାଦନ ପାଇଁ ସମୁଦାୟ ୩.୪୪ ଲକ୍ଷ ମେଗାୱାଟ କ୍ଷମତାର ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରମାନ ରହିଛି ଓ ୧.୫୦ କୋଟି କି.ମି. ବିଦ୍ୟୁତ୍ ଲାଇନ୍ ରହିଛି । ଦେଶରେ ଥିବା ୫.୯୮ ଲକ୍ଷ ଗ୍ରାମରୁ ୫.୯୧ ଲକ୍ଷ ଗ୍ରାମ୍ୟ ବିଦ୍ୟୁତିକରଣ ହୋଇଛି । ଆମ ରାଜ୍ୟରେ ୪୭,୬୭୭ ରାଜସ୍ୱ ଗ୍ରାମର ବିଦ୍ୟୁତିକରଣ କାର୍ଯ୍ୟ ସରିଛି । ଆମେ ଜାଣିବା ଉଚିତ୍ ଯେ ଭାରତ ସ୍ୱାଧୀନତା ସମୟରେ ଭାରତର ମୁଣ୍ଡପିଛା ହାରାହାରି ବିଦ୍ୟୁତ୍ ବ୍ୟବହାର ମାତ୍ର ୧୬ ୟୁନିଟ୍ ଥିଲା, ଯାହା ୨୦୧୫ ମସିହା ବେଳକୁ ବଢି ବଢି ୧୦୧୦ ୟୁନିଟ୍, ୨୦୧୫–୧୬ ଆର୍ଥିକ ବର୍ଷରେ ୧୦୭୫ ୟୁନିଟ୍ ଏବଂ ୨୦୧୭–୧୮ରେ ଏହା ୧୧୪୯ ୟୁନିଟ୍‌କୁ ବଢ଼ି ଯାଇଛି । ଆମ ରାଜ୍ୟରେ ବର୍ତ୍ତମାନ ପ୍ରାୟ ୭୨ ଲକ୍ଷ ବିଦ୍ୟୁତ୍ ଗ୍ରାହକ ଅଛନ୍ତି ଓ ହାରାହାରି ଦୈନିକ ୪୦୦୦ରୁ ୪୩୦୦ ମେଗାୱାଟ ବିଦ୍ୟୁତ୍ ଚାହିଦା ରହିଛି । କେନ୍ଦ୍ର ସରକାରଙ୍କ ଊନବିଂଶ ବିଦ୍ୟୁତ୍ ଶକ୍ତି ସର୍ଭେ ରିପୋର୍ଟ୍ ଅନୁସାରେ ଏହି ଚାହିଦା ୨୦୨୧, ୨୦୨୬, ୨୦୩୧, ୨୦୩୭ ମସିହା ବେଳକୁ ଯଥାକ୍ରମେ ୫୩୪୦, ୬୨୭୩, ୭୨୩୨ ଓ ୮୩୯୨ ମେଗାୱାଟରେ ପହଞ୍ଚିବ । ବର୍ତ୍ତମାନ ଓଡ଼ିଶାରେ ସମୁଦାୟ ୮୫୦୦ ମେଗାୱାଟ୍ କ୍ଷମତାର ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରମାନ ରହିଛି ।

ଓଡ଼ିଶା ବିଦ୍ୟୁତ୍ ସଂସ୍କାର ଆଇନ୍, ୧୯୯୫ର ପ୍ରଣୟନ ପରେ ବିଦ୍ୟୁତ୍ ଗ୍ରାହକମାନଙ୍କୁ ଉନ୍ନତ ମାନର ସେବା ଯୋଗାଇ ଦେବା ସହ ବିଦ୍ୟୁତ୍ ଉତ୍ପାଦନ, ପରିବହନ ଓ ପରିବଣ୍ଟନ ସଂସ୍ଥାମାନଙ୍କର ଆର୍ଥିକ ଉନ୍ନତି ମଧ୍ୟ ହୋଇପାରିଛି । ସାମାଜିକ ଓ ଅର୍ଥନୈତିକ ଅଭିବୃଦ୍ଧିକୁ ଦୃଷ୍ଟିରେ ରଖି, ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡର କିଛି ଅଂଶ ୧୯୯୭ ମସିହାର ସେସ୍‌କୋ ଏବଂ ପରବର୍ତ୍ତୀ ସମୟରେ ''ସେସୁ'' ନାମରେ ନାମିତ ହୋଇ ଓଡ଼ିଶାର କେନ୍ଦ୍ରୀୟ ଭାଗରେ ଥିବା ୯ଟି ଜିଲ୍ଲା ଯଥା କଟକ, ପୁରୀ, ଢେଙ୍କାନାଳ, ଜଗତ୍‌ସିଂହପୁର, କେନ୍ଦ୍ରାପଡ଼ା, ଅନୁଗୁଳ, ଖୋର୍ଦ୍ଧା, ନୟାଗଡ ଏବଂ ଯାଜପୁରର କିଛି ଅଂଶ ଇତ୍ୟାଦିର ସମୁଦାୟ ୨୯,୩୫୪ ବର୍ଗ କିଲୋମିଟର ଅଞ୍ଚଳରେ ପ୍ରାୟ ୧ କୋଟି ୫୦ ଲକ୍ଷ ଲୋକ ସଂଖ୍ୟାକୁ ୨୨.୩୪ ଲକ୍ଷରୁ ଊର୍ଦ୍ଧ୍ୱ ବିଦ୍ୟୁତ୍ ଗ୍ରାହକଙ୍କ ମାଧ୍ୟମରେ ବିଦ୍ୟୁତ୍ ସେବା ଯୋଗାଇ ଦେଉଛି । ବର୍ତ୍ତମାନ ଏମାନଙ୍କର ସଂଯୋଜିତ ଲୋଡ୍ ପ୍ରାୟ ୪୬.୬୧ ଲକ୍ଷ କିଲୋୱାଟ୍ ଅଟେ । ସେସୁରେ ଉପଯୋଗ ହେଉଥିବା ବିଦ୍ୟୁତ୍ ଶକ୍ତିରୁ ୨୫% ଶିଳ୍ପ ପାଇଁ, ୨୦% ବ୍ୟବସାୟିକ ସଂସ୍ଥା ପାଇଁ, ୪୫% ଘରୋଇ ବ୍ୟବହାର ଏବଂ ୧୦% ଅନ୍ୟାନ୍ୟ ବ୍ୟବହାର ପାଇଁ ହୋଇଥାଏ । କେନ୍ଦ୍ର ସରକାର ଏବଂ ରାଜ୍ୟ ସରକାର ସମସ୍ତେ ବିଦ୍ୟୁତ୍ କ୍ଷେତ୍ରରେ ଉନ୍ନତି ଆଣି, ସମସ୍ତଙ୍କ ପାଇଁ ବିଦ୍ୟୁତ୍ ସେବା କାର୍ଯ୍ୟକ୍ରମକୁ ସଫଳ ରୂପାୟନ କରିବାରେ ଚେଷ୍ଟିତ । ଏହାର ଫଳସ୍ୱରୂପ ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତିକରଣ ଯୋଜନା, ବିଜୁ ଗ୍ରାମ୍ୟ ଜ୍ୟୋତି ଯୋଜନା, ସହରାଞ୍ଚଳ ପାଇଁ ଯୋଜନା, ସୌଭାଗ୍ୟ ଯୋଜନା, ଦିନ୍‌ଦୟାଲ ଉପାଧ୍ୟାୟ ଗ୍ରାମ୍ୟ ଜ୍ୟୋତି ଯୋଜନାଗୁଡିକ ସହାୟତାରେ ବିଦ୍ୟୁତ୍ ସଂଯୋଗ ଦିଆଯାଉଛି । ବିଦ୍ୟୁତ୍ ଆଇନ୍, ୨୦୦୩କୁ ସଂଶୋଧନ କରାଯାଇ ବିଦ୍ୟୁତ୍

ଚୋରି ଏବଂ ଅପଚୟକୁ ରୋକିବା ପାଇଁ କଠୋର ପଦକ୍ଷେପ ନିଆଯାଇ ଆଇନ୍‌ସମ୍ମତ ଦଣ୍ଡବିଧାନ ବ୍ୟବସ୍ଥାକୁ କଡ଼ାକଡ଼ି କରାଯାଇଛି । ବିଦ୍ୟୁତ୍ ଗ୍ରାହକ ସେବାରେ ଉନ୍ନତି ଆଣିବା ପାଇଁ କେନ୍ଦ୍ରୀୟ ବିଦ୍ୟୁତ୍ ଅଧିକାରୀ ଏବଂ ଓଡ଼ିଶା ବିଦ୍ୟୁତ୍ ନିୟାମକ ଆୟୋଗ ବିଭିନ୍ନ ନୀତି ନିୟମମାନ ପ୍ରଣୀତ କରି ଏହାକୁ ଲାଗୁ କରାଇବାର ବ୍ୟବସ୍ଥା କରିଛନ୍ତି ।

### ବିଦ୍ୟୁତ୍ ଗ୍ରାହକ ସଂଖ୍ୟାରେ ବୃଦ୍ଧି

୧୯୯୯–୨୦୦୦ରେ ସେସୁର ସୁମଦାୟ ୬.୨୭ ଲକ୍ଷ ବିଦ୍ୟୁତ୍ ଗ୍ରାହକ ଥିବା ସମୟରେ ୩୧.୦୩.୨୦୧୮ ସୁଦ୍ଧା ତାହା ବଢ଼ି ୨୨.୩୪ ଲକ୍ଷରେ ପହଞ୍ଚିଛି, ଯାହାକି ପ୍ରାୟ ୩.୫ ଗୁଣ ହୋଇଛି । ୨୦୧୮ ଶେଷ ସୁଦ୍ଧା ଏହି ଗ୍ରାହକ ସଂଖ୍ୟା ଆଶାତୀତ ଭାବରେ ବଢ଼ି ପ୍ରାୟ ୨୫ ଲକ୍ଷରେ ପହଞ୍ଚିବ ।

### ବିଦ୍ୟୁତ୍ ଯନ୍ତ୍ରପାତି ସଂଖ୍ୟାରେ ବୃଦ୍ଧି

ବିଦ୍ୟୁତ୍ ଗ୍ରାହକମାନଙ୍କୁ ଉନ୍ନତ ସେବା ଯୋଗାଇ ଦେବା ପାଇଁ ନୂତନ ବିଦ୍ୟୁତ୍ ଲାଇନ୍, ବିଦ୍ୟୁତ୍ ସବ୍‌ଷ୍ଟେସନ, ଟ୍ରାନସ୍‌ଫର୍ମର ଇତ୍ୟାଦି ସ୍ଥାପନ ହେବା ଯୋଗୁଁ ଗ୍ରାହକମାନଙ୍କର ଲୋ–ଭୋଲ୍‌ଟେଜ୍ ସମସ୍ୟାରେ ଅନେକ ସୁଧାର ହେବା ସହିତ ଟ୍ରାନ୍‌ସଫର୍ମର ପୋଡ଼ି ମଧ୍ୟ କମିଯାଇଛି । ୧୯୯୯–୨୦୦୦ରେ ଥିବା ୨,୦୬୮ କି.ମି. ୩୩ କେଭି ଏବଂ ୧୨,୪୭୬ କି.ମି. ୧୧ କେଭି ବିଦ୍ୟୁତ୍ ଲାଇନ୍ ବଢ଼ି ୨୦୧୮ ମାର୍ଚ୍ଚ ସୁଦ୍ଧା ଯଥାକ୍ରମେ ୩୩୬୦ କି.ମି. ଏବଂ ୩୪,୦୬୫ କି.ମି.ରେ ପହଞ୍ଚିପାରିଛି । ସେହିପରି ୧୭,୨୯୪ କି.ମି. ଲୋ–ଟେନସନ ବିଦ୍ୟୁତ୍ ଲାଇନ୍ ବଢ଼ି ଆଜି ୫୦୨୩୩ କି.ମି ରେ ପହଞ୍ଚିପାରିଛି । ସେତେବେଳେ ଥିବା ମାତ୍ର ୨୫୫ଟି ଉଚ୍ଚ କ୍ଷମତା ବିଶିଷ୍ଟ ଟ୍ରାନ୍‌ସଫର୍ମର ସଂଖ୍ୟା ଆଜି ବଢ଼ି ୫୬୬କୁ ଆସିଛି ଏବଂ ଏଗୁଡ଼ିକ ୨୫୧ଟି ପ୍ରାଇମେରି ସବ୍‌ଷ୍ଟେସନରେ ସଂସ୍ଥାପିତ ହୋଇଛି । ବିଦ୍ୟୁତ୍ ବଣ୍ଟନ ଟ୍ରାନସଫର୍ମର ସଂଖ୍ୟା ୧୨.୩୮୪ରୁ ବଢ଼ି ୬୩୬୪୯ରେ ପହଞ୍ଚିପାରିଛି । କ୍ୟାପେକ୍ସ ଯୋଜନା ମାଧ୍ୟମରେ ସେସୁ ଅଞ୍ଚଳରେ ୨୮୯ କୋଟି ଟଙ୍କା ଖର୍ଚ୍ଚ କରାଯାଇ ନୂତନ ପ୍ରାଇମେରି ସବ୍‌ଷ୍ଟେସନ, ଶକ୍ତିଭିତ୍ତିକ ଟ୍ରାନ୍ସଫର୍ମର, ବିଦ୍ୟୁତ୍ ବଣ୍ଟନ ଟ୍ରାନ୍ସଫର୍ମର, ୩୩ କେଭି ଏବଂ ୧୧ କେଭି ବିଦ୍ୟୁତ୍ ଲାଇନ୍ ଇତ୍ୟାଦି ନିର୍ମାଣ କାର୍ଯ୍ୟ ଚାଲୁହୋଇଛି । ଏହି ଯୋଜନାରେ ଏପର୍ଯ୍ୟନ୍ତ ୨୪ଟି ୩୩/୧୧ କେ.ଭି. ପ୍ରାଇମେରି ସବ୍‌ଷ୍ଟେସନ ନୂଆ ସ୍ଥାପନ ହେବା ସହ ୧୨୨ଟିର ଉନ୍ନତିକରଣ ହୋଇଛି । ୧୨୫.୫ କି.ମି. ୩୩ କେ.ଭି. ଲାଇନ୍‌ର ନୂତନ ନିର୍ମାଣ ସହ ୭୨୦ କି.ମି ଲାଇନ୍‌ର ଉନ୍ନତିକରଣ ହୋଇଛି । ନୂତନ ଭାବେ ୧୨୯.୫ କି.ମି. ୧୧ କେ.ଭି. ଲାଇନ୍ ନିର୍ମାଣ ସହ ୧୦୦୨ କି.ମି.ର ଉନ୍ନତିକରଣ ଏବଂ ୬୨୬ଟି ନୂଆ ଡିଷ୍ଟ୍ରିବୁସନ ସବ୍‌ଷ୍ଟେସନ ସ୍ଥାପନ ସହ ୨୧୪୫ କି.ମି. ଏ.ବି. କେବୁଲ ଟଣାଯାଇଛି ।

ବିଦ୍ୟୁତ୍ ଗ୍ରାହକ ସଂଖ୍ୟାରେ କ୍ରମ ବୃଦ୍ଧି ସହିତ ସେମାନଙ୍କୁ ନିରାପଦ ଏବଂ ନିର୍ଭରଯୋଗ୍ୟ ବିଦ୍ୟୁତ୍ ସେବା ଯୋଗାଇ ଦେବା ପାଇଁ ସେସୁ ସର୍ବଦା ଚେଷ୍ଟିତ । ଗତ ୨୦୧୭–୧୮ ମସିହାରେ ସେସୁ ଅଞ୍ଚଳରେ ୩୬୯୯ଟି ଟ୍ରାନ୍ସଫର୍ମର ଏବଂ ୧୩ଟି ଶକ୍ତିଭିତ୍ତିକ ଟ୍ରାନ୍ସଫର୍ମର ପୋଡ଼ିଥିଲା, ଯାହାର ମୂଲ୍ୟ ପ୍ରାୟ ୭.୫୪ କୋଟି ଟଙ୍କା ହେବ । ୨୦୧୭–୧୮ ଆର୍ଥିକ ବର୍ଷରେ ସମୁଦାୟ ୬୫୭୯୪ଟି ଡିଫେକ୍ଟିଭ ମିଟର ବଦଳି ସହ ସମୁଦାୟ ୧.୨୮ ଲକ୍ଷ ମିଟର ବସାଯାଇଛି ।

### ବିଦ୍ୟୁତ୍ ବ୍ୟବସାୟିକ ସଫଳତା

୧୯୯୯–୨୦୦୦ରେ ଗ୍ରାହକମାନଙ୍କ ପାଇଁ ଗ୍ରୀଡ୍‌କୋଠାରୁ ୩୬୦୮.୧୦ ମିଲିୟନ ୟୁନିଟ୍ ବିଦ୍ୟୁତ୍ ଶକ୍ତି କିଣାଯାଉଥିବା ସମୟରେ ୨୦୧୭–୧୮ରେ ଏବଂ ୮୪୬୭.୧୭ ମିଲିୟମ ୟୁନିଟ୍‌କୁ ବୃଦ୍ଧି ପାଇଛି, ଯାହାର ମୂଲ୍ୟ ୨୪୦୧.୧୧ କୋଟି ଟଙ୍କା ଅଟେ । ବିଦ୍ୟୁତ୍ ବିଲ୍ ଆଦାୟ ୬୮%ରୁ ବଢି ୯୭%ରେ ପହଞ୍ଚିଛି । ୨୦୧୭–୧୮ରେ ବିଦ୍ୟୁତ୍ ଗ୍ରାହକମାନଙ୍କଠାରୁ ୨୯୭୬.୯୩ କୋଟି ଟଙ୍କା ଦେୟ ଆଦାୟ ହୋଇପାରିଛି, ଯାହାଦ୍ୱାରା ପୂର୍ବରୁ ହେଉଥିବା ବ୍ୟବସାୟିକ ଏବଂ ପରିବର୍ଣ୍ଣନ କ୍ଷତିକୁ ୪୫%ରୁ ୩୨%କୁ ଏବଂ ସାମଗ୍ରିକ ବୈଷୟିକ ଏବଂ ବ୍ୟବସାୟିକ କ୍ଷତିକୁ ୬୨%ରୁ ୩୪%କୁ କମାଇବାରେ ସଫଳତା ମିଳିପାରିଛି ।

୨୦୧୬–୧୭ ତୁଳନାରେ ଏ ବର୍ଷ ପ୍ରତି ୟୁନିଟ୍ ପିଛା ବିଦ୍ୟୁତ୍ ବିଲ୍ ଆଦାୟରେ ୧୩ ପଇସା ଅଧିକ ଆଦାୟ ସଫଳତା ପାଇଛି ।

**ନୂତନ ପଦକ୍ଷେପ**

ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତିକରଣ ଯୋଜନା ମାଧ୍ୟମରେ ସେସୁର ସମସ୍ତ ଗ୍ରାମ ଏବଂ ପଡ଼ାକୁ ବିଦ୍ୟୁତ୍ ଯୋଗାଣ ସହ ସମସ୍ତ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରକୁ ମାଗଣାରେ ବିଦ୍ୟୁତ୍ ସଂଯୋଗ ଦେବା କାର୍ଯ୍ୟ ଆରମ୍ଭ ହୋଇଛି । ୨୦୧୮ ମସିହା ମାର୍ଚ୍ଚ ସୁଦ୍ଧା ସମୁଦାୟ ୧୫୫୮୪ଟି ଗ୍ରାମ୍ୟ ବିଦ୍ୟୁତିକରଣ କରାଯାଇଛି । ଏହାଦ୍ୱାରା ସେସୁ ଅଞ୍ଚଳରେ ବିଦ୍ୟୁତ୍ ଗ୍ରାହକ ସଂଖ୍ୟା ବଢ଼ି ଚାଲିଛି । ଏବେ ଦିନ୍ ଦୟାଲ ଉପାଧ୍ୟାୟ ଗ୍ରାମ୍ୟ ବିଦ୍ୟୁତିକରଣ ଯୋଜନାରେ ଗ୍ରାମାଞ୍ଚଳରେ ବାକି ଥିବା ଘରକୁ ବିଦ୍ୟୁତ୍ ସଂଯୋଗ ଦିଆଯିବ ।

ବିଦ୍ୟୁତ୍ ଗ୍ରାହକମାନଙ୍କୁ ଉପଯୁକ୍ତ ଉନ୍ନତମାନର ସେବା ଦେବା ଉଦ୍ଦେଶ୍ୟରେ ବିଭିନ୍ନ ଗ୍ରାମାଞ୍ଚଳର ବେସରକାରୀ ସଂସ୍ଥା, ମହିଳା ସଂଗଠନ, ଅବସରପ୍ରାପ୍ତ କର୍ମଚାରୀ ସଂଗଠନ ଇତ୍ୟାଦିର ସଭ୍ୟମାନଙ୍କୁ ବିଦ୍ୟୁତ୍ ବିତରଣ ପାଇଁ ଫ୍ରାଞ୍ଚାଇଜ ଜରିଆରେ ଅନ୍ତର୍ଭୁକ୍ତ କରାଯାଇଛି । କେନ୍ଦ୍ର ସରକାରୀ ସଂସ୍ଥା ଆର.ଇ.ସି ସହ ବନ୍ଧିତ ହୋଇ କାର୍ଯ୍ୟରତ ବିଦ୍ୟୁତ୍ କର୍ମଚାରୀ, ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳର ଇଚ୍ଛୁକ ବ୍ୟକ୍ତିମାନଙ୍କୁ ବିଦ୍ୟୁତ୍ ବିତରଣ ସମ୍ବନ୍ଧରେ ପ୍ରଶିକ୍ଷଣ ଦିଆଯାଉଛି । ଇତିମଧ୍ୟରେ ସେସୁରେ କାର୍ଯ୍ୟରତ ୪୦୧୫ କ୍ଷେତ୍ରୀୟ କର୍ମଚାରୀମାନଙ୍କୁ ପ୍ରଶିକ୍ଷଣ ଦିଆଯାଇଛି । ୨୦ଟି ବିଦ୍ୟୁତ୍ ଡ଼ିଭିଜନ ମଧ୍ୟରୁ ୧୪ ଟି ବିଦ୍ୟୁତ୍ ଡ଼ିଭିଜନରେ ବର୍ତ୍ତମାନ ୧୪ଟି ଇନ୍‌ପୁଟ୍‌ଭିତ୍ତିକ କ୍ୟାପେକ୍ସ ମଡ଼େଲ ଫ୍ରାନ୍‌ଚାଇଜ ସଂସ୍ଥା ଓ ୫ଟି ମାଇକ୍ରୋଫ୍ରାଞ୍ଚାଇଜ୍ ବିଦ୍ୟୁତ୍ ସେବା କାର୍ଯ୍ୟରେ ନିୟୋଜିତ ରହି ପ୍ରାୟ ୧୭.୨୬ ଲକ୍ଷ ଗ୍ରାହକଙ୍କୁ ସେବା ଯୋଗାଉଛନ୍ତି । ଏହି ଫ୍ରାଞ୍ଚାଇଜ୍‌ମାନେ ବିଦ୍ୟୁତ୍ ବ୍ୟବସାୟ କରି ଉନ୍ନତମାନର ଗ୍ରାହକ ସେବା ଦେବା ପାଇଁ ଚେଷ୍ଟା ଚଳାଇଛନ୍ତି । ଏସ୍ ଏମ୍ ଏସ୍ ଏବଂ ଇ–ମେଲ ଦ୍ୱାରା ବିଲ୍ ସମ୍ବନ୍ଧୀୟ ସୂଚନା ଦିଆଯିବା ସହ ଇ.ସି.ଏସ୍ ସେବା ଦ୍ୱାରା ଏବଂ ଅନ୍ ଲାଇନ୍ ବ୍ୟବସ୍ଥାରେ ଘରେ ବସି ବିଦ୍ୟୁତ୍ ବିଲ୍ ପଇଠର ବ୍ୟବସ୍ଥା ହୋଇପାରିଛି । ୨୦୧୭–୧୮ ବର୍ଷରେ ୮.୯୦ ଲକ୍ଷ ଗ୍ରାହକ ଏହି ସେବା ପାଇ ପାରିଛନ୍ତି । ଭୁବନେଶ୍ୱର ଅଞ୍ଚଳରେ ପାୱାର ହାଉସ୍ ଏବଂ ଖଣ୍ଡଗିରିଠାରେ ଦୁଇଟି ନୂଆ ବିଦ୍ୟୁତ୍ ସଂଯୋଗ ଆବେଦନ ପାଇଁ ସେସୁର ଗ୍ରାହକ ସେବା କେନ୍ଦ୍ର ଖୋଲାଯାଇଛି । ବିଦ୍ୟୁତ୍ ଚୋରି ଏବଂ ଅପବ୍ୟବହାରକୁ ରୋକିବା ପାଇଁ ପ୍ରତି ସବ୍‌ଡ଼ିଭିଜନ ସ୍ତରୀୟ ସ୍ୱତନ୍ତ୍ର ସ୍କ୍ୱାର୍ଡ଼ ଗଠନ କରାଯାଇଛି । ବିଦ୍ୟୁତ୍ ଚୋରି ବିଷୟରେ ଖବର ଦେବା ପାଇଁ ୯୪୩୭୧୫୮୬୭୦କୁ SMS ଏବଂ Powertheft@gmail.comକୁ mailର ବ୍ୟବସ୍ଥା କରାଯାଇଛି । ଖବର ଦାତାମାନଙ୍କ ପାଇଁ ପୁରସ୍କାର ବ୍ୟବସ୍ଥା ହୋଇଛି । ସେସୁ ଅଞ୍ଚଳରେ ୮ଟି ବିଦ୍ୟୁତ୍ ଥାନା କାର୍ଯ୍ୟ କରୁଛି । ୨୦୧୭–୧୮ରେ ୧୭୫ଟି ବିଦ୍ୟୁତ୍ ଚୋରି ବାବଦରେ ଏଫ୍.ଆଇ.ଆର୍ ଦିଆଯାଇଛି । ପୂର୍ବର ପୁରୁଣା ଏବଂ ଖରାପ ମିଟରଗୁଡ଼ିକୁ ବଦଳାଯାଇ ଇଲେକ୍‌ଟ୍ରୋନିକ୍ ମିଟର ବସାଯାଉଛି । ବିଦ୍ୟୁତ୍ ଗ୍ରାହକମାନଙ୍କ ବିଲ୍ ପଇଠ ସୁବିଧା ପାଇଁ ''ଜନ ସେବା କେନ୍ଦ୍ର''ରେ ବିଲ୍ ମଧ୍ୟ ଗ୍ରହଣ କରାଯାଉଛି । କ୍ୟାସଲେସ୍ କାରବାର ପାଇଁ ସେସୁ ୱେବସାଇଟ୍ www.cescoorissa.comରେ ମଧ୍ୟ ବିଲ୍ ପଇଠ ହୋଇପାରୁଛି । ସମସ୍ତ ସରକାରୀ କାର୍ଯ୍ୟାଳୟରେ ପ୍ରିପେଡ୍ ମିଟର ବ୍ୟବସ୍ଥା କରାଯାଉଛି ।

ଗ୍ରାହକମାନଙ୍କ ଅଭିଯୋଗ ଶୁଣାଣି ପାଇଁ ବିଭିନ୍ନ ବ୍ୟବସ୍ଥା ରହିଛି । ପ୍ରତି ମାସର ୭ ତାରିଖରେ ସମସ୍ତ ବିଦ୍ୟୁତ୍ ଡ଼ିଭିଜନର ନିର୍ବାହୀ ଯନ୍ତ୍ରୀ ନିଜେ ଉପସ୍ଥିତ ରହି ସେମାନଙ୍କ ଅଞ୍ଚଳର ବିଦ୍ୟୁତ୍ ଗ୍ରାହକମାନଙ୍କ ଅଭିଯୋଗ ଶୁଣାଣି କରି ସମସ୍ୟାର ସମାଧାନ କରନ୍ତି । ସମସ୍ତ ୫ ଜଣ ବିଦ୍ୟୁତ୍ ମଣ୍ଡଳ ଅଧିକାରୀମାନେ ମାସରେ ଗୋଟିଏ ଦିନ ଅଭିଯୋଗ ଶୁଣାଣି ବ୍ୟବସ୍ଥା କରୁଛନ୍ତି । ସେସୁ ମୁଖ୍ୟ କାର୍ଯ୍ୟାଳୟର ଅଭିଯୋଗ ପ୍ରକୋଷ୍ଠ ଏବଂ ମୁଖ୍ୟ ନିର୍ବାହୀ ଅଧିକାରୀ ନିଜେ ଅଭିଯୋଗ ଗ୍ରହଣ କରି ସମାଧାନ କରିଥାନ୍ତି । ସେସୁ ତରଫରୁ ଖୋଲା ଯାଇଥିବା ''ଗ୍ରାହକ ସେବା କେନ୍ଦ୍ର''୧୯୧୨ ଏବଂ ୦୬୭୪–୨୩୯୧୧୧୦ ଟେଲିଫୋନ୍ ଦ୍ୱାରା ସଂଯୁକ୍ତ । ସେସୁର ଗ୍ରାହକ ସେବା କେନ୍ଦ୍ରରେ ୨୦୧୭–୧୮ ବର୍ଷରେ ୧୯,୮୧୨ ଫ୍ୟୁଜ୍ କଲ୍ ଗ୍ରହଣ କରାଯାଇ, ୧୯,୭୮୫ଟିର ସମାଧାନ କରାଯାଇଛି ।

୮୩୬୩ଟି ନୂତନ ବିଦ୍ୟୁତ୍ ସଂଯୋଗ ଆବେଦନପତ୍ର ଗ୍ରହଣ କରାଯାଇ ସଠିକ କାଗଜପତ୍ର ଦେଇଥିବା ୮୭୬୨ଟି ସଂଯୋଗ ଦିଆଯାଇଛି ।

ବିଦ୍ୟୁତ୍ ଆଇନ୍– ୨୦୦୩ ଏବଂ ଓଡ଼ିଶା ବିଦ୍ୟୁତ୍ ନିୟାମକ ଆୟୋଗର ବିଦ୍ୟୁତ୍ ବଣ୍ଟନ କୋଡ୍ ୨୦୦୪ ଅନୁସାରେ, ସେସୁ ଅଞ୍ଚଳରେ ଭୁବନେଶ୍ୱର, ଖୋର୍ଦ୍ଧା, କଟକ, ଢେଙ୍କାନାଳ ଏବଂ ପାରାଦୀପଠାରେ ଅଭିଯୋଗ ପ୍ରତିବିଧାନ ବିଚାର କେନ୍ଦ୍ରମାନ ପ୍ରତିଷ୍ଠା ହୋଇ ବିଦ୍ୟୁତ୍ ଗ୍ରାହକମାନଙ୍କ ଅଭିଯୋଗ ଗ୍ରହଣ କରାଯାଇ ଶୀଘ୍ର ସମାଧାନ କରାଯାଇଛି । ଏହି କେନ୍ଦ୍ରମାନ ୨୦୦୪ ମସିହାରୁ ୩୧.୦୩.୨୦୧୮ ସୁଦ୍ଧା ସମୁଦାୟ ୨୨,୮୫୨ଟି ମାମଲା ଗ୍ରହଣ କରି ୨୨,୬୩୬ର ସମାଧାନ ହୋଇଛି ।

ବିଦ୍ୟୁତ୍ ସେବା କୋଡ୍‌ମାନ ବ୍ୟବହାର କରାଯାଇ ୯୨୨୩୯୯୦୬୩୦ ନମ୍ବରକୁ ଏସ୍‌ଏମ୍‌ଏସ୍ କରି ବିଦ୍ୟୁତ୍ ଗ୍ରାହକମାନଙ୍କ ଅସୁବିଧା ଓ ଅଭିଯୋଗ ଶୁଣାଯାଇପାରୁଛି । ବିଦ୍ୟୁତ୍ ସୁରକ୍ଷା ଉପରେ ଅଧିକ ଧ୍ୟାନ ଦିଆଯାଇ ବିଦ୍ୟୁତ୍ ସୁରକ୍ଷା ସମ୍ବନ୍ଧୀୟ ମାସିକ ସଭାମାନ ଆୟୋଜନ କରାଯାଏ ଏବଂ ବିଦ୍ୟୁତ୍ କର୍ମଚାରୀ ଏବଂ ଜନସାଧାରଣମାନଙ୍କୁ ବିଦ୍ୟୁତ୍ ଦୁର୍ଘଟଣା ବିଷୟରେ ସଚେତନ କରାଯାଉଛି । ଏହାଦ୍ୱାରା ମଧ୍ୟ ସଫଳତାପ୍ରାପ୍ତ ହୋଇଛି, ଯାହାଫଳରେ ବିଦ୍ୟୁତ୍ କର୍ମଚାରୀମାନଙ୍କ ଜୀବନରକ୍ଷା ହୋଇପାରିଛି । ସୁରକ୍ଷା ବିଷୟରେ ସଚେତନତା ଯୋଗୁଁ ଗତ ୨୦୧୭ ମସିହାରେ ସେସୁ ଅଧୀନସ୍ଥ ସମସ୍ତ ବିଦ୍ୟୁତ୍ ଡିଭିଜନରେ ବିଦ୍ୟୁତ୍ ଦୁର୍ଘଟଣାଜନିତ କୌଣସି ସେସୁ କର୍ମଚାରୀ ଜୀବନ ହରାଇ ନାହାନ୍ତି ।

ଆଜି ବିଦ୍ୟୁତ୍ ଶକ୍ତିର ଆବଶ୍ୟକତା ସବୁରି କ୍ଷେତ୍ରରେ ବଢ଼ିଯାଇଛି । ମାତ୍ର ବହୁ ସମୟରେ ଦେଖାଯାଉଛି ଯେ, ବିଦ୍ୟୁତ୍ ଗ୍ରାହକ ତଥା ଜନସାଧାରଣଙ୍କ ଦୃଢ଼ ମାନସିକତାର ଅଭାବ ଯୋଗୁଁ ବିଦ୍ୟୁତ୍ ଶକ୍ତିର ଅପବ୍ୟବହାର, ଅପଚୟ ଏବଂ ଚୋରି କ୍ରମେ ବଢ଼ି ଚାଲିଛି । ଏହା ସାମାଜିକ ତଥା ଅର୍ଥନୈତିକ ଉନ୍ନତିରେ ବାଧା ସୃଷ୍ଟି କରୁଛି । ଗାଁ ଗଣ୍ଡା ଓ ସହର ବଜାର ସବୁରି ଅଞ୍ଚଳର ବିଦ୍ୟୁତ୍ ଗ୍ରାହକ ତଥା ଜନସାଧାରଣମାନଙ୍କୁ ଅନୁରୋଧ ସେମାନେ ସମସ୍ତେ ବିଦ୍ୟୁତ୍ ଶକ୍ତିର ଅପଚୟକୁ ରୋକିବା ସହ ବିଦ୍ୟୁତ୍ ସଞ୍ଚୟ ମନୋବୃତ୍ତି ଆଣି ପାରିଲେ ରାଜ୍ୟ ତଥା ଦେଶର ମଙ୍ଗଳ ହେବ ।

ଜନସମ୍ପର୍କ ଅଧିକାରୀ, ସେସୁ



# ଐତିହ୍ୟ ଦୃଷ୍ଟିକୋଣରୁ ମହୁରୀ ରାଜ୍ୟ 'ବ୍ରହ୍ମପୁର'

ରଞ୍ଜନ କୁମାର ସାହୁ

'ବ୍ରହ୍ମପୁର' ସବୁ ସମୟରେ ଏକ ଗୌରବମୟ ଐତିହ୍ୟ ବହନ କରିଆସିଛି । ତେବେ 'ମହୁରୀ' ରାଜ୍ୟ ଭାବେ ତଥା ଏହାର ରାଜଧାନୀ ବ୍ରହ୍ମପୁରର ଐତିହ୍ୟ କେତେଦୂର ପରିବ୍ୟାପ୍ତ ତାହାର ତୁଳନା ନାହିଁ । 'ମହୁରୀ' ଏକ ପେଁକାଳୀ ନାମକ ବାଦ୍ୟଯନ୍ତ୍ର । ଏହା ଏକ ମୁଖ୍ୟ ବାଦ୍ୟଯନ୍ତ୍ର, ଯାହାଦ୍ୱାରା ବାଦ୍ୟଯନ୍ତ୍ରକୁ ଅଧିକ ତ୍ୱରାନ୍ୱିତ କରି ମନୋମୁଗ୍ଧକର କରିଥାଏ । ମହୁରୀ ବାଦ୍ୟଯନ୍ତ୍ରକୁ ଏକ ଶୁଭ ଭାବରେ ବିଭିନ୍ନ ମାଙ୍ଗଳିକ କାର୍ଯ୍ୟରେ ନିୟୋଜିତ କରାଯାଇଥାଏ । ଖାଲି ଏତିକି ନୁହଁ, ଘୋଷଯାତ୍ରା ତଥା ଓଡ଼ିଶାର ବିଭିନ୍ନ ରାଜା ମହାରାଜାମାନଙ୍କ ଯୁଦ୍ଧ ଅଭିଯାନ ସମୟରେ ଏହାର ଆବଶ୍ୟକ ମଣିଥାନ୍ତି । ପୁରୀ ଗଜପତିଙ୍କ କାଞ୍ଚି ଅଭିଯାନ ସମୟରେ ଗଜପତି ମହାରାଜା ପୁରୁଷୋତ୍ତମ ଦେବ 'ବ୍ରହ୍ମପୁର' 'ମହୁରୀ' ରାଜ୍ୟ ଦେଇ ଯାତ୍ରା କରିବା ଅବସରରେ ସୋମରାଜା ଓ ଭୀମରାଜା ଢ଼ୋଲ ଓ ମହୁରୀ ବାଦ୍ୟ ବଜାଇବା ସହ ଗଜପତି ରାଜାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ତାଙ୍କରି ଏହି କାର୍ଯ୍ୟରେ ପ୍ରଶଂସିତ ହୋଇ ଦୁଇଜଣ ସର୍ଦ୍ଦାର ସୋମରାଜା ଓ ଭୀମରାଜାଙ୍କ ସମେତ 'ମହୁରୀଆ' ରାଜାଙ୍କୁ ସଙ୍ଗରେ ନେଇ ଯୁଦ୍ଧ ସମୟରେ ଏହି ବାଦ୍ୟ ବଜାଇବା ପାଇଁ ନିର୍ଦ୍ଦେଶ ଦେଲେ । କଳିଙ୍ଗବାସୀ ଯୁଗ ଯୁଗରୁ ଯେଉଁ ସାହସିକତା ଦେଖାଇଥିଲେ, ତାହା କାଞ୍ଚି ଯୁଦ୍ଧରେ ମଧ୍ୟ ମହୁରୀ ବାଦ୍ୟର ଧ୍ୱନି ଓଡ଼ିଆ ସୈନ୍ୟକୁ ଏପରି ସାହସିକତା ଭରିଦେଲା, ଯାହା ଫଳରେ ଦ୍ୱିତୀୟ ଦିନର ଯୁଦ୍ଧରେ କାଞ୍ଚି ରାଜା ପୁରୁଷୋତ୍ତମଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ପରାଜୟର ଗ୍ଲାନି ପୂର୍ବରୁ ମହୁରୀଆର ଏପରି ଧ୍ୱନି ପଦ୍ଧତିରେ କାଞ୍ଚି ରାଜା ସାଲ ନରସିଂହ ଉତ୍ତ୍ୟକ୍ତ ହୋଇ ମହୁରୀଆର ମୃତ୍ୟୁରେ କ୍ଷୋଭ ପ୍ରକାଶ କରି ଏହି ମହାନ୍ ବଳିଦାନର ସ୍ମୃତି ସକାଶେ ଏହି ଅଞ୍ଚଳକୁ 'ମହୁରୀ' ନାମରେ ଅଭିହିତ କରି ସୋମରାଜାଙ୍କୁ ରାଜ୍ୟଭାର ହସ୍ତାନ୍ତର କରି ନିଜ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । ଯଦି ବା ଏହା ମାଦଳା ପାଞ୍ଜିରେ ଲିପିବଦ୍ଧ ହୋଇନାହିଁ, ତଥାପି ସିଂହଳା ଗ୍ରାମର ଲୋକଗୀତରେ ଶୁଣାଯାଏ– 'ଦକ୍ଷିଣା ଯୁଦ୍ଧ ଲାଗିଲା, ମହୁରୀଆ ମୁଣ୍ଡ ଦିଖଣ୍ଡ ହେଲା । ପଦ୍ମାବତୀ ରାଣୀ ବରଣ କଲା, ଧନମାଳିରେ, ରାଇଜ ମହୁରୀ ହେଲା, ଧନ ମାଳିରେ.... ।

ମହୁରୀ ରାଜ୍ୟର ରାଜଧାନୀ ବ୍ରହ୍ମପୁରର ନାମ ଏଭଳି ହେବା ପଛରେ ଏକ ସୁନ୍ଦର କିମ୍ବଦନ୍ତୀ ରହିଛି । ମହୁରୀ ରାଜ୍ୟର ରାଜାମାନେ ପ୍ରଜାବତ୍ସଳ ତଥା ପଶୁପକ୍ଷୀ ପ୍ରିୟ ଥିଲେ । କିନ୍ତୁ ମହୁରୀ ରାଜା ଶିବ ନରେନ୍ଦ୍ର ମୃଗୟାକୁ ଯାଇ ଏକ ନିରୀହ ପଶୁ ହତ୍ୟା ପରେ ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ପଶୁହତ୍ୟା ପାପରୁ ପ୍ରକ୍ଷାଳନ ପାଇଁ ଏକ ଯଜ୍ଞର ଆୟୋଜନ କରିଥିଲେ । ତେଣୁ ଶ୍ରୀକ୍ଷେତ୍ରରୁ ବିଜ୍ଞ ଅନୁଭୂତିସମ୍ପନ୍ନ ବ୍ରାହ୍ମଣମାନଙ୍କୁ ଯଜ୍ଞ କର୍ତ୍ତା ରୂପେ ବରଣ କରି ଯଜ୍ଞ କାର୍ଯ୍ୟ ସମ୍ପାଦନ କରିଥିଲେ ଓ ବ୍ରାହ୍ମଣମାନଙ୍କର ପାରଦର୍ଶିତାରେ ମୁଗ୍ଧ ହୋଇ ସେମାନଙ୍କୁ ଏହି ସ୍ଥାନରେ ସବୁଦିନ ପାଇଁ ରହିବା ବ୍ୟବସ୍ଥା କରିଥିଲେ । ମହୁରୀ ରାଜା ବ୍ରାହ୍ମଣ ପ୍ରିୟ ରାଜା ରୂପେ ଅଭିହିତ । ସେହି ସମୟଠାରୁ ବ୍ରାହ୍ମଣଙ୍କ ବାସସ୍ଥଳରୁ ବ୍ରହ୍ମଜ୍ଞାନ ନାମକରଣ ହୋଇ ଓ ବ୍ରାହ୍ମଣଙ୍କ ପୁର ଅର୍ଥାତ୍ ରହିବା ସ୍ଥାନରୁ 'ବ୍ରହ୍ମପୁର' ରୂପେ ପରିଚିତ ହେଲା ।

ଯୁଗେ ଯୁଗେ ବ୍ରହ୍ମପୁରର ଐତିହ୍ୟ କିଛି କମ୍ ନଥିଲା । ବ୍ରହ୍ମପୁର ଶିକ୍ଷା କ୍ଷେତ୍ରରେ ଯେପରି ଏକ ପୀଠସ୍ଥଳୀ ଥିଲା, ସେହିପରି ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ବାଣିଜ୍ୟ ପେଣ୍ଠ ରୂପେ ପରିଚିତ। ଏହାର ଭୌଗୋଳିକ ଅବସ୍ଥିତି ଏସବୁ କ୍ଷେତ୍ରରେ ଅନୁକୂଳ ଥିଲା। ସ୍ୱର୍ଗତ ଡକ୍ଟର ଦଣ୍ଡପାଣି ବେହେରା ଦକ୍ଷିଣ ଓଡ଼ିଶା ଇତିହାସରେ ବ୍ରହ୍ମପୁରକୁ ଏକ ପବିତ୍ର ଓ ଐତିହାସିକ ରାଜଧାନୀ ଥିବାର ଉଲ୍ଲେଖ କରିଛନ୍ତି । ଡକ୍ଟର ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଭାଷାରେ ଏହା ଅଶୋକଙ୍କ ଦ୍ୱାରା ଆକୃଷ୍ଟ ହୋଇ 'ଜଉଗଡ଼' ସ୍ଥାପନ ହୋଇଥିଲା । ମହୁରୀ ରାଜାମାନେ ପ୍ରଜାନୁରଞ୍ଜନ ରାଜା ଭାବେ ପ୍ରଜାମାନଙ୍କ ଦୁଃଖକୁ ସହ୍ୟ କରିପାରୁ ନଥିଲେ । ଏପରିକି, ୧୮୬୬ ଖ୍ରୀଷ୍ଟାବ୍ଦରେ ହୋଇଥିବା ଦୁର୍ଭିକ୍ଷ ସମୟରେ ମହୁରୀ ରାଜ ପରିବାରର ଅନେକ ଛତ୍ରଘର ଖୋଲି ଲୋକମାନଙ୍କ ପାଇଁ ଖାଦ୍ୟର ସୁବନ୍ଦୋବସ୍ତ କରାଇଥିଲେ ଓ ଏହି ଛତ୍ରଘରଗୁଡ଼ିକର ନାମ ଅନୁସାରେ ଛତ୍ରପୁର ସହରର ନାମକରଣ ହୋଇଥିବା ଅନୁମେୟ।

ମହୁରୀ ରାଜ୍ୟର ପ୍ରଥମ ରାଜା ସୋମରାଜା ନିଜର ଅପୂର୍ବ ସାହସ ଓ ଦକ୍ଷତା ବଳରେ ନିକଟସ୍ଥ ସମସ୍ତ ଅଞ୍ଚଳରେ ଆଧିପତ୍ୟ ବିସ୍ତାର କରିଥିଲେ । କେରାଣ୍ଡିମାଳ ପାଦଦେଶକୁ ରାଜା ନିଜର ରାଜମହକୁମା 'ମହୁରୀ ଗଡ଼' ବା 'ମହୁଡ଼ା' ଗ୍ରାମକୁ ପ୍ରଥମେ ବାଛିଥିଲେ । ଏହାର ନିକଟରେ ଥିବା ଗିରିକୋଟଠାରେ ସୁନ୍ଦର ପ୍ରସ୍ତର ଗଡ଼ ନିର୍ମାଣ କରି ଜରୁରୀକାଳୀନ ପରିସ୍ଥିତିରେ ସେଠାରେ ସପରିବାର ଅବସ୍ଥାନ କରୁଥିଲେ । ସୋମରାଜାଙ୍କ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ମହୁରୀ ରାଜ୍ୟର ସୁନାମଧନ୍ୟ ରାଜା ଖ୍ରୀ.୧୬୬୨ରୁ ୧୬୬୭ ରୂପେ ପରିଚିତ କରିପାରିଥିଲେ । ରାଜା ଶିବ ନରେନ୍ଦ୍ର ଦେବ ମହୁଡ଼ାଠାରୁ ବ୍ରହ୍ମପୁରକୁ ସ୍ଥାନାନ୍ତରିତ କରିପାରିଥିଲେ । ରାଜାଙ୍କର ବ୍ରହ୍ମପୁରକୁ ଆସିବା ପଛରେ ଥିଲା ବହୁ ଦୂରଦୃଷ୍ଟି ସମ୍ପନ୍ନ । କାରଣ ପରବର୍ତ୍ତୀ ଅବସ୍ଥାରେ ନବ ଜାଗୃତିର ଅନନ୍ୟ ସାରଥୀ, ମହୁରୀ ଜମିଦାରୀର ଯୁବରାଜ କୃପାସିନ୍ଧୁ ନରେନ୍ଦ୍ର ଦେବଙ୍କ ଜନ୍ମ ୧୯୦୩ ମସିହା ଜୁନ୍ ୨୪ ତାରିଖରେ ବ୍ରହ୍ମପୁର ରାଜ ଉଆସଠାରେ ହୋଇଥିଲା। ତାଙ୍କ ପିତାଙ୍କ ନାମ ଥିଲା ନବୀନ ଚନ୍ଦ୍ର ଦେବ ଓ ମାତାଙ୍କ ନାମ ଥିଲା ରତ୍ନଶାଳୀ ଦେବୀ ।

ତାଙ୍କର ପ୍ରାୟ ଅର୍ଦ୍ଧ ଶତାବ୍ଦୀର ଜୀବନକାଳ ମଧ୍ୟରେ ଓଡ଼ିଶାର ସାମାଜିକ, ରାଜନୈତିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ଘଟଣାବଳୀ ସହିତ ନିଜକୁ ଘନିଷ୍ଠ ଭାବେ ସଂଯୋଜିତ କରି ସ୍ୱୀୟ ଅବଦାନକୁ ଯଥାର୍ଥରେ ଓଡ଼ିଶାର କଳା, ସଂସ୍କୃତି ଓ ଐତିହ୍ୟକୁ ବିଶଦ୍ ଭାବେ ଋଦ୍ଧିମନ୍ତ କରିଥିଲା । ଯୁବରାଜ କୃପାସିନ୍ଧୁ ନରେନ୍ଦ୍ର ଦେବ ୧୯୧୯ ମସିହାରେ ସ୍କୁଲ ଶିକ୍ଷା ଆରମ୍ଭ କରିଥିଲେ । ସେ ଆନ୍ଧ୍ରପ୍ରଦେଶ ପାର୍ବତୀପୁରମ ରାଜକୁମାରୀ ଦେବୀଙ୍କୁ ବିବାହ କରିଥିଲେ । ୧୯୨୦ ମସିହାରେ ବଙ୍ଗଳାର ରାଧାକୃଷ୍ଣ ଥିଏଟର ନାଟ୍ୟଦଳ ବ୍ରହ୍ମପୁର ଆସି ନାଟ୍ୟ ପ୍ରଦାନ କରିବାର ଦେଖି ସେ ଓଡ଼ିଆ ଲୋକ, ଓଡ଼ିଆ ଭାଷାରେ କିପରି ନାଟକ ଲେଖିବେ, ତେଣୁ ସେ 'ନରେନ୍ଦ୍ର ନାଟ୍ୟ ସଂଘ' ପ୍ରତିଷ୍ଠା କଲେ, ଯାହାକି ପରେ ଉତ୍କଳ ବାଣୀଭଣ୍ଡାରକୁ ସୁସମୃଦ୍ଧ କରିପାରିଥିଲା। 'ସରକାର' ଓ 'ମୁକୁର' ଦୁଇଟି ସାହିତ୍ୟ ପତ୍ରିକାରେ ଖ୍ରୀ ୧୯୨୭–୨୮ରେ ତାଙ୍କର କବିତା ପ୍ରକାଶ ପାଇଥିଲା । ତା'ପରେ ସେ ଭାରତୀୟ ରେଡ଼କ୍ରସ୍ ସଂଘ ତରଫରୁ ପ୍ରକାଶିତ 'ତାରକା ଭୂତ' ମାସିକ ଓଡ଼ିଆ ସାହିତ୍ୟ ପତ୍ରିକାର ସମ୍ପାଦନ ଦାୟିତ୍ୱ ଭାର ଗ୍ରହଣ କରିଥିଲେ । ୧୯୩୦ ମସିହା ସମଗ୍ର ଭାରତୀୟ ଜାତୀୟତାବାଦୀ ଇତିହାସରେ ଏକ ଅବିସ୍ମରଣୀୟ ବର୍ଷ । ଏହି ସମୟରେ ଭାରତୀୟ ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଆର୍ଥିକ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ଘଟିଥିଲା। ସାମ୍ବାଦିକତା କ୍ଷେତ୍ରରେ କୃପାସିନ୍ଧୁଙ୍କ ସମ୍ପାଦିତ ସାପ୍ତାହିକ ସାହିତ୍ୟ ଓ ସମ୍ବାଦ ପତ୍ର 'ନବୀନ' ଦୈନିକ ପତ୍ରିକା 'ପ୍ରଭାତ' ଓ ମାସିକ ପତ୍ରିକା 'ଶିଶିର' ତାଙ୍କର ଅବଦାନ ଥିଲା । ୧୯୩୦ରେ 'ନବୀନ' ପ୍ରକାଶ ହୋଇଥିଲା ଓ କିଛି ଦିନ ପରେ 'ପ୍ରଭାତ' ପ୍ରକାଶ ହୋଇଥିଲା । 'ନବୀନ ସାହିତ୍ୟ ପରିଷଦ' ଥିଲା କୃପାସିନ୍ଧୁଙ୍କ ପରିକଳ୍ପିତ ସାରସ୍ୱତ ଅନୁଷ୍ଠାନ । ଜାତୀୟ ସାହିତ୍ୟ ତଥା ସଂଗୀତର ବିକାଶ ଅଭିବୃଦ୍ଧି ତାଙ୍କ ଲକ୍ଷ୍ୟ । ୧୯୩୯ ମସିହା ଡ଼ିସେମ୍ବର ମାସରେ ନିଖିଳ ଗଞ୍ଜାମ ସମ୍ମିଳନୀ କୃପାସିନ୍ଧୁଙ୍କ

ସଭାପତିତ୍ୱରେ ରମ୍ଭାଠାରେ ଆୟୋଜିତ ହୋଇଥିଲା । ସେହିପରି ୧୯୪୮ ମସିହା ମାର୍ଚ୍ଚ ୨୯ ତାରିଖ କଟକ ଶ୍ରୀରାମ ଚନ୍ଦ୍ର ଭବନରେ ଅନୁଷ୍ଠିତ ଉତ୍କଳ ସଂଗୀତ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ଦ୍ୱିତୀୟ ଦିବସରେ କୃପାସିନ୍ଧୁ ସଭାପତିତ୍ୱ କରି ଅଭିଭାଷଣ ପ୍ରଦାନ କରିଥିଲେ । ନିଖିଳ ଉତ୍କଳ ସମ୍ମିଳନୀର ଶେଷ ଦିବସ ୧୩ ମେ ୧୯୪୪ରେ ସଙ୍ଗୀତଜ୍ଞମାନଙ୍କୁ ନେଇ 'ଗଞ୍ଜାମ ଜିଲ୍ଲା ସଙ୍ଗୀତ ସଂସଦ' ଗଠନ କରି ସେଥିରେ ସେ ସଭାପତି ଥିଲେ । ୧୯୪୮ ଫେବୃଆରୀ ୨୨ରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ସଭାପତିତ୍ୱରେ ଗୋଟିଏ ସାଧାରଣ ସଭା ଆୟୋଜନ କରିଥିଲେ । ସେ ଉତ୍କଳ ଶିଳ୍ପୀ ସଂଘ ଗଠନ କରିଥିଲେ । ଓଡ଼ିଶାର ଗୋଟିଏ ସ୍ୱତନ୍ତ୍ର ଚିତ୍ରଶାଳା ବା ମ୍ୟୁଜିୟମ୍ ନିର୍ମାଣ ପାଇଁ କୃପାସିନ୍ଧୁ ୧୯୪୧ ମସିହାରୁ ତାଙ୍କର 'ନବୀନ' ପତ୍ରିକାରେ ଦାବି କରିଥିଲେ, ଯାହାକି ଗବେଷଣା ପାଇଁ ବହୁ ଉପାଦାନ ଯୋଗାଇ ପାରିଛି। ୧୯୪୪ରୁ ୧୯୫୦ ପର୍ଯ୍ୟନ୍ତ ସେ ପାଠାଗାର ଆନ୍ଦୋଳନକୁ ସକ୍ରିୟ କରିଥିଲେ । ୧୯୩୦ ମସିହାରୁ ଓଡ଼ିଆ ଜାଗୃତି ପାଇଁ ଚିର ନମସ୍ୟ । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଢ଼ି ତୋଳିବା ତଥା ଏହାର ଭାଷା, ସାହିତ୍ୟ, ସଂସ୍କୃତିକୁ ବିଶ୍ୱ ଦରବାରରେ ସୁପ୍ରତିଷ୍ଠିତ କରାଇବା। ପାରଳା ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତିଙ୍କ ପରି ବଦାନ୍ୟ ବକ୍ତିଙ୍କ ପରି ଯେଉଁ କେତେକ ରାଜାମାନେ ଓଡ଼ିଶାରେ ଥିଲେ, ତନ୍ମଧ୍ୟରୁ ମହୁରୀ ରାଜା ବିଭିନ୍ନ ମାଧ୍ୟମରେ ଓଡ଼ିଆଙ୍କ ଦାବିକୁ ଇଂରେଜ ସରକାରଙ୍କ ପାଖରେ ଉପସ୍ଥାପନା କରିଥିଲେ । ସେ ଦେଖିଲେ ଯୋଗାଯୋଗ ଓ ସାମ୍ବାଦିକତା ବଳରେ ଓଡ଼ିଶାକୁ ଏକତ୍ରିକରଣ କରିବା । ତେଣୁ 'ନବୀନ' ପତ୍ରିକା ମାଧ୍ୟମରେ ତାଙ୍କ ପ୍ରୟାସକୁ ବଜାୟ ରଖିଥିଲେ । ସେ କହିଥିଲେ 'କେବଳ ପାରଳା ମହାରାଜାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଆମକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାରେ ସହାୟକ ହୋଇପାରିବ ।' ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଲଣ୍ଡନ୍‌ଠାରେ ପହଞ୍ଚି ଗୋଲଟେବୁଲ୍ ବୈଠକର ପ୍ରସଙ୍ଗକୁ ଟେଲିଗ୍ରାମ ଦ୍ୱାରା ନରେନ୍ଦ୍ର ଦେବଙ୍କୁ ପ୍ରଦାନ କରିଥିଲେ । ସବୁଠୁ ବଡ଼ କଥା ହେଲା ସେ ଆଜୀବନ ଉତ୍କଳ ସମ୍ମିଳନୀର ସଦସ୍ୟ ଥିଲେ । ଖ୍ରୀ ୧୯୩୦ରୁ ୧୯୪୦ ମସିହା ମଧ୍ୟରେ ଉତ୍କଳ ସମ୍ମିଳନୀ ସମ୍ପର୍କରେ ବହୁ ଆଲେଖ୍ୟ 'ନବୀନ'ରେ ପ୍ରକାଶ କରିଥିଲେ । ୧୯୪୬ ଅକ୍ଟୋବର ୨୦ ତାରିଖରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀରେ ସଭାପତିତ୍ୱ ଗ୍ରହଣ କରିଥିଲେ । ସେ ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କୁ ମଧ୍ୟ ଗଣ ଯୋଗାଯୋଗ ମାଧ୍ୟମରେ ସମ୍ପର୍କ ରକ୍ଷା କରିଥିଲେ । ଏପରିକି ବାରିପଦା ରାଜା ସାହେବ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ସହ ଓଡ଼ିଶା ମିଶ୍ରଣ ପାଇଁ ବହୁତ ଚେଷ୍ଟା କରିଥିଲେ । ଖାଲି ସେତିକି ନୁହେଁ, ବିଚ୍ଛିନ୍ନାଞ୍ଚଳ ସବୁ ଓଡ଼ିଶାରେ କିପରି ମିଶିବ ସେଥିପାଇଁ ସେ ବହୁତ ତତ୍ପରତା ପ୍ରକାଶ କରିଥିଲେ। ଦକ୍ଷିଣ ଓଡ଼ିଶାରେ ଥିବା ଜିଲ୍ଲାଗୁଡ଼ିକ ଅବିଭକ୍ତ ଗଞ୍ଜାମ ଓ କୋରାପୁଟରେ ଆନ୍ଧ୍ରର ପ୍ରଭାବ ବୃଦ୍ଧି ବିଷୟ ନେଇ ଦୃଢ଼ କଣ୍ଠରେ ପ୍ରତିବାଦ କରିଥିଲେ । ଏପରିକି ଓଡ଼ିଶାରେ ନାରୀ ଜାଗୃତି ପାଇଁ ମଧ୍ୟ ତାଙ୍କ ଅବଦାନ କମ୍ ନଥିଲା ।

ଅର୍ଦ୍ଧ ଶତାବ୍ଦୀର କର୍ମମୟ ଜୀବନ ଅତିବାହିତ କରି କୃପାସିନ୍ଧୁ ନରେନ୍ଦ୍ର ଦେବ ୧୯୫୩ ମସିହା ଜୁନ୍ ମାସ ୧୫ ତାରିଖ ରାତ୍ର ୩ ଘଣ୍ଟା ସମୟରେ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କ ପୁତ୍ର ଶିଶିର କୁମାର ନରେନ୍ଦ୍ର ଦେବ ୧୯୬୧ ମସିହାଠାରୁ ୧୯୬୭ ଓ ପୁତ୍ରବଧୂ ରତ୍ନମରୀ ଦେବୀ ୧୯୬୭ ମସିହାଠାରୁ ୧୯୮୦ ମସିହା ପର୍ଯ୍ୟନ୍ତ ବ୍ରହ୍ମପୁର ବିଧାୟକ ଥିଲେ । ଦ୍ୱିତୀୟ ପୁତ୍ର ପ୍ରଭାତ କିରଣ ଦେବ ବ୍ରହ୍ମପୁର ପୌରପାଳିକାର ନଗରପାଳ ଥିଲେ ।

ବର୍ତ୍ତମାନର ବ୍ରହ୍ମପୁର ରାଜ୍ୟ ଅତୀତ ମହୁରୀ ରାଜାଙ୍କ ବିବିଧ କୀର୍ତ୍ତି । ଖ୍ରୀ ୧୮୩୩ରେ ସୋରଡ଼ା ରାଜା ସୁନ୍ଦର ସିଂହ ବ୍ରିଟିଶ୍ ସରକାରଙ୍କୁ ସର୍ତ୍ତମୂଳକ କର ପୈଠ କରି ନପାରି ନିଲାମ ଦ୍ୱାରା ରାଜ୍ୟଚ୍ୟୁତ ହୋଇ ସମାନ୍ତର ଦଶା ଭୋଗ କରିଥିଲେ। ଯେତେବେଳେ ମହୁରୀ ରାଜା କୃଷ୍ଣଚନ୍ଦ୍ର ନରେନ୍ଦ୍ର ଦେବ ତାଙ୍କୁ ତାଙ୍କର ଇଷ୍ଟଦେବୀ ଖୋଡ଼ାସିଙ୍ଗି ଅଞ୍ଚଳ ଖୁଡ଼୍‌ସିଂ ଦେବଙ୍କ ନାମରୁ ଆନୀତ ହେବା ଅନୁମେୟ ।

ସେହିପରି ପାଇକ ବିଦ୍ରୋହ ସମୟରେ ଘୁମୁସର ଇଂରେଜୀମାନଙ୍କ ଅଧୀନକୁ ଯାଇ ଭଞ୍ଜବଂଶୀ ରାଜା ଧନଞ୍ଜୟ ଭଞ୍ଜ ଓ ପିତା ଶ୍ରୀକର ଭଞ୍ଜ ରାଜ୍ୟଚ୍ୟୁତ ହୋଇ ଗଞ୍ଜାମ ଜେଲରେ ରହିଲେ ଓ ଗାମର ପ୍ଲେଗ୍ ନାମକ ମହାମାରୀ ରୋଗ ସଂକ୍ରମଣ ହୋଇ ଅନେକ ଲୋକ ପ୍ରାଣ ହରାଇଲେ । ବ୍ରିଟିଶ୍ ସରକାର, ଧନଞ୍ଜୟ ଓ ଶ୍ରୀକର ଭଞ୍ଜଙ୍କୁ ବ୍ରହ୍ମପୁର ସ୍ଥାନାନ୍ତରିତ କରିଥିଲେ । ଏହିଭଳି ବିବଦମାନ ଅବସରରେ ତତ୍କାଳୀନ ମହୁରୀ ରାଜା ସେମାନଙ୍କୁ ଜେଲରୁ ମୁକ୍ତ କରି କେରାଣ୍ଡିମାଳ ଜଙ୍ଗଲରେ ରହିବାର ବ୍ୟବସ୍ଥା କରି ସୁରକ୍ଷା ଯୋଗାଇ ଦେଇଥିଲେ ଓ ସେମାନଙ୍କର ପୁନଃ ରାଜ୍ୟପ୍ରାପ୍ତି ପାଇଁ ସଂଗ୍ରାମରେ ସାହାଯ୍ୟ ମଧ୍ୟ କରିଥିଲେ ।

ମହୁରୀ ରାଜବଂଶ ଦ୍ୱାରା ବ୍ରହ୍ମପୁର ଓ ନିଜ ରାଜ୍ୟର ବିଭିନ୍ନ ସ୍ଥାନରେ ପୁଷ୍କରିଣୀ, ପାନୀୟ ଜଳ ନିମନ୍ତେ କୂପ, ବାଟୋଇଙ୍କ ପାଇଁ ଖାଦ୍ୟପେୟ ବ୍ୟବସ୍ଥା ତଥା ସାମାଜିକ ସୌନ୍ଦର୍ଯ୍ୟ ପ୍ରତିଷ୍ଠା ନିମନ୍ତେ ହରିଡ଼ାଖଣ୍ଡି ନିକଟସ୍ଥ ଲକ୍ଷ୍ମୀ ନୃସିଂହ ମଠ, ବ୍ରହ୍ମଦେବୀ ଠାକୁରାଣୀ ମନ୍ଦିର ଇତ୍ୟାଦି ପ୍ରତିଷ୍ଠା କରିଥିଲେ । ସବୁଠାରୁ ବଡ଼ ବିଷୟ ହେଲା ବ୍ରହ୍ମପୁରରେ ପ୍ରଚଳିତ ମା' ବୁଢ଼ୀ ଠାକୁରାଣୀଙ୍କ ଯାତ୍ରା ଖ୍ରୀ:୧୭୩୩ରେ ମହୁରୀ ରାଜବଂଶ ହିଁ ପ୍ରଚଳିତ କରିଥିଲେ । ମା' ବୁଢ଼ୀ ଠାକୁରାଣୀ ଯେ କି ବ୍ରହ୍ମପୁରବାସୀଙ୍କ ଇଷ୍ଟଦେବୀ ଏକଥା କେବଳ ମହୁରୀ ବଂଶର ରାଜା ହିଁ ବୁଝିପାରିଥିଲେ । ତାଙ୍କରି ଦୟା ଆଶିଷରୁ ବ୍ରହ୍ମପୁର ଦକ୍ଷିଣ ଓଡ଼ିଶାର ଏକ ପ୍ରାଣପ୍ରତିଷ୍ଠିତ ଶିକ୍ଷା ଓ ବାଣିଜ୍ୟର ମୁଖ୍ୟ କେନ୍ଦ୍ର ହୋଇପାରିଛି । ତେଣୁ ମା' ବୁଢ଼ୀ ଠାକୁରାଣୀଙ୍କ ମନ୍ଦିର ପ୍ରତିଷ୍ଠା କରି ଏହାର ଅର୍ଥନୈତିକ ଓ ପାରମ୍ପରିକ ଚିହ୍ନ ସ୍ୱରୂପ ଏ ଯାତ୍ରାକୁ ପ୍ରତିଷ୍ଠିତ କରିପାରିଛନ୍ତି । ଏହାକୁ ଘଟ ଯାତ୍ରାର ମଧ୍ୟ ଆଖ୍ୟା ଦିଆଯାଇଛି । ଯାତ୍ରା ସମୟରେ ମା' ଘଟ ପରିକ୍ରମା କରିବା ପୂର୍ବରୁ ମହୁରୀ ରାଜ ଉଆସକୁ ଯାଇ ସାହି ପରିକ୍ରମା କରିଥାନ୍ତି । ଦକ୍ଷିଣ ଭାରତର ରାଜମହେନ୍ଦ୍ରୀ ଅଞ୍ଚଳରୁ ଆସିଥିବା ଦେଡ଼ରା ସମ୍ପ୍ରଦାୟ ବୁଣାକାର ପରିବାର ଦ୍ୱାରା ଦେଶୀବେହେରା ସାହିରେ ଥିବା ମୁଖ୍ୟଙ୍କ ଦ୍ୱାରା ମା'ଙ୍କୁ ମା' ଘରକୁ ନିମନ୍ତ୍ରଣ କରନ୍ତି । ଏହି ପର୍ବ ପ୍ରତି ଦୁଇ ବର୍ଷରେ ଥରେ 'ମା ବୁଢ଼ୀ ଠାକୁରାଣୀ ଯାତ୍ରା' ରୂପେ ଅନୁଷ୍ଠିତ ହୁଏ । ଏହା ବ୍ୟତୀତ ଶୀତଳ ଷଷ୍ଠୀ ଯାତ୍ରା, ଝାମି ଯାତ୍ରା ଓ କୋଠିଶାଳ ଯାତ୍ରା ଭଳି ବହୁ ସାଂସ୍କୃତିକ କାର୍ଯ୍ୟକ୍ରମମାନ ପ୍ରଚଳିତ କରି ଏହି ଐତିହାସିକ ମହୁରୀ ରାଜବଂଶର ଗୌରବକୁ ଇତିହାସ ପୃଷ୍ଠାରେ ଲୋକଲୋଚନକୁ ଆଣିପାରିଛନ୍ତି ।

ପ୍ରଧାନ ଶିକ୍ଷକ
ସରକାରୀ ଭାରତୀ ବିଦ୍ୟାପୀଠ, ଗଞ୍ଜାମ



# ବିତରଣ ମନସ୍ୱୀ ବୈତରଣୀ

**ରମାକାନ୍ତ ନାୟକ**

ଉର୍ଦ୍ଧ୍ୱାୟମାନ ଶାଳ, ପିଆଶାଳ ତଥା ଚିହ୍ନା ଅଚିହ୍ନା ବୃକ୍ଷରାଜିର ଘନ ସବୁଜିମା ବଳୟ, ଆଦିଗନ୍ତ-ବ୍ୟାପ୍ତ ବିଶାଳ ଶିଳାଖଣ୍ଡ ଗ୍ରଥିତ ଉତ୍ତୁଙ୍ଗ ପର୍ବତମାଳାର ନୈସର୍ଗିକ ସୁଷମା



ବିମଣ୍ଡିତ କେନ୍ଦୁଝରୀ, ନିସର୍ଗ-ଲକ୍ଷ୍ମୀଙ୍କର ପ୍ରମୋଦ ଉଦ୍ୟାନ ଅଟେ । ଏହାର ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ ଭଣ୍ଡାରର ଅନନ୍ୟ ଉତ୍ସ ଭାବରେ ବିଦିତ ହୁଏ ପାପ ନାଶିନୀ ପୁଣ୍ୟତୋୟା ନିର୍ଝର ବୈତରଣୀ, ଯାହାର ହରିତ ଦୁର୍ବାଦଳ ବିମଣ୍ଡିତ ଉଭୟ ତଟ ଦେଶରେ ନବ ନବ ଭୂଷଣରେ ସଜ୍ଜିତା ଛନ୍ଦଗାମିନୀ ପ୍ରକୃତିରାଣୀ ରଚନ୍ତି ଷଡ଼ ଋତୁରେ କମନୀୟ ବିହାର ଲୀଳା, ସୃଷ୍ଟିର ଆଦ୍ୟକାଳରୁ । ଏହାର ଅଯାଚିତ ଓ ଅବାଞ୍ଛିତ ଦାନ ଫଳରେ କେନ୍ଦୁଝର ଧରଣୀ ହୁଏ- ସୁଜଳା, ସୁଫଳା ଓ ଶସ୍ୟ ଶ୍ୟାମଳା । ଏହାର ସୁନାବ୍ୟା ଜଳ ସ୍ରୋତରେ ଏକଦା ହସି ଉଠୁଥିଲା ସମୁଦ୍ରଗାମିନୀ ବୋଇତମାଳା । ଏହାର ସ୍ୱଚ୍ଛ ଅମୃତ ସଲିଳଧାରା ପ୍ରଶମନ କରିଆସିଛି ଏହି ଭୂଖଣ୍ଡର ଅଦମ୍ୟ ତୃଷ୍ଣାକୁ ଅନାଦି କାଳରୁ । 'ବିତରଣେନ ଦାନେନ ଲଙ୍ଘ୍ୟତେ ଇତି ବୈତରଣୀ'- ଅର୍ଥାତ୍ 'ଅଭାବଗ୍ରସ୍ତଙ୍କୁ ଯଥାସାଧ୍ୟ ବିତରଣ କରେ ବୋଲି ତା'ନାମ ବୈତରଣୀ ।' ଏହି ପବିତ୍ର ପ୍ରାଚୀନ ଲୋକମାତା ବୈତରଣୀର ଇତିହାସ, ପୁରାଣ ଓ କିମ୍ବଦନ୍ତୀର ପାଦଚିହ୍ନରେ, ସିଦ୍ଧି ଓ ସାଧନାରେ ବିଚିତ୍ର ବର୍ଣ୍ଣା । ଏହାର ବର୍ଣ୍ଣନାରେ ଯୁଗଯୁଗ ବ୍ୟାପୀ ଶାସ୍ତ୍ରପୁରାଣ ଶତମୁଖର ।

ପୁଣ୍ୟତୋୟା ବୈତରଣୀ ଉତ୍କଳର ଗଙ୍ଗା ଭାବରେ ବିଦିତ । ଏହାର ପ୍ରାଚୀନତା ବିଭିନ୍ନ ପୁରାଣଶାସ୍ତ୍ର ଦ୍ୱାରା ପ୍ରମାଣସିଦ୍ଧ । ବ୍ରହ୍ମାପୁରାଣରେ ଉଲ୍ଲେଖ ଅଛି –

'ଗୋନାସିକାତଃ ସମ୍ଭୂତା ପୁଣ୍ୟା ବୈତରଣୀ ନଦୀ
ଭକ୍ତିଦା ମୁକ୍ତିଦା ନୃଣାଂ ସକୃଦ୍ଦର୍ଶନ ମାତ୍ରତଃ ।'

X X X

ଆସ୍ତେ ବୈତରଣୀ ତତ୍ର ସର୍ବପାପ ହରା ନଦୀ ।

ବାୟୁ ପୁରାଣରେ ବର୍ଣ୍ଣିତ ହୋଇଛି –

'ଯାସ୍ତେ ବୈତରଣୀ ନାମ ନଦୀ ତ୍ରୈଲୋକ୍ୟେ ବିଶ୍ରୁତା
ସାବତୀର୍ଣ୍ଣା ଗୟାକ୍ଷେତ୍ରେ ପିତୃଣାଂ ତାରଣାୟ ବୈ
ସ୍ନାତା ଗୋ ଦୋ ବୈତରଣ୍ୟାଂ ତ୍ରିଃ ସପ୍ତକୁଳ ମୁଦ୍ଧରେତ୍ ।'

ଯାଜପୁର ବିରଜା କ୍ଷେତ୍ର ପରିକ୍ରମା ବ୍ୟକ୍ତ କରେ– ସତ୍ୟଯୁଗରେ ରାଜା ଯଯାତିଙ୍କ ନିମନ୍ତ୍ରଣକ୍ରମେ ସର୍ବଲୋକ ପିତାମହ ବ୍ରହ୍ମା, ବିରଜା କ୍ଷେତ୍ରରେ ଯଜ୍ଞାନୁଷ୍ଠାନ କରିବା ନିମନ୍ତେ ସ୍ୱୀକୃତି ଦେଲେ । ଏହା ସମ୍ପନ୍ନ ନିମିତ୍ତ ବ୍ରହ୍ମା ସ୍ୱର୍ଗର ଦେବତା ଓ ମୁନିଋଷିଙ୍କ ସମେତ ଋତ୍ୱିକ୍‌ମାନଙ୍କୁ ଆବାହନ କଲେ । ସେମାନଙ୍କ ଅବଭୃଥ ସ୍ନାନ ସମ୍ପାଦନା କରିବାକୁ ବ୍ରହ୍ମା ସ୍ୱର୍ଗର ସରଣୀ ବୈତରଣୀଙ୍କୁ ମର୍ତ୍ତ୍ୟରେ ପ୍ରବାହିତ ହେବାକୁ ନିମନ୍ତ୍ରଣ କଲେ । ବୈତରଣୀ ମର୍ତ୍ତ୍ୟରେ ଆବିର୍ଭୂତା ହୋଇ ଅନତି ପଥ ଅତିକ୍ରମ କରିବା ପରେ ପାର୍ବତ୍ୟ ନାରୀମାନଙ୍କର ନଗ୍ନ ବୀଭତ୍ସ ରୂପ ଅବଲୋକନ କରି ପାପ ଭୟରେ ସଂତ୍ରସ୍ତ ନଦୀମାତୃକା ଆତ୍ମଗୋପନ କଲେ । ପରନ୍ତୁ, ପ୍ରତି କ୍ରୋଶରେ ଶିବଲିଙ୍ଗମାନ ସ୍ଥାପନ କରିବାର ପ୍ରତିଶ୍ରୁତି ବ୍ରହ୍ମାଙ୍କଠାରୁ ପ୍ରାପ୍ତ ହେବାପରେ ମାତା ବୈତରଣୀ ପୁନର୍ବାର ଆବିର୍ଭୂତା ହୋଇ ପ୍ରବାହିତ ହେଲେ ।

ଅଷ୍ଟାଦଶ ଶତାବ୍ଦୀର କବି ପଣ୍ଡିତ ନୀଳକଣ୍ଠଙ୍କ ରଚିତ ସଂସ୍କୃତ ନାଟିକା 'ଭଞ୍ଜ ମହୋଦୟମ୍' ଓ କ୍ଷେତ୍ର ମୋହନ ମିଶ୍ରଙ୍କ 'କେନ୍ଦୁଝର ଇତିହାସ'ରେ ଏକ ବହୁ ପ୍ରଚଳିତ ଜନଶ୍ରୁତିର ଅବତାରଣା କରାଯାଇଛି । ଏହା ଅନୁଯାୟୀ କେନ୍ଦୁଝରର ସର୍ବପ୍ରାଚୀନ ଜନଜାତି ଜୁଆଙ୍ଗମାନେ କ୍ରୀଡ଼ା କୌତୁକରେ ନିମଗ୍ନ ଥିବା ବେଳେ ଅକସ୍ମାତ୍ ପର୍ବତ ଗାତ୍ରରୁ ଜଳସ୍ରୋତର ଉଦ୍‌ଗମନ ଓ ସେମାନଙ୍କର କ୍ରୀଡ଼ାସ୍ଥଳୀରେ ତାହାର ପ୍ରବାହରେ ଉତ୍ତ୍ୟକ୍ତ ହୋଇ ଛିନ୍ନ ଗୋ ମସ୍ତକ ଦ୍ୱାରା ତାହାକୁ ଅବରୁଦ୍ଧ କରିଦେଲେ । ଗୋ ମସ୍ତକ ସଂସର୍ଗରେ ଅପବିତ୍ରା ହେବାରୁ ବୈତରଣୀ କ୍ଷୁବ୍ଧା ହୋଇ ପାତାଳି ହେଲେ । ପୁନର୍ବାର ବ୍ରହ୍ମାଙ୍କ ଯଜ୍ଞରେ ତୁଷ୍ଟ ହୋଇ ବୈତରଣୀ ସେହି ଯଜ୍ଞକୁଣ୍ଡରୁ ପୁନଃ ଆବିର୍ଭୂତା ହେଲେ । ସେହି କୁଣ୍ଡ ବ୍ରହ୍ମକୁଣ୍ଡ ଭାବରେ ପୁରାଣ ପ୍ରସିଦ୍ଧ ଅଟେ । ଏହି ସ୍ଥାନରୁ ପ୍ରଖର ସ୍ରୋତା ବୈତରଣୀର ଧାରା ଗୋମୁଖର ଏକ ନାସାରୁ ଜଳ ଓ ଅନ୍ୟ ନାସିକାରୁ ସିକତା ନିର୍ଗତ ହେବାରେ ଲାଗିଲା । ଏହିଠାରୁ ହିଁ ବୈତରଣୀର ନାମ ଗୋନାସା ପ୍ରଭବା ଓ ଶୈଳର ନାମ ଗୋନାସିକା ପର୍ବତ ହୋଇଅଛି ।

'ଲୋକଗଳ୍ପ ସଂଚୟନ–କିମ୍ବଦନ୍ତୀ' ଶୀର୍ଷକ ଗ୍ରନ୍ଥରେ ଡଃ କୁଞ୍ଜବିହାରୀ ଦାଶ ବର୍ଣ୍ଣନା କରିଛନ୍ତି ବହୁ ଲୋକପ୍ରିୟ ତଥା ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ଏକ କିମ୍ବଦନ୍ତୀ । ଏକଦା କ୍ରୋଧବଶତଃ ବଉଳା ନାମ୍ନୀ ଏକ ଗାଭୀକୁ ମହାଦେବ ଶିବ ହତ୍ୟା କରିବା ପରେ ତାହାର ଛିନ୍ନ ମସ୍ତକ ତାଙ୍କ ହସ୍ତରୁ ବିଚ୍ଛିନ୍ନ ହେଲା ନାହିଁ । ଏହି ଗୋହତ୍ୟା ପାପ ନାଶନ ଉଦ୍ଦିଷ୍ଟ ଦ୍ୱାଦଶ ବର୍ଷର ତପସ୍ୱ୍ୟା ଅନ୍ତେ ଉକ୍ତ ମସ୍ତକ ଯେଉଁ ସ୍ଥାନରେ ନିପତିତ ହେଲା, ତାହା ହେଉଛି ପ୍ରସିଦ୍ଧ ଗୋନାସିକା ।

ବୈତରଣୀଙ୍କ ପୂର୍ବ ସର୍ତ୍ତ ପରିପୂରଣ ଏବଂ ଚତୁର୍ଦ୍ଦଶ ଭୁବନର ମଙ୍ଗଳ ସାଧନ ଉଦ୍ଦେଶ୍ୟରେ ଏହି ସ୍ରୋତସ୍ୱିନୀର ଗନ୍ତବ୍ୟ ପଥରେ ବ୍ରହ୍ମା ଚଉଦଟି ପୀଠରେ ଯଜ୍ଞ ଅନୁଷ୍ଠାନ ପୂର୍ବକ କୁଣ୍ଡମାନ ପ୍ରତିଷ୍ଠା କରିଥିଲେ । ଅଧୁନା ସେଗୁଡ଼ିକ ବ୍ରହ୍ମକୁଣ୍ଡ, ଅଜକୁଣ୍ଡ, ରାମକୁଣ୍ଡ, କେଶରୀ କୁଣ୍ଡ(ସୀତାକୁଣ୍ଡ), ସିଂହଦ୍ୱାର କୁଣ୍ଡ, ରୂପାକୁଣ୍ଡ, ସାମନ୍ତ କୁଣ୍ଡ, ଚାକଦର କୁଣ୍ଡ, ଅନ୍ଧାରୀ କୁଣ୍ଡ, ଖଲି ଚଉବତି କୁଣ୍ଡ, ଭୀମକୁଣ୍ଡ ଓ ବରାହକୁଣ୍ଡ ଭାବରେ ପ୍ରଖ୍ୟାତ । ଏଥିମଧ୍ୟରୁ ବ୍ରହ୍ମକୁଣ୍ଡକୁ 'ମୁଖ', ରାମକୁଣ୍ଡକୁ 'ବକ୍ଷ' ଏବଂ ଭୀମକୁଣ୍ଡକୁ 'ନାଭିକୁଣ୍ଡ' ଭାବରେ ବିବେଚନା କରାଯାଏ । ପ୍ରଚଳିତ ପ୍ରବାଦ କହେ ବୈରୋଚନ ନାମକ ଦୈତ୍ୟ ଏକଦା ଗୋନାସିକାର ନିର୍ଜନ କାନ୍ତାରରେ ପରିଭ୍ରମଣ କରୁଥିବା ସମୟରେ ଅତ୍ୟନ୍ତ ତୃଷାର୍ତ୍ତ ହୋଇ ଜଳର ସନ୍ଧାନରେ ବ୍ୟର୍ଥ ହେବା ପରେ କ୍ରୋଧାନ୍ୱିତ ଦାନବ ପର୍ବତ ବକ୍ଷରେ ତ୍ରିଶୂଳ ପ୍ରହାର କଲା । ବଜ୍ର ପ୍ରହାରରେ ପ୍ରସ୍ତରର ବକ୍ଷ ଚୂର୍ଣ୍ଣିଭୂତ ହୋଇ ତ୍ରିଧାରା ଜଳସ୍ରୋତ ପ୍ରବାହିତ ହେବାରେ ଲାଗିଲା । ଏହି ସଳିଳଧାରା 'ବୈରୋଚନୀ' ବା 'ବୈତରଣୀ' ନାମରେ ବିଖ୍ୟାତ ହେଲା ।

ଗବେଷକ ଡଃ ଅର୍ଜୁନ ଯୋଷୀଙ୍କ ମତରେ କେନ୍ଦୁଝର ହେଉଛି ପ୍ରାଚୀନ ଶୈବକ୍ଷେତ୍ର । ଏହାର ନାମ, 'କଇନ୍ଦୁଝର' ଅର୍ଥାତ୍ ଯାହାଙ୍କ ମସ୍ତକରେ ଚନ୍ଦ୍ର ଓ ନିର୍ଝର ବିଦ୍ୟମାନ, ତାହା ହିଁ କେନ୍ଦୁଝର, ଅର୍ଥାନ୍ତରେ 'ମହାଦେବ ଶିବ' । ବୈତରଣୀ

ନଦୀର ଉତ୍ପତ୍ତିସ୍ଥଳଠାରୁ ସାଗର ସଂଗମ ପର୍ଯ୍ୟନ୍ତ କ୍ରୋଶଲିଙ୍ଗମାନଙ୍କର ସ୍ଥିତି କେନ୍ଦୁଝରର ମହାଶୈବାୟନ ସମ୍ବନ୍ଧରେ ଦୃଢ଼ ପ୍ରମାଣ ପ୍ରଦାନ କରେ । ବୈତରଣୀର ଶୀର୍ଷ ଦେଶରେ ଆଦି କ୍ରୋଶଲିଙ୍ଗ ବ୍ରହ୍ମେଶ୍ୱର ଓ ପାଦଦେଶରେ ଆଖଣ୍ଡଳେଶ୍ୱରଙ୍କ ବ୍ୟତୀତ ଅବଶିଷ୍ଟ ଏକଶତ ଲିଙ୍ଗ ମହାପ୍ରଭୁ, ବିଭିନ୍ନ ପୁଣ୍ୟ କ୍ଷେତ୍ରରେ ବିରାଜିତ । ସେଗୁଡ଼ିକ ମଧ୍ୟରୁ ଅନ୍ୟତମ ବାଂଶପାଳଠାରେ ବିଶେଶ୍ୱର, ଯାତ୍ରାଠାରେ ବାଣେଶ୍ୱର, ନୟାଗଡ଼ଠାରେ ମୁକ୍ତେଶ୍ୱର, ଚମକପୁରରେ ଶିଖରେଶ୍ୱର, ରାମତୀର୍ଥଠାରେ ରାମେଶ୍ୱର, ଚମ୍ପୁଆରେ ଚମ୍ପକେଶ୍ୱର, ଜ୍ୟୋତିପୁରରେ ଭୁବନେଶ୍ୱର, ସିଲିପଦାରେ ମହେଶ୍ୱର, ପାଟଣାରେ ଆନନ୍ଦେଶ୍ୱର, ଏରଣ୍ଡରେ ମହାଦେବେଶ୍ୱର, ଘସିପୁରାରେ ଝାଡ଼େଶ୍ୱର, ଆନନ୍ଦପୁରରେ ଆନନ୍ଦେଶ୍ୱର, ଉତ୍ତରେଶ୍ୱର, ଜଅଁରାରେ ଜଳେଶ୍ୱର, ଜନାର୍ଦ୍ଦନପୁରରେ ଜନେଶ୍ୱର, ଟୁକୁଣାରେ କୁଣ୍ଡେଶ୍ୱର, ଶିବନାରାୟଣପୁରରେ ପର୍ବତେଶ୍ୱର, ଫକୀରପୁରରେ ବାଲୁଙ୍କେଶ୍ୱର, ହାବଳେଶ୍ୱରରେ ହାବଳେଶ୍ୱର, ବଞ୍ଜୋରେ ବଟେଶ୍ୱର, ଷଡ଼ଙ୍ଗରେ ଶିଖରେଶ୍ୱର, ତରଭାରେ ବରେଶ୍ୱର, ମଧୁକେଶରୀରେ ମଧୁକେଶ୍ୱର ଓ ବାଲିବରୁଆଁରେ ବାଲୁଙ୍କେଶ୍ୱର ।

ପୁରାଣ ଅନୁସାରେ, ବୈତରଣୀ, ଗଙ୍ଗା ପରି ଏକ ଦେବ ନଦୀ । ଏହା ବିଷ୍ଣୁପାଦ ସମ୍ଭୂତା ନବଧାଗଙ୍ଗା ଯଥା ଗୋଦାବରୀ, ଗଙ୍ଗା, ଜାହ୍ନବୀ, କାବେରୀ, ଗୌତମୀ, କୃଷ୍ଣା, ରେବା, ବ୍ରାହ୍ମଣୀ ଓ ବୈତରଣୀ ମଧ୍ୟରେ ଅନ୍ୟତମ । 'ଅମରକୋଷ'ର ପାତାଳ ବର୍ଗ ଓ ରାମାୟଣରେ ଏହି ନଦୀର ନାମ ସ୍ଥାନୀତ ହୋଇଅଛି । ମହାଭାରତର ବନପର୍ବରେ ଉଲ୍ଲେଖ ଅଛି, ଲୋମଶ ଋଷି ପାଣ୍ଡବମାନଙ୍କୁ ବୈତରଣୀ ସମ୍ବନ୍ଧରେ ସୂଚନା ଦେଇ କହିଛନ୍ତି ।

'ଏତେ କଳିଙ୍ଗାଟ କୌନ୍ତେୟ ଯତ୍ର ବୈତରଣୀ ନଦୀ'
ପୁନଶ୍ଚ
'ତତୋ ବୈତରଣୀଂ ଗଚ୍ଛେତ, ସର୍ବପାପ ପ୍ରମୋଚନୀଂ ।'

ଶାକ୍ତମାନଙ୍କ ତନ୍ତ୍ରଶାସ୍ତ୍ରରେ ପବିତ୍ର ନଦୀମାନଙ୍କର ଜଳଧାରାକୁ 'ଜଳଦୁର୍ଗା' ଭାବରେ ବର୍ଣ୍ଣନା କରାଯାଇଛି । ସମଗ୍ର ଭାରତବର୍ଷର ଦଶଟି ପ୍ରମୁଖ ଜଳଧାରା ମଧ୍ୟରୁ 'ବୈତରଣୀ ଜଳଦୁର୍ଗା' ଅନନ୍ୟା । ଏହାର ନିଦର୍ଶନ ମଧ୍ୟ ଉପଲବ୍ଧ ହୁଏ ଉଦୟପୁରଠାରେ ବୈତରଣୀ ବକ୍ଷରେ ସାବିତ୍ରୀ ଉପାସନାରୁ । କପିଳ ସଂହିତାରେ ବୈତରଣୀକୁ ଜନ୍ମ ଜନ୍ମାନ୍ତର ପାପ ହରଣକାରୀ ଭାବରେ ଅଭିହିତ ହେବା ସହିତ ତାହାକୁ 'ଗୁପ୍ତଗଙ୍ଗା' ଭାବରେ ସମ୍ବୋଧିତ କରାଯାଇଛି ।

'ଗୁପ୍ତଗଙ୍ଗେ ନମସ୍ତୁଭ୍ୟଂ ଋଷି ଦେବାଭିବନ୍ଦିତେ,
ନିଜଦେହଂ ମହାଭାଗେ ମାଂ ବୈଟୌଦ୍ଧର ପାତକାତ୍ ।
ଗୋନାସିକା ସମୁଦ୍ଭୂତେ ଧାତୁ ଯଜ୍ଞ ସମାଗତେ
ଜନ୍ମ ଜନ୍ମନି ଯତ୍ ପାପଂ ସ୍ନାତେ ନାନେ ନଶ୍ୟନ୍ତି ।'

ବ୍ରହ୍ମାଣ୍ଡ ପୁରାଣ ବୈତରଣୀ ମହିମା ବର୍ଣ୍ଣନା କରି ପ୍ରକାଶ କରିଛି–

'ଋଷିକୁଲ୍ୟା ସମାସାଦ୍ୟଂ ଯାବତ୍ ବୈତରଣୀ ନଦୀ
ତୀର୍ଥଯାତ୍ରା ବିନାଗଚ୍ଛତ୍ ପୁନଃ ସଂସ୍କାର ମର୍ହତି ।'

କପିଳ ପୁରାଣ ବ୍ୟକ୍ତ କରେ, 'ତତ୍ର ବୈତରଣୀ ଦେବୀ ନଦୀ ମୁକ୍ତି ପ୍ରଦାୟିନୀ ।' ସାରଳା ଦାସଙ୍କ ଓଡ଼ିଆ ମହାଭାରତରେ ବୈତରଣୀ ନାମ ଚିର ଭାସ୍ୱର । ସେଥିରେ ଉଲ୍ଲେଖ ଅଛି – 'ଉତ୍କଳ ଦେଶେ ବହଇ ନଦୀ ବଇତରଣୀ ।' 'ତୀର୍ଥ ଚିନ୍ତାମଣି' ମଧ୍ୟ ବୈତରଣୀଙ୍କର ଆଧାତ୍ମ୍ ମହିମା ବର୍ଣ୍ଣନାରେ ଶତମୁଖର ।

ପଣ୍ଡିତ ନୀଳକଣ୍ଠ ମିଶ୍ର ପ୍ରଖ୍ୟାତ ସଂସ୍କୃତ ନାଟକ 'ଭଞ୍ଜ ମହୋଦୟମ୍'ରେ ଗୋନାସା ପ୍ରଭବା ବୈତରଣୀଙ୍କର ସରସ ଗମ୍ଭୀର ବର୍ଣ୍ଣନା ଦେଇ ଲେଖିଛନ୍ତି –

'ଗୋନାସାଭିଧ ଭୁଭୃତଃ ପରିସରେ ଶ୍ରୀ ବୈତରଣ୍ୟାସ୍ତଟେ,
ବ୍ରହ୍ମାରୋପିତ ଚଂପକସ୍ୟ ନିକଟେ ପୁଣ୍ୟ ଶିଳା ସଂକଟେ ॥
ନାନା ବୃକ୍ଷ ଯୁତେ ସୁଚନ୍ଦନ ବନୀବାଟୈଃ ସଦା ସେବିତେ,
ତିଷ୍ଠତଂ ଶିବରୂପିଣଂ ପରମିମଂ ବ୍ରହ୍ମେଶ୍ୱରାଖ୍ୟଂ ଭଜେ ॥
କ୍ରୋଶଂ କ୍ରୋଶଂ ସପଥି ସବନସ୍ଥାନ ପର୍ଯ୍ୟନ୍ତ ସ୍ଥାତ୍
ତତ୍ ପ୍ରୀତ୍ୟର୍ଥ ବିଷମ ଗହନେ ଶୈବଲିଙ୍ଗାନି ବେଧାଃ ।'

ପଣ୍ଡିତ ମୃତ୍ୟୁଞ୍ଜୟ ରଥ ତାଙ୍କ ରଚିତ 'ନରାଜ' କାବ୍ୟରେ ବୈତରଣୀର ଉତ୍ପତ୍ତିସ୍ଥଳ 'କେନ୍ଦୁଝର ଶିରି ଗିରି ଗୋନାସିକା'ର କୀର୍ତ୍ତିଗାଥା ଅତ୍ୟନ୍ତ ମନୋଜ୍ଞ ରୀତିରେ ଉପସ୍ଥାପନା କରିଛନ୍ତି । ବୈତରଣୀକୁ ସେ 'ପୁଣ୍ୟା ପୟସ୍ୱିନୀ ପତିତ ପାବନୀ' ଭାବରେ ଅବତାରଣା କରିଛନ୍ତି । ଦିବ୍ୟ ତଟିନୀ ବୈତରଣୀ ସ୍ୱର୍ଗରେ

ଚମ୍ପକ ବରଣା, ମର୍ତ୍ତ୍ୟରେ ଶୋଣିତ ବର୍ଣ୍ଣା ଏବଂ ପାତାଳ ବା ମୃତ୍ୟୁଲୋକରେ ଉତ୍ତପ୍ତ, ଯେଉଁଠି ତା'ର ନାମ 'ତପ୍ତ–ବୈତରଣୀ' । ବାସ୍ତବରେ ଏହି ପୌରାଣିକ କଥନିକାରେ, ଭୌଗଳିକ ଉପାଦାନଜନିତ ସ୍ଥିତି ହିଁ ସୂଚିତ ହୁଏ । ଗୋନାସିକାରୁ ଆତ୍ମପ୍ରକାଶ ଲଗ୍ନରେ ବୈତରଣୀର ନିର୍ମଳ ଜଳଧାରା ତତ୍ ସଂଲଗ୍ନ ମୃତ୍ତିକା ସଂସ୍ପର୍ଶ ହେତୁ ଚମ୍ପକ ବର୍ଣ୍ଣ ଧାରଣ କରେ । ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ଶିବଙ୍କର ଅତି ପ୍ରିୟ ଚମ୍ପକ ପୁଷ୍ପ ବୃକ୍ଷରାଶିର ପ୍ରାଚୁର୍ଯ୍ୟର ଅଲୌକିକ ସଂଯୋଗ ଏକ ନୈସର୍ଗିକ ଶୋଭାର ମନୋହର ଆଲେଖ୍ୟ ବହନ କରେ । ଏଥିପାଇଁ ବୈତରଣୀର ଅନ୍ୟ ନାମ ହେଉଛି– 'ଚମ୍ପକ ବରଣୀ ବୈତରଣୀ' । ପରବର୍ତ୍ତୀ ପାର୍ବତ୍ୟ ଗନ୍ତବ୍ୟ ପଥରେ ଲୋହିତ ମୃତ୍ତିକାର ବର୍ଣ୍ଣ ଏହାର ସୌଷ୍ଠବକୁ ପ୍ରଭାବିତ କରିବା ସହିତ ସାଗର ସଂଗମରେ ଏହା ରଙ୍ଗହୀନ ହୋଇଯାଇ ସମୁଦ୍ରର ରଙ୍ଗରେ ଏକାତ୍ମ ହୋଇଯାଏ ।

ଗୋନାସିକା ସମୀପ ଏକ ପ୍ରଶସ୍ତ ସମତଳ ଶିଳାଭୂମି 'ଋଷିସଭା' ଭାବରେ ନାମିତ । ପ୍ରବାଦ ବ୍ୟକ୍ତ କରେ, ଭାର୍ଗବ ଋଷି ଏଠାରେ ଭକ୍ତମାନଙ୍କ ସହିତ ଧର୍ମ ଆଲୋଚନାର ଆୟୋଜନ କରୁଥିଲେ । ପୁରାଣ କହେ, ବୈତରଣୀର ଦକ୍ଷିଣ ପାର୍ଶ୍ୱରେ ମତ୍ସ୍ୟଦେଶ ଓ ଉତ୍ତର ଭାଗରେ ମଘଦେଶ ଅବସ୍ଥିତ ଥିଲା । ସାରଳା ଦାସ କୃତ ମହାଭାରତ 'ବିରାଟ ପର୍ବ' ଅନୁଯାୟୀ 'ମଘ–ମତ୍ସ୍ୟ' ଦେଶର ଅଧିପତି ଥିଲେ–ବିରାଟ । ଏହି ଅଞ୍ଚଳ 'ଖିଚିଂ ମଣ୍ଡଳ' ବୋଲି ଖ୍ୟାତ ଥିଲା । ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ମତ୍ସ୍ୟଦେଶକୁ ସଂପ୍ରତି 'କେନ୍ଦୁଝର' ଭାବରେ ଚିହ୍ନିତ କରାଯାଏ । କେନ୍ଦୁଝରରେ ମଧ୍ୟ ରହିଛି ପାଣ୍ଡବମାନଙ୍କ ବିରାଟ ରାଜ୍ୟରେ ପ୍ରାକ୍ ଅବସ୍ଥିତି ଓ ଅବସ୍ଥାନକାଳୀନ କେତେକ ସ୍ମୃତି ସଙ୍କେତ । ଚମ୍ପୁଆ ଉପକଣ୍ଠରେ ଥିବା ହସ୍ତିନା, ଜୟନ୍ତା, ବାରୁଣା, ଯମପ୍ରସ୍ଥ, ଇନ୍ଦ୍ରପ୍ରସ୍ଥ, ପଞ୍ଚୁପାଣ୍ଡବଙ୍କ ସ୍ମୃତିକୁ ଏ ଯାବତ୍ ଉଜ୍ଜୀବିତ କରି ରଖିଛି । କରିଆଠାରୁ ଚାଳିଶ କି.ମି. ଦୂରବର୍ତ୍ତୀ ଭୀମକୁଣ୍ଡଠାରେ ଥିବା ବୈତରଣୀର ଏକ ଗଭୀର ସୁଡ଼ଙ୍ଗରେ ଦ୍ୱିତୀୟ ପାଣ୍ଡବ ଭୀମଙ୍କର ଛଦ୍ମଦେଶରେ ବିରାଟ ନଗରଠାରେ ଅବସ୍ଥାନ କରୁଥିବା ସମୟରେ ସ୍ନାନ କରୁଥିବା ଲୋକକଥା ଏବେ ମଧ୍ୟ ଶୃତିଗୋଚର ହୁଏ । କଲୁଷ ନାଶନ ଓ ମୁକ୍ତି ପ୍ରଦାନ ନିମିତ୍ତ ବୈତରଣୀର ଅବତରଣ ସମ୍ବନ୍ଧରେ 'ଗୁରୁଡ଼ ପୁରାଣ'ରେ ବର୍ଣ୍ଣିତ ହୋଇଛି । 'ବାମନ ପୁରାଣ' ଓ 'ଶ୍ରୀମଦ୍ ଭାଗବତ'ରେ ମଧ୍ୟ ଏହି ପ୍ରାଚୀନ ପବିତ୍ର ନଦୀର ମହିମା ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ ।

ଗୁପ୍ତଗଙ୍ଗା ଏହି ଗୁପ୍ତ ବୈତରଣୀ ୩୬୦ କି.ମି. ବିଶିଷ୍ଟ ଦୁର୍ଗମ ଗିରିକାନ୍ତାର ଓ କୋମଳ ସମତଳ ଭୂମି ଅତିକ୍ରମ କରି ଚନ୍ଦ୍ରବାଲି ବା ଚାନ୍ଦବାଲି ସନ୍ନିକଟ ଧାମରାଠାରେ ବଙ୍ଗୋପସାଗର ସହିତ ବିଲୀନ ହୋଇଯାଇଛି । ଗୋନାସିକା ଶୃଙ୍ଗରୁ ଉଦ୍‌ଗମ ହେବା ପରେ ଅଶୀ କି.ମି. ଉତ୍ତର ଦିଗରେ ପ୍ରବାହିତ ହୋଇ ହଠାତ୍ ନବେ ଡିଗ୍ରୀରେ ପଛ ପରିବର୍ତ୍ତନ କରି ପୂର୍ବଦିଗକୁ ଅଗ୍ରସର ହୋଇଅଛି । ଏହାର ପ୍ରବାହଧାରା ସମ୍ପ୍ରତି ଓଡ଼ିଶା ଓ ଝାଡ଼ଖଣ୍ଡ ରାଜ୍ୟର ପ୍ରାକୃତିକ ସୀମାରେଖା ଭାବରେ ଅଭିହିତ ହୁଏ । ପଞ୍ଚଷଠିଟି ଉପନଦୀ ଏହି ପୁଣ୍ୟତୋୟା ନିର୍ଝରିଣୀରେ ସଂଯୁକ୍ତ ହୋଇ ଏହାର କଳେବରକୁ ପରିପୁଷ୍ଟ କରିବାରେ ସହାୟକ ହୋଇଛନ୍ତି । ସେଥିମଧ୍ୟରୁ ବାମପାର୍ଶ୍ୱରେ ପଇଁତିରିଶିଟି ଓ ଦକ୍ଷିଣ ପାର୍ଶ୍ୱରେ ତିରିଶିଟି ଉପନଦୀ ବୈତରଣୀର ସଙ୍ଗମ ଲାଭ କରିଛନ୍ତି । ସେଗୁଡ଼ିକ ମଧ୍ୟରୁ ଅନ୍ୟତମ ହେଉଛନ୍ତି – ଅରଡ଼େଇ, କାଳିର, କୁକୁରକଟା, କୁଶେଇ, ମୂଷଳ ଓ ଶାଳନ୍ଦୀ । କେନ୍ଦୁଝର ଜିଲ୍ଲାରେ ବୈତରଣୀ ପ୍ରାୟ ଦୁଇଶହ କି.ମି. ପ୍ରବାହିତ ହୋଇ ଜିଲ୍ଲାର ଜୀବନରେଖା ଭାବରେ ପ୍ରତୀୟମାନ ହୁଏ ।

ବୈତରଣୀ ତଟରେ ଅବସ୍ଥିତ ଚମ୍ପୁଆ, ରାମଲା, ଜଗନ୍ନାଥପୁର ପ୍ରଭୃତି ସ୍ଥାନରୁ ପ୍ରାଚୀନ ପ୍ରସ୍ତର ଯୁଗର ସଂକେତ ଆବିଷ୍କୃତ ହୋଇଛି । ପ୍ରାୟ ପଚାଶ ହଜାର ବର୍ଷ ପୂର୍ବେ ଏଠାରେ ଆଦିମ ମାନବ ସଭ୍ୟତାର ଯେ ଉନ୍ମେଷ ଘଟିଥିଲା – ଏଥିରେ ସନ୍ଦେହ ନାହିଁ । ସୀତାବି ଓ ଅସନପାଟ ପ୍ରଭୃତି ସ୍ଥାନରୁ ଉପଲବ୍ଧ ଶୈଳଚିତ୍ର ଓ ଶିଳାଙ୍କନ ଏହି ତଥ୍ୟକୁ ଅଧିକ ଶାଣିତ କରନ୍ତି । ଜୈନମାନଙ୍କ ପ୍ରାକୃତ ଭାଷାରେ ପ୍ରଣୀତ ଶବ୍ଦକୋଷ, 'ରାଜେନ୍ଦ୍ର'ରୁ ବାହ ନଦୀ କୂଳରେ ବିକଶିତ ଆନନ୍ଦପୁର ନଗର ସମ୍ପର୍କରେ ସୂଚନା ମିଳେ । ଏହି 'ବାହ ନଦୀ'କୁ ବୈତରଣୀ ଭାବରେ କେତେକ ଗବେଷକ ମତପୋଷଣ କରନ୍ତି । ଶାସ୍ତ୍ର

ମତରେ ବୈତରଣୀ ଗଙ୍ଗାଠାରୁ ଦ୍ୱାଦଶ ବର୍ଷ ବୟୋଜ୍ୟେଷ୍ଠା । ତେଣୁ ତାହାର ଅନ୍ୟତମ – 'ବୁଢ଼ା ବୈତରଣୀ' । କବିବର ରାଧାନାଥଙ୍କ ଭାଷାରେ –

'ବ୍ରାହ୍ମୀ, ବୈତରଣୀ ସୁବର୍ଣ୍ଣ ତଟିନୀ
ବଳାଙ୍ଗୀ ଏ ଚାରି ଦେବୀଙ୍କ ଭଗିନୀ ।'

ଯାଜପୁର ଓ କେନ୍ଦୁଝର ଜିଲ୍ଲାଦ୍ୱୟକୁ ବୈତରଣୀର ଦାନ ବୋଲି କୁହାଯାଏ । ପରମ ପାବନୀ ଗଙ୍ଗାରୂପୀ ବୈତରଣୀର ତଟଦେଶରେ ବିଭିନ୍ନ ସ୍ଥାନରେ ପ୍ରତିବର୍ଷ ଚୈତ୍ରମାସ କୃଷ୍ଣ ଦ୍ୱାଦଶୀରେ 'ବାରୁଣୀ ସ୍ନାନ' ପର୍ବ ଅନୁଷ୍ଠିତ ହୁଏ । ମାର୍ଗଶିର କୃଷ୍ଣପକ୍ଷ ଏକାଦଶୀ ତିଥିରେ 'ବୈତରଣୀ ବ୍ରତ' ପାଳନ କଲେ ଅଶେଷ ପୁଣ୍ୟ ମିଳେ ବୋଲି ଗରୁଡ଼ ପୁରାଣରେ ଉଲ୍ଲେଖ ଅଛି ।

କେନ୍ଦୁଝର ଜିଲ୍ଲାର ସର୍ବବୃହତ୍ ନଦୀ ହେଉଛି ବୈତରଣୀ । ବର୍ଷାଋତୁରେ ବିପୁଳ ମେଘମାଳା ଏହାର ଉପର ଅବବାହିକାରେ ପ୍ରବଳ ବାରିଧାରା ବର୍ଷଣ ହେତୁ ପ୍ରାୟ ପ୍ରତିବର୍ଷ ଏଥିରେ ଓ ଏହାର ଶାଖା ନଦୀମାନଙ୍କରେ ପ୍ରବଳ ବନ୍ୟାର ତାଣ୍ଡବ ରଚିତ ହୁଏ । ୧୯୧୩, ୧୯୨୭, ୧୯୯୬, ୧୯୯୯, ୨୦୦୫, ୨୦୦୮ ଓ ୨୦୧୩ ଖ୍ରୀଷ୍ଟାବ୍ଦରେ ସୃଷ୍ଟ ପ୍ରଳୟଙ୍କରୀ ବନ୍ୟା ବହୁ ଧନ ଜୀବନର କ୍ଷତି ଘଟାଇଥିଲା । ଅବଶ୍ୟ ଏହି ନଦୀରେ ବିଭିନ୍ନ ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ଯୋଜନା କାର୍ଯ୍ୟକାରୀ କରାଯାଇ କେନ୍ଦୁଝର, ଭଦ୍ରକ ଓ ଯାଜପୁର ଜିଲ୍ଲାର ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ରରେ ଜଳସେଚନର ବ୍ୟବସ୍ଥା କରାଯାଇଛି । ପ୍ରସ୍ତାବିତ ଭୀମକୁଣ୍ଡ ଓ ଆନନ୍ଦପୁର ବୃହତ୍ ଜଳସେଚନ ପରିକଳ୍ପନା ବାସ୍ତବତାରେ ପରିଣତ ହେଲେ ଉତ୍କଳର ପ୍ରଭୂତ ଚାଷୀକୁଳ ଉପକୃତ ହେବେ ।

ତରଙ୍ଗାୟିତ ପର୍ବତମାଳା, ଘଞ୍ଚ ଅରଣ୍ୟ, ଜଳପ୍ରପାତଗୁଡ଼ିକର ମନଲୋଭା ଦୃଶ୍ୟ, ପ୍ରଚୁର ଖଣିଜ ସମ୍ପଦ, ଜୈବ ବିବିଧତା, ବିରଳ ଆଦିମ ଆଦିବାସୀ ସମ୍ପ୍ରଦାୟ, ଅସଂଖ୍ୟ ଝରଣା, ନଦନଦୀ ସହ ଉପବୀତ ପରି ଆଦ୍ୟରୁ ପ୍ରାନ୍ତ ଯାଏଁ ପ୍ରଲମ୍ବିତ ବୈତରଣୀର ପ୍ରବାହ ପ୍ରଭୃତିର ସାମଗ୍ରିକ ରୂପ କଳ୍ପନା କଲେ ସ୍ୱତଃ ମାନସ ପଟରେ ଉଦ୍ଭାସିତ ହୁଏ ବୈତରଣୀ ଅବବାହିକାରେ ଅବସ୍ଥିତ କେନ୍ଦୁଝର । ସେହି କେନ୍ଦୁଝରକୁ ବୈତରଣୀ ଉପତ୍ୟକା ଭାବରେ ମଧ୍ୟ ବିସ୍ତାରିତ ଦୃଷ୍ଟିରୁ ଗ୍ରହଣ କରାଯାଇପାରେ ।

---

ଅଧ୍ୟକ୍ଷ, ଆନନ୍ଦପୁର ମହାବିଦ୍ୟାଳୟ
ଆନନ୍ଦପୁର, କେନ୍ଦୁଝର–୨୧



# ମାନବିକ ଅଧିକାରର ଐତିହ୍ୟ ଓ ସଂରକ୍ଷଣ

**ସୁରେଶ କୁମାର ପ୍ରଧାନ**

ମାନବିକ ଅଧିକାର କହିଲେ ଯେଉଁ ଅଧିକାର ପ୍ରତ୍ୟେକ ମାନବ ଉପଭୋଗ କରିଥାନ୍ତି ଓ ଯାହା ପ୍ରତ୍ୟେକଙ୍କ ନିମିତ୍ତ ସୁରକ୍ଷିତ ରହିଥାଏ । ସଭ୍ୟତାର ଉନ୍ନତି ଓ ସମାଜରେ ସୁସ୍ଥ ସହାବସ୍ଥାନ ନିମିତ୍ତ ପ୍ରତ୍ୟେକ ବ୍ୟକ୍ତି ପାଇଁ ଅଧିକାର ଅପରିହାର୍ଯ୍ୟ । ଇତିହାସକୁ ଦୃଷ୍ଟି ଦେଲେ ଏହା ସ୍ପଷ୍ଟ ଜାଣି ହୁଏ ଯେ, ମନୁଷ୍ୟର ଅଧିକାର ଓ ସ୍ୱାଧୀନତା ଯେବେ କ୍ଷୁଣ୍ଣ ହୁଏ, ସେ ବିଦ୍ରୋହୀ ହୋଇଉଠେ । ପରିଣାମରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହେବା ଅବଶ୍ୟମ୍ଭାବୀ ହୋଇପଡ଼େ । ଏ ଦୃଷ୍ଟିରୁ ମାନବକୁ ଯଥୋଚିତ ମର୍ଯ୍ୟାଦା ଦେବା କେବଳ ମାନବିକ ଅଧିକାର ମାଧ୍ୟମରେ ସମ୍ଭବ ।

ମାନବ ଜାତିର ଇତିହାସରେ ପ୍ରଥମ ବିଶ୍ୱଯୁଦ୍ଧ ହେଉଛି ସବୁଠାରୁ ଭୟାବହ ଓ ବର୍ବର । ଏହି ଯୁଦ୍ଧ ୧୯୧୪ରୁ ଆରମ୍ଭ ହୋଇ ଦୀର୍ଘ ଚାରିବର୍ଷ ବିଶ୍ୱରେ ମୃତ୍ୟୁର ତାଣ୍ଡବ ରଚନା କରିଥିଲା ଓ ମାନବ ସଭ୍ୟତାର ଅଶେଷ କ୍ଷତି କରିଥିଲା । ହେଲେ ପ୍ରଥମ ବିଶ୍ୱଯୁଦ୍ଧରୁ ବିଶ୍ୱବାସୀ କିଛି ଶିକ୍ଷା କରିପାରିନଥିଲେ, ଯେଉଁଥିପାଇଁ ଏହାର କୋଡ଼ିଏ ବର୍ଷ ପରେ ଅର୍ଥାତ୍ ୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଭଳି ନରସଂହାରକାରୀ ଯୁଦ୍ଧକୁ ବିଶ୍ୱ ସାମ୍ନା କରିବାକୁ ପଡ଼ିଲା । ଦୁଇ ଦୁଇଟା ବିଶ୍ୱଯୁଦ୍ଧରେ ବିଶ୍ୱବାସୀ ଆତଙ୍କିତ ହୋଇ ପଡ଼ିଲେ । ବିଶ୍ୱରେ କିପରି ଶାନ୍ତି ଓ ସହାବସ୍ଥାନ ପ୍ରତିଷ୍ଠିତ ହୋଇପାରିବ ଓ ମାନବ ଜୀବନ କିଭଳି ସୁରକ୍ଷିତ ହେବ, ସେଥିପାଇଁ ସଂଯୁକ୍ତ ରାଷ୍ଟ୍ର ସଂଘର ସୃଷ୍ଟି ହେଲା । ରାଷ୍ଟ୍ର ସଂଘ ଦ୍ୱାରା 'ସନନ୍ଦ'ରେ ମାନବାଧିକାରକୁ ସମଗ୍ର ବିଶ୍ୱରେ ମୌଳିକ ଅଧିକାର ରୂପେ ଗ୍ରହଣ କରିବାକୁ ନିଷ୍ପତ୍ତି ଗ୍ରହଣ କରାଗଲା । ୧୯୪୮ ମସିହା ଡିସେମ୍ବର ମାସ ୧୦ତାରିଖ ଦିନ ସଂଯୁକ୍ତ ରାଷ୍ଟ୍ର ସଂଘର ସାଧାରଣ ଅଧିବେଶନରେ 'ସାର୍ବଜନୀନ ମାନବାଧିକାର ଘୋଷଣାନାମା'କୁ ସ୍ଥାନିତ କରିବା ସହ ସ୍ୱୀକୃତି ଦିଆଗଲା । ଉକ୍ତ ଘୋଷଣାନାମାର ଫଳସ୍ୱରୂପ ବିଶ୍ୱବାସୀ ବାକ୍ ସ୍ୱାଧୀନତା, ଭୟମୁକ୍ତ ଜୀବନ ସହ ଦାରିଦ୍ର୍ୟ ଦୂରୀକରଣ ଭଳି ଅନେକ ମୂଲ୍ୟବାନ୍ ମାନବ ସପକ୍ଷବାଦୀ ଅଧିକାର ଉପଭୋଗ କରିବାକୁ ସକ୍ଷମ ହେଲେ । 'ମାନବିକ ଅଧିକାର'ଭଳି ଏକ ମାନବିକ ମୂଲ୍ୟବୋଧର ସଂରକ୍ଷକ ତତ୍ତ୍ୱ କୁ ଗୁରୁତ୍ୱ ଦେଇ ଡିସେମ୍ବର ୧୦ତାରିଖକୁ ବିଶ୍ୱବାସୀ 'ବିଶ୍ୱମାନବିକ ଅଧିକାର ଦିବସ'ରୂପେ ପାଳିତ କରିଆସୁଛନ୍ତି ।

ବିଶ୍ୱ ମାନବିକ ଅଧିକାର ଦିବସ ଘୋଷଣାର ୧୮ବର୍ଷ ପରେ ଅର୍ଥାତ୍ ୧୯୬୬ ଡିସେମ୍ବର ୧୬ରେ ସଂଯୁକ୍ତ ରାଷ୍ଟ୍ର ସଂଘର 'ସାଧାରଣ ସଭା'ରେ ମାନବ ଅଧିକାର ଆଇନାନୁମୋଦିତ ହେଲା । ଆଇନ୍‌ର ମର୍ଯ୍ୟାଦା ଲାଭ କରିବାର ୧୦ବର୍ଷ ପରେ ଅର୍ଥାତ୍ ୧୯୭୬ ମସିହା ଜାନୁଆରୀ ୩ ତାରିଖରେ କାର୍ଯ୍ୟକାରୀ ହେଲା । ଜାତିସଂଘ ପକ୍ଷରୁ ପ୍ରସ୍ତୁତ ମାନବିକ ଅଧିକାର ବିଷୟକ ସାର୍ବଜନୀନ ଘୋଷଣାପତ୍ର ମାନବ ଅଧିକାର ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । ପ୍ରଥମତଃ ନାଗରିକ ଓ ରାଜନୈତିକ ଅଧିକାର, ଦ୍ୱିତୀୟରେ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଅଧିକାର । ଜାତିସଂଘର ସାଧାରଣ ମହାସଭାରେ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଅଧିକାର ବିଷୟକ ଆନ୍ତର୍ଜାତିକ ପ୍ରତିଜ୍ଞାପତ୍ର ୧୯୬୬ ଡିସେମ୍ବର ୧୬ ତାରିଖରେ ଗୃହୀତ ହୋଇଥିଲା । ଉକ୍ତ ପ୍ରତିଜ୍ଞାପତ୍ରର ପ୍ରସ୍ତାବନାରେ

ଦର୍ଶାଯାଇଥିଲା ଯେ, 'ମାନବ ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ଅନ୍ତର୍ନିହିତ ମର୍ଯ୍ୟାଦା ଏବଂ ସମାନ ଓ ଅଭିନ୍ନ ଅଧିକାରଗୁଡ଼ିକର ଯଥାଯଥ ସ୍ୱୀକୃତି ହିଁ ସ୍ୱାଧୀନତା, ନ୍ୟାୟ ଓ ଶାନ୍ତିର ଭିତ୍ତିଭୂମି। ସାର୍ବଜନୀନ ଘୋଷଣାପତ୍ର ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ନିଜର ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଅଧିକାର ତଥା ନାଗରିକ ଓ ରାଜନୈତିକ ଅଧିକାରଗୁଡ଼ିକୁ ଉପଭୋଗ କରିବା ଭଳି ପରିବେଶ ସୃଷ୍ଟି ହେବ। ତେବେ ପ୍ରତ୍ୟେକ ମନୁଷ୍ୟ ଭୟ ଓ ଅଭାବରୁ ମୁକ୍ତ ହୋଇ ସ୍ୱାଧୀନତା ଉପଭୋଗ କରିବାରେ ସମର୍ଥ ହେବେ।

ମାନବ ଅଧିକାରଗୁଡ଼ିକ ହେଉଛି 'ସକଳ ଜନସାଧାରଣ ଓ ସକଳ ରାଷ୍ଟ୍ରଙ୍କ ସାଫଲ୍ୟ'ସାଧାରଣ ମାନଦଣ୍ଡ ମାନବ ପରିବାରର ସମସ୍ତ ସଦସ୍ୟଙ୍କ ଅନ୍ତର୍ନିହିତ ମର୍ଯ୍ୟାଦା ଓ ଅଭିନ୍ନ ସ୍ୱୀକୃତି ହେଉଛି ବିଶ୍ୱର ସ୍ୱାଧୀନତା, ନ୍ୟାୟ ଓ ଶାନ୍ତିର ଭିତ୍ତି। ପ୍ରତ୍ୟେକ ବ୍ୟକ୍ତି ଜନ୍ମରୁ ମୁକ୍ତ ଏବଂ ମର୍ଯ୍ୟାଦା ଓ ଅଧିକାର କ୍ଷେତ୍ରରେ ସମାନ। ପ୍ରତ୍ୟେକଙ୍କ ନିଜସ୍ୱ ବିଚାର ବୁଦ୍ଧି ଓ ହିତାହିତ ଜ୍ଞାନ ରହିଛି ଏବଂ ପ୍ରତ୍ୟେକ ପରସ୍ପର ସହ ଭ୍ରାତୃତ୍ୱ ଭାବ ନେଇ କାର୍ଯ୍ୟ କରିବା ଉଚିତ୍। ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା, ପଦମର୍ଯ୍ୟାଦା ନିର୍ବିଶେଷରେ ସକଳ ଅଧିକାର ଓ ସ୍ୱାଧୀନତା ହେଉଛି ପ୍ରତ୍ୟେକ ମାନବର ଏକାନ୍ତ ପ୍ରାପ୍ୟ। ପ୍ରତ୍ୟେକ ବ୍ୟକ୍ତିର ବଂଚି ରହିବା, ସ୍ୱାଧୀନତା ପାଇବା ଓ ବ୍ୟକ୍ତିଗତ ନିରାପତ୍ତା ଲାଭ କରିବାର ଅଧିକାର ରହିଛି। କୌଣସି ବ୍ୟକ୍ତିଙ୍କୁ ତାଙ୍କ ନାଗରିକତ୍ୱ ପରିବର୍ତ୍ତନ କରିବା ଅଧିକାରରୁ ବଂଚିତ କରାଯିବ ନାହିଁ। ପ୍ରତ୍ୟେକ ବ୍ୟକ୍ତିଙ୍କର ଚିନ୍ତା ବିବେକ ଓ ଧର୍ମ ସ୍ୱାଧୀନତାର ଅଧିକାର ଅଛି। ମତାମତ ଓ ଭାବପ୍ରକାଶ ସ୍ୱାଧୀନତାର ଅଧିକାର ସମସ୍ତଙ୍କର ରହିଛି।

ସାମ୍ପ୍ରତିକ ବିଶ୍ୱରେ ଓ ବିଗତ ଦଶନ୍ଧିଗୁଡ଼ିକରେ ମାନବ ଅଧିକାର ସମ୍ପର୍କରେ ଦୃଷ୍ଟିପାତ କଲେ ଏହା ସ୍ପଷ୍ଟ ହୁଏ ଯେ ଏହା ମୁଖ୍ୟତଃ ତିନୋଟି କ୍ଷେତ୍ରରେ ଉତ୍କର୍ଷତା ଲାଭ କରିଛି। ପ୍ରଥମତଃ ମହିଳା, ଶିଶୁ ଓ ଦୁର୍ବଳ ଶ୍ରେଣୀର ବ୍ୟକ୍ତିଙ୍କ ଅଧିକାରକୁ ସୁରକ୍ଷିତ ରଖିବା ସହ ଗଣହତ୍ୟା ସମ୍ପୂର୍ଣ୍ଣ ନିଷିଦ୍ଧ କରିବା। ସମ୍ପ୍ରତି ଖାଦ୍ୟ ସୁରକ୍ଷା ପ୍ରତି ଧ୍ୟାନ ଦିଆଯାଇ ସୁସ୍ଥ ପରିବେଶ ପ୍ରତି ଗୁରୁତ୍ୱାରୋପ କରାଯାଉଛି। ଦ୍ୱିତୀୟରେ ମାନବାଧିକାର ସୁରକ୍ଷା ନିମିତ୍ତ ନୂତନ ଆଇନ୍ ବ୍ୟାଖ୍ୟା ଓ ଅନୁଷ୍ଠାନର ସୃଷ୍ଟି ପ୍ରତି ଧ୍ୟାନ ଦିଆଯାଉଅଛି। ସେହିପରି ତୃତୀୟରେ ବିଭିନ୍ନ ସ୍ୱେଚ୍ଛାସେବୀମାନଙ୍କ ଜରିଆରେ ମାନବାଧିକାର ସୁରକ୍ଷା ପ୍ରତି ଧ୍ୟାନ ତଥା ଦୃଷ୍ଟିପାତ। ମାନବାଧିକାରର ସୁରକ୍ଷା କ୍ଷେତ୍ରରେ 'ହ୍ୟୁମାନ୍ ରାଇଟ୍ ୱାଚ୍' ଓ 'ଆମ୍‌ନେଷ୍ଟି ଇଣ୍ଟର ନ୍ୟାସନାଲ୍'ର ଭୂମିକା ଉଲ୍ଲେଖଯୋଗ୍ୟ।

ମାନବିକ ଅଧିକାରକୁ ସାଧାରଣତଃ ମୁଖ୍ୟ ତିନିଭାଗରେ ବିଭକ୍ତ କରାଯାଇଅଛି। ପ୍ରଥମେ ସମାଜର ବ୍ୟକ୍ତିକୁ ଉପଯୁକ୍ତ ରାଜନୈତିକ ଓ ସାମାଜିକ ଅଧିକାରକୁ ନିଶ୍ଚିତ କରାଇବା ସହ ମାନବର କିଛି ସ୍ୱତନ୍ତ୍ରତା ଉପରେ ସରକାର ହସ୍ତକ୍ଷେପ ନକରିବା। ଦ୍ୱିତୀୟରେ ବ୍ୟକ୍ତିକୁ ଯେଉଁ ସାମାଜିକ ଓ ରାଜନୈତିକ ସ୍ୱାଧୀନତା ମିଳିଲା, ତାହା ଏକ ପ୍ରକାର ଅର୍ଥହୀନ ବୋଲି ମନେ ହେଲା। ତେଣୁ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଅଧିକାରକୁ ଏଥିସହ ସଂଯୁକ୍ତ ବା ଯୋଡ଼ି ଦିଆଗଲା। ତୃତୀୟରେ ରାଷ୍ଟ୍ରର ସମ୍ପଦ ଉପରେ ଜନସାଧାରଣଙ୍କ ସାର୍ବଭୌମ ଅଧିକାର ରହିବା ସହ ଅନଗ୍ରସର ବ୍ୟକ୍ତିମାନଙ୍କ ପାଇଁ ସ୍ୱତନ୍ତ୍ର ସୁରକ୍ଷା ଓ ଆତ୍ମ ନିର୍ଣ୍ଣୟ ଅଧିକାର ରହିଲା।

ମାନବ ନିମିତ୍ତ ସୁରକ୍ଷିତ ମାନବାଧିକାରର ମୁଖ୍ୟ ତିନୋଟି ଲକ୍ଷଣ ରହିଛି। ସର୍ବପ୍ରଥମେ ମାନବାଧିକାରର ସାର୍ବଜନୀନ, ଦେଶ, ସମାଜ, ସଂସ୍କୃତି ଓ ସମ୍ପ୍ରଦାୟ ନିର୍ବିଶେଷରେ ମାନବାଧିକାର ସବୁଠାରେ ଏକାଭଳି। ସର୍ବତ୍ର ଅଧିକାରଗୁଡ଼ିକ ସମାନ ପରିମାଣରେ ମୂଲ୍ୟବାନ। ଦ୍ୱିତୀୟ ଲକ୍ଷଣଟି ହେଲା ମାନବ ଅଧିକାର ସର୍ବଦା 'ବ୍ୟକ୍ତିକୈନ୍ଦ୍ରିକ' ଅର୍ଥାତ୍ ମାନବ ହିଁ ଅଧିକାରର କେନ୍ଦ୍ରବିନ୍ଦୁ। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ମାନବାଧିକାର ଉପଭୋଗ କରିଥାଆନ୍ତି। ତୃତୀୟ ଲକ୍ଷଣଟି ହେଲା ଗଣତନ୍ତ୍ର ଓ ବିକାଶ। ମାନବ ସର୍ବଦା ଗଣତନ୍ତ୍ର ଦ୍ୱାରା ନିଜକୁ ପରିଚାଳିତ କରିବା ସହ ବିକାଶକୁ ହିଁ ଏହାର ମୂଳମନ୍ତ୍ର ରୂପେ ଗ୍ରହଣ କରିବା।

ଆମ ଦେଶରେ ମାନବାଧିକାରର ସୁରକ୍ଷା ପାଇଁ ୧୯୯୩ରେ 'ମାନବ ଅଧିକାରର ସୁରକ୍ଷା ଆଇନ୍' ପ୍ରଣୟନ କରାଗଲା। ଏହାକୁ ଆମ ସମ୍ବିଧାନର ୫୧ ଓ ଭିଏନା ସମ୍ମିଳନୀର ସନନ୍ଦ ଅନୁଯାୟୀ କାର୍ଯ୍ୟକାରୀ କରାଯାଉଛି।

ଭାରତବର୍ଷରେ ୧୯୯୩ ମସିହା ସେପ୍ଟେମ୍ବର ମାସ ୧୯ ତାରିଖ ଦିନ ଜାତୀୟ ମାନବାଧିକାର କମିସନ୍ ଗଠିତ ହୋଇଛି। ମାନବାଧିକାରର ସୁରକ୍ଷା ନିମିତ୍ତ କୋର୍ଟ ମଧ୍ୟ ଗଠିତ ହୋଇଛି। ଯେଉଁ କ୍ଷେତ୍ରରେ ମାନବାଧିକାର ଉଲ୍ଲଙ୍ଘନ ହେଉଥାଏ ତତ୍ ସମ୍ପର୍କିତ ଅଭିଯୋଗ ତଦନ୍ତ କରିବା ମାନବାଧିକାରର ସୁରକ୍ଷା ନିମିତ୍ତ ପଦେକ୍ଷପଗୁଡ଼ିକୁ ପରୀକ୍ଷା ସହ ବିହିତ ପଦକ୍ଷେପ ପାଇଁ ସୁପାରିସ୍ କରିବା, ଜେଲ୍‌ରେ କଏଦୀମାନଙ୍କ ଅବସ୍ଥାରେ ସୁଧାର ଆଣିବା ପାଇଁ ଜେଲ୍ ପରିଦର୍ଶନ କରିବା, ମାନବାଧିକାର ସମ୍ପର୍କିତ ଗବେଷଣାକୁ ପ୍ରୋତ୍ସାହିତ କରିବା ସହ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ଉତ୍ସାହିତ ଓ ପ୍ରୋତ୍ସାହିତ କରିବା ହେଉଛି ମାନବାଧିକାର ସୁରକ୍ଷା କୋର୍ଟର ମୁଖ୍ୟ କାର୍ଯ୍ୟ।

ସାମ୍ପ୍ରତିକ ସାମାଜିକ ସ୍ଥିତିକୁ ଦୃଷ୍ଟି ଦେଲେ ମାନବାଧିକାର ସୁରକ୍ଷା ଯେଭଳି ହେବା କଥା ସେଥିରେ କିଛି ବାଧକ ସୃଷ୍ଟି ହେଉଛି। ବ୍ୟକ୍ତିର ମୌଳିକ ଆବଶ୍ୟକତା ପୂରଣ ହୋଇପାରୁନାହିଁ। ଯଥାର୍ଥରେ ସାମ୍ପ୍ରଦାୟିକତା ଏକ ଧର୍ମନିରପେକ୍ଷ ରାଷ୍ଟ୍ରର ପ୍ରଧାନ ଶତ୍ରୁ। ତେଣୁ ଏହାର ଦୂରୀକରଣ ନହେବା ଯାଏଁ ଯଥାର୍ଥ ମାନବାଧିକାରର ସଂରକ୍ଷଣ ଅସମ୍ଭବ।

ମାନବିକ ଅଧିକାର ଏକ ଜନ୍ମଗତ ଅଧିକାର। ଏ ଦୃଷ୍ଟିରୁ ବିଶ୍ୱରେ ପ୍ରାଚୀନ କାଳରୁ ମନୁଷ୍ୟ କିଛି ନା କିଛି ଅଧିକାର ଉପଭୋଗ କରିଆସୁଛି। ଭାରତର ମହାନ ଗ୍ରନ୍ଥମାନଙ୍କରେ ପ୍ରଜାମାନଙ୍କର ସ୍ୱାଧୀନତା, ପଦମର୍ଯ୍ୟାଦା ଆଦି ସମ୍ପର୍କର ସବିଶେଷ ଉଲ୍ଲେଖ ରହିଛି। ୧୨୧୫ରେ ଇଂଲଣ୍ଡର ମାଗ୍ନାକାର୍ଟ ମାଧ୍ୟମରେ ଇଂଲଣ୍ଡର ସାମନ୍ତମାନଙ୍କୁ ସ୍ୱତନ୍ତ୍ର ଅଧିକାର ଓ ସୁରକ୍ଷା ପ୍ରଦାନ କରାଯାଇଥିଲା। ୧୭୮୯ରେ ଫରାସୀ ବିପ୍ଲବ ଦ୍ୱାରା ଉକ୍ତ ବର୍ଷ ଜୁଲାଇ ୧୪ରେ ପ୍ୟାରିସ୍‌ର ଜନସାଧାରଣ ସରକାରୀ କାରାଗାର ବାଷ୍ଟିଲ୍ ଦୁର୍ଗ ଆକ୍ରମଣ କରି ଫ୍ରାନ୍ସ ସ୍ୱେଚ୍ଛାଚାରିତା ଓ ପୁରାତନ ଶାସନର ପତନ ଘଟାଇଥିଲେ। ପରେ ପରେ ୧୭୮୯ ଅଗଷ୍ଟ ୨୬ରେ ଫ୍ରାନ୍ସର ରାଷ୍ଟ୍ରୀୟ ପରିଷଦ ନୂତନ ପ୍ରସ୍ତାବନାରେ ବ୍ୟକ୍ତି ଓ ନାଗରିକଙ୍କ ଅଧିକାର ବିଷୟକ ଘୋଷଣାପତ୍ର ଗ୍ରହଣ କରିଥିଲେ। ସେହିପରି ଆମେରିକା ସ୍ୱାଧୀନତା ସଂଗ୍ରାମ ୧୭୭୬ର ପ୍ରଭାବରେ ମାନବିକ ଅଧିକାରଗୁଡ଼ିକୁ ସ୍ଥାନିତ କରିବାକୁ ବାଧ୍ୟ ହୋଇଥିଲା । ଏଥିରୁ ବିଶ୍ୱ ମାନବିକ ଅଧିକାର, ଐତିହ୍ୟର ସ୍ପଷ୍ଟ ଚିତ୍ର ମିଳିଥାଏ।

ଆମ ଦେଶ ହେଉଛି ପୃଥିବୀର ଏକ ସର୍ବବୃହତ୍ ଧର୍ମନିରପେକ୍ଷ ଗଣତାନ୍ତ୍ରିକ ରାଷ୍ଟ୍ର। ଏହାର ଐତିହ୍ୟ, ସଂସ୍କୃତି ଓ ପରମ୍ପରାର ତୁଳନା ନାହିଁ। ଆମ ପରମ୍ପରା ସର୍ବଦା ଉଚ୍ଚ ମୂଲ୍ୟବୋଧ ଉପରେ ଆଧାରିତ। ସମଗ୍ର ମାନବ ସମାଜ ଏକ ପରିବାର ଭଳି 'ବସୁଧୈବ କୁଟୁମ୍ବକମ୍' ଓ 'ସର୍ବେ ଭବନ୍ତୁ ସୁଖୀନଃ' ହେଉଛି ଆମ ସଂସ୍କୃତିର ମହାମନ୍ତ୍ର। ଏ ଦୃଷ୍ଟିରୁ ଭାରତୀୟ ଧର୍ମ, ସଂସ୍କୃତି ଓ ପରମ୍ପରା ଯୁଗେଯୁଗେ ମାନବବାଦର ଉଦ୍‌ଘୋଷଣା କରିଆସିଛି। ଭାରତର ସୁନାମକୁ ବିଶ୍ୱ ଦରବାରରେ ପ୍ରତିପାଦିତ କରିପାରିଥିବା ମାନବାଧିକାର ଓ ସାମାଜିକ କର୍ମୀ କୈଳାସ ସତ୍ୟାର୍ଥୀ ୨୦୧୪ବର୍ଷ ନିମନ୍ତେ ନୋବେଲ୍ ଶାନ୍ତି ପୁରସ୍କାର ଲାଭ କରିଥିଲେ। ନିଜେ କଷ୍ଟ ସହି ଅନ୍ୟକୁ ଆନନ୍ଦିତ କରିବା ହେଉଛି ପ୍ରତ୍ୟେକ ହିନ୍ଦୁର ଆଦର୍ଶ। ତେଣୁ କବି ମୁଖେ ପ୍ରକାଶ ପାଇଛି– ନିଜ ସ୍ୱାର୍ଥ ପାଇଁ ଜାତ ନୁହେଁ ହିନ୍ଦୁ, ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ। ମାନବିକ ଅଧିକାର ସୁରକ୍ଷିତ ହୋଇପାରିଲେ ମାନବବାଦର ସ୍ୱର ବିଶ୍ୱରେ ଝଙ୍କୃତ ହୋଇ ବିଶ୍ୱକୁ ମଧୁମୟ କରି ଗଢ଼ିତୋଳିବ, ଏଥିରେ ସନ୍ଦେହର ଅବକାଶ ନାହିଁ।

---

ଖୁଂଟୁଣି, ଆଠଗଡ଼, କଟକ



# ବିପ୍ଳବୀ ସୁରେନ୍ଦ୍ରନାଥ

ଡକ୍ଟର ଯୁଗଳ କିଶୋର ହୋତା

ଭାଗବତରେ ଅଛି, ଅନେକ ଜନ୍ମ ତପ ଫଳେ, ମନୁଷ୍ୟ ଜନ୍ମ ମହୀତଳେ। ଶିଶୁଟି ମା'କୋଳରେ ଜନ୍ମ ଲାଭ କରେ, ଏହାପରେ ଲାଳନ ପାଳନ ଦାୟିତ୍ୱ ମଧ୍ୟ ମା' ବହନ କରେ। ଅଠର ବର୍ଷ ପରେ ପିଲାଟି ସାବାଳକ ହେଲା ପରେ ତା'ର ଆରମ୍ଭ ହୁଏ କର୍ମମୟ ଜୀବନ। ଭଲ କର୍ମ ପାଇଁ ସୁଫଳ ଓ କୁକର୍ମ ପାଇଁ କୁଫଳ ମିଳିଥାଏ। ମୃତ୍ୟୁପରେ ମନୁଷ୍ୟର ମୂଲ୍ୟାଙ୍କନ ହୋଇଥାଏ। ସୁ ମଣିଷମାନେ ସମାଜରେ ଅଳ୍ପଦିନ କାଳାତିପାତ କରିଥିଲେ ମଧ୍ୟ ନିଜର ସୁକର୍ମ ପାଇଁ ତାଙ୍କୁ ସମସ୍ତେ ଆଦର କରିଥାନ୍ତି ଓ ସମ୍ମାନ ଦେଇଥାନ୍ତି। କିନ୍ତୁ ଅନ୍ୟ ପକ୍ଷରେ ଅନେକ ଦିନ ପୃଥିବୀ ପୃଷ୍ଠରେ ବଞ୍ଚିଥିଲେ ମଧ୍ୟ ଯିଏ କୁକର୍ମ କରିଥାଏ ମୃତ୍ୟୁ ପରେ ତାଙ୍କୁ ନିନ୍ଦା ଓ ଘୃଣା ମିଳିଥାଏ ।

ଭାରତବର୍ଷରେ ଯେଉଁ ମହାମନୀଷୀମାନେ ନିଜର କର୍ମମୟ ଜୀବନକୁ ଜନସେବା ପାଇଁ ଉତ୍ସର୍ଗ କରିଥିଲେ ସେମାନଙ୍କ ମଧ୍ୟରେ ସର୍ବାଗ୍ରେ ଥିଲେ ଜାତିର ଜନକ ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ବୋଷ, ବାଲ୍ ଗଙ୍ଗାଧର ତିଲକ, ଲୋକନାୟକ ଜୟପ୍ରକାଶ ନାରାୟଣ, ସ୍ୱାମୀ ବିବେକାନନ୍ଦ, ଗୋପବନ୍ଧୁ ଦାସ, ନବକୃଷ୍ଣ ଚୌଧୁରୀ ଓ ଉତ୍କଳ ଗୌରବ ମଧୁସୂଦନ ଦାସ। ଏହି ମହାମନୀଷୀମାନେ ନିଜ ଜୀବନକୁ ସଂପୂର୍ଣ୍ଣ ଭାବରେ ଦେଶ ଓ ସମାଜ ପାଇଁ ଉତ୍ସର୍ଗ କରିଥିଲେ। ନିଜର ବ୍ୟକ୍ତିଗତ ଲୋଭ, ମୋହ ଓ ଅହଂଭାବ ତ୍ୟାଗ କରି ସେମାନେ ମାନବ ସେବାକୁ ମାଧବ ସେବା ରୂପେ ଗ୍ରହଣ କରିଥିଲେ।

ଆମ ଓଡ଼ିଶାରେ ମହାମାନବମାନଙ୍କ ନୀତି ଓ ଆଦର୍ଶକୁ ଗ୍ରହଣ କରି ଆଉ ଜଣେ ବ୍ୟକ୍ତିତ୍ୱ ନିଜ ଜୀବନକୁ ସମାଜସେବା ଓ ଦେଶ ସେବାରେ ନିୟୋଜିତ କରିଥିଲେ। ଅବିଭକ୍ତ କଟକ ଜିଲ୍ଲାର ସାଲେପୁରର ଖଣ୍ଡାସାହି ଗ୍ରାମରେ ଜନ୍ମ ଗ୍ରହଣ କରି ମାତ୍ର ଅଠର ବର୍ଷ ବୟସରେ ମହାତ୍ମା ଗାନ୍ଧୀଙ୍କ ନୀତି ଓ ଆଦର୍ଶରେ ଅନୁପ୍ରାଣୀତ ହୋଇ ଝାସ ଦେଇଥିଲେ ସ୍ୱାଧୀନତା ଆନ୍ଦୋଳନରେ। ଦୁର୍ଦ୍ଧର୍ଷ ବ୍ରିଟିଶ ପୋଲିସମାନଙ୍କ ଅତ୍ୟାଚାର ବିରୁଦ୍ଧରେ ଦୁର୍ବାର ଆନ୍ଦୋଳନ ଆରମ୍ଭ କରିଥିଲେ କଟକ ସହରରେ। ସେହି ମହାମନୀଷୀ ଥିଲେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ସମାଜବାଦୀ ନେତା ସୁରେନ୍ଦ୍ର ନାଥ ଦ୍ୱିବେଦୀ। ନିଜର ଦେଶପ୍ରେମ, ତ୍ୟାଗ , ନିଷ୍ଠା , ଦୃଢତା ଓ ଦୁଃସାହସିକ କାର୍ଯ୍ୟ ପାଇଁ ସେ ସୃଷ୍ଟି କରିଥିଲେ ନିଜର ଏକ ସ୍ୱତନ୍ତ୍ର ପରିଚୟ। ୧୯୧୩ ମସିହାରେ ମାଗୁଣି ଦ୍ୱିବେଦୀ ଓ ଲକ୍ଷ୍ମୀଦେବୀଙ୍କ କୋଳମଣ୍ଡନ କରିଥିବା ଏହି ଶିଶୁଟି ଯେ ଦିନେ ଜଣେ ସଫଳ ମଣିଷ ହୋଇ ସମାଜକୁ ନୂତନ ଚିନ୍ତା ଓ ଚେତନାରେ ଉଦ୍‌ଭାସିତ କରିବ, ସେ କଳ୍ପନା କେହିବି ସ୍ୱପ୍ନରେ ସୁଦ୍ଧା ଭାବିନଥିଲେ। ନିପଟ ମଫସଲ ଗ୍ରାମରେ ଜନ୍ମଲାଭ କରିଥିବା ଏହି ଶିଶୁ ଉତ୍କଟ ଦାରିଦ୍ର୍ୟତା ମଧ୍ୟରେ ନିଜର ଶୈଶବ ଅତିବାହିତ କରିଥିଲେ। ଦିନକୁ ଦୁଇବେଳା ପେଟପୂରା ଖାଇବା ତାଙ୍କ ଭାଗ୍ୟରେ ନଥିଲା। ପିତା ସୁଦୂର ମୁର୍ଶିଦାବାଦ ମେସ୍‌ରେ କାମ କରି ପିଲାମାନଙ୍କ ପାଇଁ ପୁରୁଣା ଜାମା ପ୍ୟାଣ୍ଟ ଆଣୁଥିଲେ। ଏପରି ଦୁଃଖ କଷ୍ଟ ମଧ୍ୟରେ କାଳାତିପାତ କରୁଥିବା ଏହି ଶିଶୁଟି ସମାଜର ତଥା କଥିତ ବଡ଼ପଣ୍ଡା (ଧନୀକ ଶ୍ରେଣୀ) ବ୍ୟକ୍ତିମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ। ମାତ୍ର ୧୭ ବର୍ଷ ବୟସରେ ରେଭେନ୍ସା

କଲେଜିଏଟ୍ ସ୍କୁଲରେ ପଢୁଥିବାବେଳେ ଝାସ ଦେଲେ ସ୍ୱାଧୀନତା ଆନ୍ଦୋଳନରେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଆନ୍ଦୋଳନ ସାରା ଦେଶରେ ଚାଲିଥିବାବେଳେ ଦ୍ୱିବେଦୀ ରେଭେନ୍ସା କଲେଜିଏଟ ସ୍କୁଲ ସମ୍ମୁଖରେ ପ୍ରତିବାଦ ଓ ବିକ୍ଷୋଭ ଆରମ୍ଭ କରିଥିଲେ । ତାଙ୍କର କାର୍ଯ୍ୟକଳାପରେ ଅସନ୍ତୋଷ ବ୍ୟକ୍ତ କରି ପ୍ରଧାନଶିକ୍ଷକ ତାଙ୍କୁ ସତର୍କ କରିଦେଇଥିଲେ । କିନ୍ତୁ ଦ୍ୱିବେଦୀଙ୍କ ଉପରେ ଏହାର କୌଣସି ପ୍ରଭାବ ପଡ଼ିନଥିଲା, ସେ ବ୍ରିଟିଶ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ୧୯୩୦ ମସିହାରେ ପ୍ରଥମେ ଗିରଫ ହେଲେ ଓ ପାଞ୍ଚ ମାସ ଜେଲ୍‌ରେ ରହି ଫେରିବା ପରେ ସ୍କୁଲକୁ ନଯାଇ ଦଶମ ଶ୍ରେଣୀରେ ନିଜ ପାଠପଢ଼ା ପୋଥିରେ ଡ଼ୋରି ବାନ୍ଧିଲେ । ଏହାପରେ ସୁରେନ୍ଦ୍ରନାଥ ହେଲେ ଜଣେ ସ୍ୱରାଜ ସୈନିକ, ପ୍ରତିଦିନ ସ୍ୱରାଜ ଆଶ୍ରମକୁ ଯାଇ ଗାନ୍ଧୀଙ୍କର ବାଣୀ ଶୁଣିବା ସହିତ ଚରଖାରେ ସୂତାକଟା କାର୍ଯ୍ୟ ଶିକ୍ଷାଲାଭ କଲେ ।

ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଦ୍ୱିବେଦୀ ବହୁବାର କାରାବରଣ କରିଥିଲେ । ସେ କାରାଗାରକୁ ନିଜର ଏକ ମନ୍ଦିର ଭାବରେ ଗ୍ରହଣ କରିଥିଲେ । ୧୯୩୦ଠାରୁ ୧୯୩୩ ମଧ୍ୟରେ ସେ ଜେଲ୍ ମଧ୍ୟରେ ଥାଇ ମହାନ୍ ସମାଜବାଦୀ ଲେଖକ ମାକସିମ୍ ଗର୍କୀଙ୍କ ଦ୍ୱାରା ଲିଖିତ ପୁସ୍ତକ (ମଦର) ପଢିବାର ସୁଯୋଗ ପାଇଲେ । ଏହି ପୁସ୍ତକ ତାଙ୍କ ଜୀବନର ପତିପଥ ବଦଳାଇ ଦେଲା । ସେ ହେଲେ ଜଣେ ସମାଜବାଦୀ ନେତା । ସମାଜବାଦର ପ୍ରଚାର ଓ ପ୍ରସାର କରିବା ପାଇଁ ଜେଲ୍ ମଧ୍ୟରେ ସେ ନେଲେ ବଜ୍ର ଶପଥ । ଜେଲ୍ ମଧ୍ୟରେ ସେ ଅନେକ ସଂଗ୍ରାମୀଙ୍କ ସାକ୍ଷାତ ପାଇଲେ । ମୁଖ୍ୟତଃ ଲୋକନାୟକ ଜୟ ପ୍ରକାଶଙ୍କୁ ନିଜର ଆଦର୍ଶ ଭାବରେ ଗ୍ରହଣ କରି ସେ ଆରମ୍ଭ କଲେ ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନ । ତତ୍‌କାଳୀନ ଓଡ଼ିଶାରେ ସେତେବେଳେ ଚାଲିଥିଲା ଅନ୍ଧାରୀ ଶାସନ । ଗଡ଼ଜାତର ରାଜାମାନେ ଜମିଦାରମାନଙ୍କୁ ଲଗାଇ ପ୍ରଜାମାନଙ୍କ ଉପରେ ଚଳାଇଥିଲେ ଅକଥନୀୟ ଅତ୍ୟାଚାର । ବେଠି, ବେଗାରି, ଭେଟି ମାଧ୍ୟମରେ କରୁଥିଲେ ସାଧାରଣ ଜନତାଙ୍କୁ ଶୋଷଣ । ପୋଖରୀର ମାଛ ଓ ନିଜ ବାଡ଼ିଗଛରେ ଥିବା ଫଳ ଉପରେ ଲୋକଙ୍କର ଅଧିକାର ନଥିଲା । ପ୍ରଜାମାନଙ୍କର ଛତା ଓ ଜୋତା ବ୍ୟବହାର ଉପରେ କଟକଣା ଥିଲା । ଯୁବ ସୁରେନ୍ଦ୍ରନାଥ ଏହିସବୁ ଅମାନୁଷିକ କାର୍ଯ୍ୟ ବିରୁଦ୍ଧରେ ନିଜର ସ୍ୱରକୁ କରିଥିଲେ ତୀବ୍ରତର । ସେ ଚାଷୀ ଆନ୍ଦୋଳନ ଓ ପ୍ରଜାମଣ୍ଡଳ ଆନ୍ଦୋଳନ ମାଧ୍ୟମରେ ସମାଜର ଦୁଃସ୍ଥ ଓ ଦରିଦ୍ର ଜନତାଙ୍କୁ ଜାଗ୍ରତ କରିବା ପାଇଁ କରିଥିଲେ ନୀତିନିଷ୍ଠ ଉଦ୍ୟମ । ତାଙ୍କରି ଉଦ୍ୟମରେ ଚାଷୀ ଆନ୍ଦୋଳନ ବ୍ୟାପକ ହୋଇଥିଲା । ଦୁଇଟି ପତ୍ରିକା 'ସାରଥୀ' ଓ 'କୃଷକ' ମାଧ୍ୟମରେ ସେ ଜନତାଙ୍କୁ କରିଥିଲେ ସଚେତନ ଓ ବିପ୍ଳବୀ । ଗାଁ ଗାଁରେ କୃଷକ ଆନ୍ଦୋଳନ ତେଜି ଉଠିଲା । ଏ କ୍ଷେତ୍ରରେ ଯେଉଁମାନେ ତାଙ୍କୁ ସାହାଯ୍ୟର ହାତ ବଢାଇଥିଲେ ସେମାନେ ହେଲେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୋଧୁରୀ ଓ ଗଡ଼ଜାତ ଗାନ୍ଧୀ ସାରଙ୍ଗଧର ଦାସ । ଅବିଭକ୍ତ କଟକ ଜିଲ୍ଲାର ଜେନାପୁରଠାରେ ଏକ ବଡ଼ କୃଷକ ସମାବେଶ ହୋଇଥିଲା । ୧୯୩୮ ମସିହାରେ ଆୟୋଜିତ ଏହି ସମାବେଶର ନେତୃତ୍ୱ ନେଇଥିଲେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ପ୍ରାଣକୃଷ୍ଣ ପଢିଆରି, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଫନୀନ୍ଦ୍ରନାଥ ପାଲ । ଅତ୍ୟାଚାରୀ ଜମିଦାର ଓ ତାଙ୍କୁ ଘଣ୍ଟ ଘୋଡ଼ାଉଥିବା ବ୍ରିଟିଶ ସରକାରକୁ ନବକୃଷ୍ଣ ଚୌଧୁରୀ ତୀବ୍ର ଭାବରେ ସମାଲୋଚନା କରିଥିଲେ । ସମାଜବାଦୀମାନଙ୍କର ଏହି କୃଷକ ଆନ୍ଦୋଳନ ପର୍ଯ୍ୟାୟକ୍ରମେ ଢେଙ୍କାନାଳ, ତାଳଚେର, ଆଠଗଡ଼ ଓ ସୁକିନ୍ଦାକୁ ପ୍ରସାରିତ ହୋଇଥିଲା ।

ସୁକିନ୍ଦା ଅଞ୍ଚଳର ଏହି ଆନ୍ଦୋଳନ ସ୍ୱାଧୀନତା ସଂଗ୍ରାମୀ ରଘୁନାଥ ହୋତା ଓ ଧରଣୀଧର ଦତ୍ତଙ୍କ ନେତୃତ୍ୱରେ ପ୍ରସାର ଲାଭ କରିଥିଲା । ଉଭୟ ନେତା ୧୯୩୯ ମସିହାରେ ଗୋବର୍ଦ୍ଧନପୁର ହାଟପଡ଼ିଆରେ ଏକ ପ୍ରତିବାଦ ସଭାର ଆୟୋଜନ କରିଥିଲେ । ବ୍ରିଟିଶ ଶାସନର ୧୪୪ ଜାରି ସତ୍ତ୍ୱେ ପ୍ରାୟ ଏକ ହଜାର କୃଷକ ଏଠାରେ ଉପସ୍ଥିତ ହେବା କିଛି କମ୍ କଥା ନଥିଲା । ଏହି ସଭାରେ ଧରଣୀଧର ଓ ରଘୁନାଥଙ୍କ ବ୍ୟତୀତ, ଫନିପାଲ, ଭଗବତୀ ପାଣିଗ୍ରାହୀ, ଦୁର୍ଯ୍ୟୋଧନ ରାୟ ଓ ଲକ୍ଷ୍ମୀଧର ଜେନା ଯୋଗଦେଇଥିଲେ । ଏହି ଘଟଣାର ସତ୍ୟାସତ୍ୟ ଓଡ଼ିଶା ଅଭିଲେଖାଗାର ରେକର୍ଡ଼ରୁ ଜଣାଯାଏ ।

ମହାନ୍ ବିପ୍ଳବୀ ସୁରେନ୍ଦ୍ରନାଥ ଅଗଷ୍ଟ ନଅ 'ଭାରତ ଛାଡ଼ ଆନ୍ଦୋଳନ'ରେ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ସେ ମାଳତୀ

ଚୌଧୁରୀଙ୍କ ସହ ବମ୍ବେ ଅଧିବେଶନରୁ ଛଦ୍ମବେଶରେ ଆସି ଭୁବନେଶ୍ୱରରେ ପହଞ୍ଚିଥିଲେ । ସମସ୍ତ ବଡ଼ ବଡ଼ ନେତା ଗିରଫ ହୋଇଥିବାରୁ ସେ ଗୁପ୍ତରେ ରହି କଟକରେ ଭାରତଛାଡ଼ ଆନ୍ଦୋଳନକୁ ବ୍ୟାପକ କରିଥିଲେ । ମାଳତୀ ଦେବୀ ଓ ସୁରେନ୍ଦ୍ରନାଥ ଏକ ଅନ୍ଧାର ରାତିରେ ଯେପରି ଭାବରେ ବନ୍ୟା ପ୍ଲାବିତ କାଠଯୋଡ଼ି ନଦୀକୁ ଅତିକ୍ରମ କରିଥିଲେ ତାହା ସେମାନଙ୍କର ଦେଶଭକ୍ତିର ପରିଚୟ ଦିଏ । ଡଂଗାରେ ବସି ମାଳତୀ ଦେବୀ ବଙ୍ଗଳା ଭାଷାରେ ଗାଇଥିଲେ ।

ଦୁର୍ଗମଗିରି, କାନ୍ତାରମରୁ, ଦୁସ୍ତର ପାରାବାର ହେ !
ଲଙ୍ଘିତେହବେ, ରାତ୍ରି ନିଶିଥେ,
ଯାତ୍ରିରାହୁସିଆର ହେ ଯାତ୍ରିରା ହୁସିଆର

(Oh all freedom fighters, be cautious to cross the dangerous hills mountains and the seas in the mid-night)

କଟକକୁ ପ୍ରବେଶ କରିବା ପରେ ମାଳତୀ ଦେବୀଙ୍କୁ ପୋଲିସ ଗିରଫ କରିଥିଲା । କିନ୍ତୁ ସୁରେନ୍ଦ୍ରନାଥ ଗୁପ୍ତରେ ରହି ବ୍ରିଟିଶ୍ ଶାସନକୁ ଥରହର କରିଥିଲେ । କଟକର ଅଲିଶା ବଜାରରେ ଜଣେ ବନ୍ଧୁ ନନ୍ଦୀ ସାହୁଙ୍କ ଘରେ ଗୁପ୍ତରେ ରହି ଚିଠି ପ୍ରେରଣ କରି ଆନ୍ଦୋଳନକୁ ବ୍ୟାପକ କରିଥିଲେ । ପରିଶେଷରେ ଦ୍ୱିବେଦୀଙ୍କୁ ବ୍ରିଟିଶ୍ ପ୍ରଶାସନ ପଳାତକ ଘୋଷଣା କରିଥିଲା । ଦ୍ୱିବେଦୀ ଆତ୍ମସମର୍ପଣ ନକଲେ ତାଙ୍କର ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତିକୁ ବାଜ୍ୟାପ୍ତି କରିବା ପାଇଁ ଗେଜେଟ ନୋଟିଫିକେସନ୍ ହେଲା ଏବଂ ତାଙ୍କୁ ଧରାଇଦେଲେ ଅର୍ଥ ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଗଲା । କଟକର ରାଜରାସ୍ତାରେ ଢୋଲ ବଜାଇ ଏ ଘୋଷଣା କରାଗଲା କିନ୍ତୁ ଦ୍ୱିବେଦୀଙ୍କ ଉପରେ ଏହାର କୌଣସି ପ୍ରଭାବ ପଡ଼ିନଥିଲା କାରଣ ସେ ଦେଶ ପାଇଁ ବଳିଦାନ ଦେବାକୁ ପ୍ରସ୍ତୁତ ଥିଲେ ।

ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଜିଲ୍ଲାରେ ଅଣ୍ଡରଗ୍ରାଉଣ୍ଡ ୟୁନିଟ୍ ଦ୍ୱିବେଦୀଙ୍କ ଦ୍ୱାରା ଗଠିତ ହୋଇଥିଲା । ସ୍ୱାଧୀନତା ସଂଗ୍ରାମୀମାନେ ନିଜକୁ ଗୁପ୍ତରେ ରଖି ଏହି ଆନ୍ଦୋଳନକୁ ଚଳାଇଥିଲେ । ଦେଖାଦେଲେ ଧରାପଡ଼ିଯିବାର ଭୟଥିବାରୁ ଆନ୍ଦୋଳନକୁ ଅଣ୍ଡରଗ୍ରାଉଣ୍ଡରେ ରହି ଦ୍ୱିବେଦୀ ଓ ଅନ୍ୟ ନେତାମାନେ ପରିଚାଳନା କରିଥିଲେ । ଯଦି ଅଣ୍ଡରଗ୍ରାଉଣ୍ଡ ଆନ୍ଦୋଳନ ହୋଇ ନଥାନ୍ତା, ତେବେ ଭାରତ ସ୍ୱାଧୀନତା ଲାଭ କରିବା ଆହୁରି ବିଳମ୍ବିତ ହୋଇଥାନ୍ତା । କାରଣ ସମସ୍ତ ମୁଖ୍ୟ ନେତାମାନଙ୍କୁ ବ୍ରିଟିଶ ପୋଲିସ କାରାଗାରରେ ରଖିଥିଲା । ଗାନ୍ଧୀ ନିଜେ ଅଗଷ୍ଟ ୮ ତାରିଖ ୧୯୪୨ରେ ରାତିରେ ଗିରଫ ହୋଇଥିଲେ ।

ଏହିପରିଭାବେ ସୁରେନ୍ଦ୍ରନାଥ ନିଜ ଜୀବନକୁ ବାଜି ଲଗାଇ ଦେଶମାତୃକାର ସେବା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କ ପରି ଦେଶଭକ୍ତ, ସାହସୀ, ବିପ୍ଳବୀ ଓ ସମାଜବାଦୀ ନେତା ଓଡ଼ିଶାରେ ବିରଳ । ଏକ ସମୟରେ ସେ ସ୍ୱାଧୀନତା ସଂଗ୍ରାମ ସହିତ ସମାଜବାଦ ଆନ୍ଦୋଳନକୁ ବ୍ୟାପକ କରି ଓଡ଼ିଶା ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହୋଇପାରିଛନ୍ତି ।

ଝାଡ଼େଶ୍ୱର ମହାବିଦ୍ୟାଳୟ
ସା– ଟୋଲକାନୀ, ପୋ– ଚିତ୍ରି
ଜି– ଯାଜପୁର –୭୫୫୦୧୯



# ଆଧୁନିକ ଓଡ଼ିଶାର ନବନିର୍ମାଣର ଆଲୋକ–ବର୍ତ୍ତିକା : ଉତ୍କଳ ବିଶ୍ୱବିଦ୍ୟାଳୟ

ସନ୍ତୋଷ ତ୍ରିପାଠୀ




### (ଏକ – ଭିତ୍ତିକଳ୍ପ)

'ଉତ୍କଳ ବିଶ୍ୱବିଦ୍ୟାଳୟ'ର କଳ୍ପନା–ପ୍ରତିଷ୍ଠା–ବିକାଶର କଥା ହିଁ ଆଧୁନିକ ଓଡ଼ିଶାର ବୌଦ୍ଧିକ ଯାତ୍ରାର ବୃହତ୍ତମ ଅଂଶ ହୋଇଆସିଛି– ଏହା ନିର୍ବିବାଦୀୟ । ଆଧୁନିକ ଓଡ଼ିଶାର ପ୍ରାଜ୍ଞିକ ସମୃଦ୍ଧିର ପ୍ରତୀକ ଏହି ବିଶ୍ୱବିଦ୍ୟାଳୟ ଆଧୁନିକ ଓଡ଼ିଆ ଚେତନା ନିର୍ମାଣର ଆଲୋକ ବର୍ତ୍ତିକା ସମ ପଞ୍ଚସ୍ତରୀ ବର୍ଷଧରି ସକାରାତ୍ମକ ଭୂମିକା ସମ୍ପାଦନ କରିଆସୁଛି, ଯାହାର ଆସ୍ଥା ଓ ମୂଲ୍ୟାୟନ ଅନନ୍ୟ ଓ ଅତୁଳନୀୟ । ନାକ୍–ୟୁଜିସିଙ୍କ ପରିସଂଖ୍ୟାନାତ୍ମକ ମୂଲ୍ୟାୟନରେ ଏ+ ମାନ୍ୟତାପ୍ରାପ୍ତ ଏହି ବିଶ୍ୱବିଦ୍ୟାଳୟ ୧୯୪୩ ମସିହା ନଭେମ୍ବର ୨୭ ତାରିଖ, ଦିବା ୧୧ ଘଟିକା ସମୟରେ ରେଭେନ୍ସା ମହାବିଦ୍ୟାଳୟର ପଶ୍ଚିମ ଛାତ୍ରାବାସର ସାଧାରଣ ପ୍ରକୋଷ୍ଠରେ ଭାରତର ୧୭ତମ ପ୍ରାଚୀନ ବିଶ୍ୱବିଦ୍ୟାଳୟ ଭାବରେ ପ୍ରଥମ ଏନ୍ତୁଡିଶାଳର ନିଆଁ ପୁଆଇ ଥିଲା । ସଂପ୍ରତି ଏହାର ବିଧି–ପ୍ରବିଧି–ଅନୁବିଧିର ଖସଡାକୁ ଆଧାର କରି ଓଡ଼ିଶାର (ବିବିଧ ବିଦ୍ୟାର) ଉଚ୍ଚଶିକ୍ଷା କ୍ଷେତ୍ରରେ ୧୨ଗୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଲାଭ କରିଥିବାରୁ ଏହାକୁ ମାତୃକା–ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ମିଳିପାରିଛି ।

ଓଡ଼ିଶା ବିଶ୍ୱବିଦ୍ୟାଳୟ, କଟକ ବିଶ୍ୱବିଦ୍ୟାଳୟ– ଏପରି ନାମରେ ନାମିତ ହେବାର ପ୍ରସ୍ତାବ ଆସିଥିଲେ ମଧ୍ୟ ଓଡ଼ିଶାର ପ୍ରାଚୀନ ଐତିହ୍ୟ ଓ ସାର୍ବକାଳିକ ଅସ୍ମିତାସୂଚକ ଭାବଦ୍ୟୋତକ ନାମ 'ଉତ୍କଳ' (କଳା ଓ ସୌନ୍ଦର୍ଯ୍ୟର ଉତ୍‌କୃଷ୍ଟଗୁଣ ଓ

ସୌନ୍ଦର୍ଯ୍ୟର ସହଜାତ ଉତ୍କର୍ଷଭିତ୍ତିକ ଅର୍ଥ)କୁ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପରିପୂରଣ ଭିତ୍ତିରେ ଗ୍ରହଣ କରାଯାଇ 'ଉତ୍କଳ ବିଶ୍ୱବିଦ୍ୟାଳୟ' ରଖାଗଲା । ୧୯୫୮ ମସିହା ଜାନୁଆରୀ ୧ ତାରିଖରେ ଭାରତର ପ୍ରଥମ ରାଷ୍ଟ୍ରପତି ଏହାର ନୂତନ ଶିକ୍ଷା-ପରିସରର ଭିତ୍ତି ସ୍ଥାପନ କଲେ ଓ ୧୯୬୩ ମସିହା ଜାନୁଆରୀ ୨ ତାରିଖରେ ଭାରତର ଦ୍ୱିତୀୟ ରାଷ୍ଟ୍ରପତି ଦାର୍ଶନିକ ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଏହାକୁ ଏକ ପୂର୍ଣ୍ଣାବୟବ ବିଶ୍ୱବିଦ୍ୟାଳୟର ଶୈକ୍ଷିକ-ପୀଠ ଭାବରେ ଉଦ୍‌ଘାଟନ କଲେ । ଓଡ଼ିଶା ପ୍ରଦେଶର ରାଜଧାନୀ ତଥା ପ୍ରାଚୀନ ଜୈନ-ବୌଦ୍ଧ-ଶୈବାଚାରୀୟ ସଂସ୍କୃତିର ପବିତ୍ର କ୍ଷେତ୍ର ଭୁବନେଶ୍ୱରର ହୃଦ୍-କେନ୍ଦ୍ରରେ ଜାତୀୟ ରାଜପଥ-ସଂ-୫ର ଉତ୍ତରପାର୍ଶ୍ୱରେ ୩୯୯.୯ ଏକରର ପରିମିତ ଭୂମିଖଣ୍ଡକୁ ନେଇ ଏହି ବିଶ୍ୱବିଦ୍ୟାଳୟର କ୍ଷେତ୍ରୀୟ ଶ୍ରଦ୍ଧାନାମ 'ବାଣୀବିହାର' ରଖାଗଲା । ସେହି ସମୟର କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜା, ଓଡ଼ିଶାର ଶିକ୍ଷାମନ୍ତ୍ରୀ ଓ ପରବର୍ତ୍ତୀ ବାଚସ୍ପତି ସତ୍ୟପ୍ରିୟ ମହାନ୍ତି ଓ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମଚିନ୍ତନ ଭିତ୍ତିରେ ନୂତନ-ଶୈକ୍ଷିକ-ପରିସରର ନାମ- ଓଡ୍ରରାଷ୍ଟ୍ରମଣ୍ଡଳର ବାଗ୍‌ଦେବୀ ସାରଳାଚଣ୍ଡୀଙ୍କ ବାଣୀବରଦ ନୀଳସରସ୍ୱତୀୟ ମହିମମୟୀ ପ୍ରସିଦ୍ଧିକୁ ଆଶ୍ରୟ କରି ଏପରି (ବାଣୀବିହାର) କରାଗଲା । ପ୍ରଥମେ ୧୯୬୨ ମସିହା ଜୁଲାଇ ୧ ତାରିଖରେ କଟକରୁ ବାଣୀବିହାର ପରିସରକୁ ଅଫିସ୍ ଓ ଶିକ୍ଷା ବିଭାଗଗୁଡିକ କ୍ରମଶଃ ସ୍ଥାନାନ୍ତରିତ ହେବାର ପ୍ରସ୍ତାବ ଲାଗୁହେଲା ଓ ୧୯୬୩ ମସିହା ପରଠାରୁ ଏହା ସ୍ୱୟଂସମ୍ପୂର୍ଣ୍ଣ ପରିସରରେ ପରିଣତ ହେଲା । ସଂପ୍ରତି କଳା, ବାଣିଜ୍ୟ, ବିଜ୍ଞାନ, ଆଇନ, ପରିଚାଳନା, ପ୍ରାଶାସନିକ ବିଧି, ସାମ୍ବାଦିକତା ଓ ଭେଷଜବିଜ୍ଞାନ ଆଦି ବିଦ୍ୟାକୁ ନେଇ ୨୭ ଗୋଟି ମୂଳ ବିଭାଗରେ ସ୍ନାତକୋତ୍ତର ଶିକ୍ଷା ପ୍ରଦାନ କରାଯାଉଛି । ଶିକ୍ଷାଦାନ, ଗବେଷଣା ଓ ଉଚ୍ଚଶିକ୍ଷାର ପ୍ରସାର, ବିକାଶ ଓ ନିୟନ୍ତ୍ରଣ ଇତ୍ୟାଦି ଦିଗକୁ କାର୍ଯ୍ୟକାରୀ କରିବାକୁ ଯାଇ ଏହି ବିଶ୍ୱବିଦ୍ୟାଳୟ ଶିକ୍ଷାଦାନ + ଶିକ୍ଷାନିୟନ୍ତ୍ରଣକର ନିୟାମକ ବିଶ୍ୱବିଦ୍ୟାଳୟ ଭାବରେ ଜାତୀୟ ପ୍ରସିଦ୍ଧି ପାଇପାରିଛି । ପ୍ରାୟ ୫୦୦୦ରୁ ଅଧିକ ବିଦ୍ୟାର୍ଥୀଙ୍କୁ ସ୍ନାତକୋତ୍ତର ପର୍ଯ୍ୟାୟର ଶିକ୍ଷା ପ୍ରତ୍ୟକ୍ଷ ଭାବରେ ପ୍ରଦାନ କରିଆସୁଥିବା ଏହି ବିଶ୍ୱବିଦ୍ୟାଳୟ ନିୟାମକ ବନ୍ଧନଧାରାରେ ୩୮୧ଟି ସହବନ୍ଧିତ ମହାବିଦ୍ୟାଳୟ, ୧୬ଟି ସ୍ୱୟଂଶାସିତ ମହାବିଦ୍ୟାଳୟ, ୧୦୦ଟି ବିବିଧ ବୈଷୟିକ ବୃତ୍ତିମୂଳକ ମହାବିଦ୍ୟାଳୟ, ୭ଟି ଭେଷଜ ବିଦ୍ୟାଭିତ୍ତିକ ମହାବିଦ୍ୟାଳୟ ଓ ୯ଟି ଆଇନ୍ ମହାବିଦ୍ୟାଳୟ ସହବନ୍ଧନ ସୂତ୍ରରେ ଅନୁବନ୍ଧିତ ହୋଇ ରହିଛନ୍ତି । ଏଥିସହିତ ଦୂର-ନିରନ୍ତର-ଶିକ୍ଷା ନିର୍ଦ୍ଦେଶାଳୟ ମାଧ୍ୟମରେ ଶହଶହ ବିଦ୍ୟାର୍ଥୀ ମାନବସମ୍ବଳ ଭାବରେ ପ୍ରତିବର୍ଷ ଏ ଅନୁଷ୍ଠାନରୁ ସଫଳତାର ସହିତ ଉତ୍ତୀର୍ଣ୍ଣ ହେଉଛନ୍ତି ।

ସଂପ୍ରତି ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗ, ମଧୁସୂଦନ ଆଇନ୍ ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ଆଇନ୍ କଲେଜ ଓ ଦୂରଶିକ୍ଷା ଧାରାର ଶିକ୍ଷକମାନଙ୍କୁ ମିଶାଇ ଆଚାର୍ଯ୍ୟ-ବରିଷ୍ଠାଚାର୍ଯ୍ୟ- ପ୍ରାଚାର୍ଯ୍ୟ ଭାବରେ ୨୧୮ ଜଣରୁ ଅଧିକ ଶିକ୍ଷକ ଶିକ୍ଷାଦାନ ଓ ଗବେଷଣାରେ ଏଠାରେ ନିଯୁକ୍ତ ଅଛନ୍ତି । ପ୍ରାୟ ୩୫୦ ସଂଖ୍ୟକ ଦାପ୍ତରିକ କର୍ମଚାରୀ ବିଶ୍ୱବିଦ୍ୟାଳୟ ଅଧିବ୍ୟବସ୍ଥାକୁ ସୁପରିଚାଳିତ କରୁଛନ୍ତି । ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଡକ୍ଟର ସୌମେନ୍ଦ୍ରମୋହନ ପଟ୍ଟନାୟକଙ୍କ ପ୍ରକୃଷ୍ଟ ଓ ସକାରାତ୍ମକ ପରିଚାଳନାରେ ସ୍ନାତକୋତ୍ତର ଶିକ୍ଷାପରିଷଦର ଅଧକ୍ଷ ପ୍ରଫେସର ବ୍ରହ୍ମାନନ୍ଦ ଶତପଥୀ, କୁଳସଚିବ ଶ୍ରୀଯୁକ୍ତ ଦୟାନିଧି ନାୟକ, ପରୀକ୍ଷା ନିୟନ୍ତ୍ରକ ସୌମ୍ୟାଶ୍ରୀ ରଥ, ବିତ୍ତାଧିକାରୀ ଶ୍ରୀ ବିଦ୍ୟାଧର ନାୟକଙ୍କ ସହସଂଚାଳନରେ ଏହି ବିଶ୍ୱବିଦ୍ୟାଳୟ ଗୁଣାତ୍ମକ ମର୍ଯ୍ୟାଦା ବୃଦ୍ଧି ଦିଗରେ ସବଳ ଢଙ୍ଗରେ ଶବଳିତ ପଦକ୍ଷେପରେ ଆଗେଇ ଚାଲିଛି । ଉତ୍ତରପିଢିଙ୍କୁ ସମର୍ଥ ଓ ଆତ୍ମନିର୍ଭରଶୀଳ କରିବାରେ ତଥା ଏକ ପ୍ରାଜ୍ଞିକ କ୍ଷେତ୍ର ରୂପେ ଓଡ଼ିଶା ପ୍ରଦେଶକୁ ପ୍ରତିଷ୍ଠା ଦେବାରେ ଏହି ବିଶ୍ୱବିଦ୍ୟାଳୟର ୭୫ ବର୍ଷର ନିରନ୍ତର ସାଫଲ୍ୟ ଓ ଉଦ୍ୟମକୁ ବିଚାରକୁ ନେଇ ସାରା ପ୍ରଦେଶ ଏହାକୁ ଓଡ଼ିଶାର ଉତ୍‌କୃଷ୍ଟ ବିଶ୍ୱବିଦ୍ୟାଳୟ ଶିକ୍ଷାକେନ୍ଦ୍ର ଭାବରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ମାନ୍ୟତା ପାଇବାକୁ ଦାବୀ କରିଆସୁଛନ୍ତି ଓ ରାଷ୍ଟ୍ରୀୟ ବ୍ୟବସ୍ଥାପକଙ୍କ ବିଚାରବତ୍ତା ପାଖରୁ ରଚନାତ୍ମକ ବିଶ୍ୱାସର ସ୍ୱୀକୃତି ଏଥକୁ ମିଳିବ- 'ଏ' ଆଶା ରଖିଆସୁଛନ୍ତି ।

## (ଦୁଇ– ଐତିହାସିକ ଭିତ୍ତି ଓ ଭୂମି)

ପଡ଼ୋଶୀ ପ୍ରଦେଶମାନଙ୍କଠାରୁ ଯଥେଷ୍ଟ ପଛରେ ଓଡ଼ିଶା ଇଂରେଜ ଶାସନ, ଶିକ୍ଷା, ସଭ୍ୟତା ଓ ବ୍ୟବସ୍ଥା ମଧ୍ୟକୁ ଆସିଲା । ଏଥିପାଇଁ ଐତିହାସିକ ଗୌରବର ଫର୍ଦ୍ଦ ଓଡ଼ିଶା ପାଇଁ ଯୋଡ଼ାଯାଇପାରେ । ମାତ୍ର ଭିନ୍ନ ଏକ ବାସ୍ତବତା ଓଡ଼ିଶାର ନିୟତିକୁ ଭୋଗିବାକୁ ପଡିଥିଲା । ପୂର୍ବରୁ ଇଂରେଜୀ ଶିକ୍ଷା–ଶାସନ–ବ୍ୟବସ୍ଥା ସଂସର୍ଗରେ ଆସିଥିବାରୁ ପଡ଼ୋଶୀ ପ୍ରଦେଶମାନେ ନିଜର ପୋଖତପଣିଆ ବଳରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଯେମିତି କରାୟତ କରିଥିଲେ, ସେମିତି ସାମ୍ରାଜ୍ୟବାଦୀ ବ୍ରିଟିଶ–ଶାସନ– ବ୍ୟବସ୍ଥାକୁ ମନାଇ–ବତାଇ ନିଜ ପ୍ରାଦେଶିକ ଶାସନଖଣ୍ଡ ଭିତରେ ଓଡ଼ିଶାକୁ ଅଣସ୍ୱତନ୍ତ୍ର ଭୂମିଭାଗ ରୂପେ ରଖିପାରିଥିଲେ । ଏହି କାରଣରୁ ଆଧୁନିକ ହେବାର ସମସ୍ତ ସୂତ୍ର ବଙ୍ଗଳା–ବିହାର–ମଧ୍ୟପ୍ରଦେଶ– ତାମିଲ ପ୍ରଦେଶ ମାଡ୍ରାସ କବଳରେ ଥିଲା । ଆଧୁନିକ ଶିକ୍ଷାଧାରାର ପ୍ରାଣଶକ୍ତି ରୂପେ ବିବେଚିତ ଅଣସ୍ୱତନ୍ତ୍ର ଓଡ଼ିଶାର ସମସ୍ତ ଶିକ୍ଷାନୁଷ୍ଠାନ ପାଟନା ଓ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଆଇନ୍–କର୍ତ୍ତୃତ୍ୱାଧୀନ ଥିଲା । ଫଳରେ ଶିକ୍ଷିତ ଓ ଉଚ୍ଚଶିକ୍ଷିତ ଗୋଷ୍ଠୀର ଗୁଣାତ୍ମକ–ପରିମାଣାତ୍ମକ ଅଭିବୃଦ୍ଧି ଓଡ଼ିଶାରେ ନିମ୍ନାଙ୍କରେ ରହିଥିଲା । ଶିକ୍ଷାର ଅଭାବହିଁ ଉତ୍କଳୀୟ ଜାତୀୟତାବୋଧର ସାଂସ୍କୃତିକ ଅସ୍ମିତାର, ସାମାଜିକ ବିକାଶର ଓ ଅର୍ଥନୀତିକ ସମୃଦ୍ଧିର ବାଧକ ଥିଲା ।

ଏହି ସତ୍ୟକୁ ଅନୁଭବ କରି ବିହାର–ଓଡ଼ିଶା ପ୍ରାଦେଶିକ ବ୍ୟବସ୍ଥାପକ ପରିଷଦରେ ପଣ୍ଡିତ ଗୋପବନ୍ଧୁ ଦାସ ଓ ଉତ୍କଳଗୌରବ ମଧୁସୂଦନ ଦାସ ଓଡ଼ିଶା ନିମିତ୍ତ ବିଶ୍ୱବିଦ୍ୟାଳୟ ପ୍ରସ୍ତାବ ଉଠାଇଥିଲେ । ପାଟନାଠାରେ ବିହାର–ଓଡ଼ିଶା ପାଇଁ ପାଟନା ବିଶ୍ୱବିଦ୍ୟାଳୟ ୧୯୧୭ ମସିହାରେ ଗଠନ ହେବା ହେତୁ ଓଡ଼ିଶାର ଶୈକ୍ଷିକ ସମୃଦ୍ଧି ନିମିତ୍ତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ବିଷୟରେ ବିଲାତି–ଉପନିବେଶବାଦୀ ବ୍ୟବସ୍ଥା ଧ୍ୟାନ ଦେଉ ନଥିଲେ । ୧୯୧୯ରେ ବିହାର–ଓଡ଼ିଶା ପ୍ରଶାସନ ଭାଗର ଛୋଟଲାଟ୍ ସାର୍ ଏଡ୍‌ୱାର୍ଡ ଗେଟ୍ ଏବର ରେଭେନ୍ସା ବିଶ୍ୱବିଦ୍ୟାଳୟର/ସେବେର ରେଭେନ୍ସା କଲେଜର ମୁଖ୍ୟ ଅଟ୍ଟାଳିକାର ଭୂମିପ୍ରସ୍ତର ସ୍ଥାପନ କରିବାକୁ ଆସି କହିଥିଲେ– 'ବିହାର–ଓଡ଼ିଶା ପ୍ରଦେଶର ପ୍ରଶାସନିକ' ଭାଗ ମଧ୍ୟରୁ ଓଡ଼ିଆ ଭାଷାଭାଷୀ କେବଳ ଗୋଟିଏ ଭାଗ । ଏ ଭାଗର ପୁନର୍ଗଠନ ଓ ଅଭିବୃଦ୍ଧି ପାଇଁ ଉଚ୍ଚଶିକ୍ଷାର ପ୍ରସାର ଦରକାର । ମୋର ବିଶ୍ୱାସ ଏହି କଲେଜ ଏକଦା ଭବିଷ୍ୟତ ଓଡ଼ିଶା–ବିଶ୍ୱବିଦ୍ୟାଳୟର ମୂଳଭିତ୍ତି ହେବ । ଓଡ଼ିଶାର ସ୍ୱତନ୍ତ୍ର ଭାଷା, ସଂସ୍କୃତି ଓ ଲୋକାଚାରୀୟ ପରିମଣ୍ଡଳ ରହିଛି ଓ ଏହାର ଅଭିବୃଦ୍ଧି ପାଇଁ ବିଶ୍ୱବିଦ୍ୟାଳୟ ନିର୍ମାଣ ଶାସନୋଚିତ– ଏ ପ୍ରକାର ଯୁକ୍ତି ଉପସ୍ଥାପନ କରିଥିଲେ ବି ବାରମ୍ବାର ବିଶ୍ୱବିଦ୍ୟାଳୟଟିଏ ପାଇଁ ଲୋଡା ବହୁ ସଂଖ୍ୟକ ସ୍କୁଲ–କଲେଜ ନଥିବାର ଆଳ ଦେଖାଇ ଗୋପବନ୍ଧୁ ଓ ମଧୁସୂଦନଙ୍କ ପ୍ରସ୍ତାବକୁ ବିଦେଶୀ ସରକାର କାର୍ଯ୍ୟକାରୀ କରିପାରିନଥିଲେ । ୧୯୨୧ ମସିହାରେ ଗୋପବନ୍ଧୁ ନୀଳକଣ୍ଠଙ୍କ ସହିତ ପରାମର୍ଶ କରି ଓଡ଼ିଶାରେ ଅଧିକ ଶିକ୍ଷାନୁଷ୍ଠାନର ପ୍ରସାର–ପ୍ରତିଷ୍ଠା ନିମିତ୍ତ ଯୋଜନା କଲେ । ସତ୍ୟବାଦୀ ବନବିଦ୍ୟାଳୟକୁ ଭବିଷ୍ୟତରେ ଜାତୀୟ ବିଶ୍ୱବିଦ୍ୟାଳୟରେ ପରିଣତ କରିବାର ଆଶାରଖି ତାହାଙ୍କୁ ସରକାରୀ କଳରୁ ମୁକ୍ତ କରିଦେଲେ । ମାତ୍ର ବନବିଦ୍ୟାଳୟର ଉଚ୍ଚ–ଉତ୍ତୀର୍ଣ୍ଣତା ବିଫଳ ହୋଇଗଲା ।

୧୯୧୯ ମସିହାରେ ସୋନପୁର ରାଜା କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷାରେ ଉଚ୍ଚଶିକ୍ଷା ବା ବିଶ୍ୱବିଦ୍ୟାଳୟ ଶିକ୍ଷାର ଗୌରବ ସାଧନ ପାଇଁ 'ସୋନପୁର ଚେୟାର' କୁଳପତି ସାର୍ ଆଶୁତୋଷ ମୁଖାର୍ଜୀଙ୍କ ପରାମର୍ଶରେ ପ୍ରତିଷ୍ଠା କରିଥିଲେ । ଆଶୁତୋଷ ମୁଖାର୍ଜୀ ନୀଳକଣ୍ଠଙ୍କୁ ଏହି ଚେୟାରର ଉପଯୁକ୍ତ ଦାୟାଦ ଭାବି ସାନୁରୋଧ ଡକାଇ ନିଯୁକ୍ତି ଦେଇଥିଲେ । ଏହି ସମୟରେ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ନିର୍ମାଣର ଏକ ଅହେତୁକ ଚେତନା ବୀଜ ପଣ୍ଡିତ ନୀଳକଣ୍ଠଙ୍କ ମନରେ ପୋତି ହୋଇଯାଇଥିଲା । ୧୯୨୭ ମସିହାରେ ଦିଲ୍ଲୀରେ କେନ୍ଦ୍ର ଆସେମ୍ବ୍ଲିର ଜଣେ ପ୍ରାଜ୍ଞିକ ସଭ୍ୟ ଭାବରେ ଓଡ଼ିଶା–ସ୍ୱତନ୍ତ୍ର–ପ୍ରଦେଶ ଗଠନର ଦାବୀ ଉପସ୍ଥାପନ କରିବା ଅବକାଶରେ ପଣ୍ଡିତ ନୀଳକଣ୍ଠ କହିଥିଲେ, 'ଆମେ ଓଡ଼ିଶାର ଅଧିବାସୀ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ପୂର୍ଣ୍ଣାଙ୍ଗ ପ୍ରଦେଶ ଚାହୁଁ । ଆମର ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ଓ ପ୍ରଧାନ ବିଚାରାଳୟ ଏକାନ୍ତଭାବେ ଦରକାର ।' ମାତ୍ର ଅନେକ କଅଁଳ

ପ୍ରତିଶ୍ରୁତି ସତ୍ତ୍ୱେ ବିଦେଶୀ ଶାସନ–ଶୃଙ୍ଖଳା ଦ୍ୱାରା ଏ ଆଶା ଓ ଦାବୀ ଅପୂରଣ ରହିଲା । ଲଣ୍ଡନ ଦରବାରରେ ମଧ୍ୟ ଏ ଦାବୀ ପାରଳା ମହାରାଜା ସାର୍ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ ଉଠାଇ ସରସ ପ୍ରତିଶ୍ରୁତି ପାଇ ଫେରିଥିଲେ । ୧୯୧୯ରୁ ୧୯୩୪ ମସିହା ମଧ୍ୟରେ ଗୋପବନ୍ଧୁ, ମଧୁସୂଦନ, ନୀଳକଣ୍ଠ ଓ ଗଜପତି କୃଷ୍ଣଚନ୍ଦ୍ରଙ୍କ ଦାବୀ ପୂରଣ ହୋଇନଥିଲେ ମଧ୍ୟ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ବିଜ୍ଞାନୋଚିତ ଅଭିବୃଦ୍ଧି ନିମିତ୍ତ ବିଶ୍ୱବିଦ୍ୟାଳୟଟିଏ ଜରୁରୀ– ଏ ପ୍ରକାର ଯାଥାର୍ଥ୍ୟ ବିଦେଶୀ ଶାସନକଳ ବୁଝିପାରିଥିଲେ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇଲା ପରେ ସ୍ୱତନ୍ତ୍ର ପ୍ରାଦେଶିକ ବିଧାନସଭା ନିମିତ୍ତ ନିର୍ବାଚନ ଅନୁଷ୍ଠିତ ହେଲା । ଏଥିରେ ପଣ୍ଡିତ ନୀଳକଣ୍ଠଙ୍କ ସଭାପତିତ୍ୱରେ ଜାତୀୟ କଂଗ୍ରେସ ବିଜୟ ହେଲା ଓ ୧୯୩୭ ମସିହା ଜୁଲାଇ ମାସରେ ବିଶ୍ୱନାଥ ଦାସଙ୍କ ପ୍ରଧାନମନ୍ତ୍ରିତ୍ୱରେ ଓଡ଼ିଶାରେ ପ୍ରାଦେଶିକ ମନ୍ତ୍ରିମଣ୍ଡଳୀୟ ଶାସନ ଆରମ୍ଭ ହେଲା । କଂଗ୍ରେସର ପ୍ରାଦେଶିକ ସଭାପତି ଭାବରେ ନୀଳକଣ୍ଠ ୧୯୩୭ ମସିହା ସେପ୍ଟେମ୍ବର ମାସରେ ସରକାରଙ୍କ ପାଖରେ ଓଡ଼ିଶାର ବହୁ ବୁଦ୍ଧିଜୀବୀଙ୍କ ମତ ନେଇ 'ସ୍ୱତନ୍ତ୍ର ଓଡ଼ିଶାର ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ' ପ୍ରତିଷ୍ଠା କ୍ଷେତ୍ରରେ ସରକାର ଉଦ୍ୟମ କରନ୍ତୁ ବୋଲି ଲିଖିତ ପ୍ରସ୍ତାବ ରଖିଲେ । ମାତ୍ର କଂଗ୍ରେସ ଦଳର ଜାତୀୟ ପାର୍ଲିଆମେଣ୍ଟାରୀ ଦଳର କଥାନୁସାରେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ବିଶ୍ୱବିଦ୍ୟାଳୟ ପାଇଁ ଅର୍ଥର ଅଭାବ ଦର୍ଶାଇ ଟାଳଟୁଳ ନୀତି ଅବଲମ୍ବନ କଲେ । ସେତେବେଳେ ସମ୍ବାଦଟିଏ ପ୍ରକାଶ ପାଇଲା– ବିଶ୍ୱବିଦ୍ୟାଳୟ ପାଇଁ 'ଲୁହା କୁରାଢୀ ନୁହେଁ, ଏଥିରେ ଲାଗିଥିବା କାଠ ଗଛର ମୂଳ କାଟୁଛି' । ନବଭାରତ ଲେଖିଲେ– 'ବିଶ୍ୱବିଦ୍ୟାଳୟଟିଏ ନହେଲେ ଓଡ଼ିଶାରେ କିପରି ଶିକ୍ଷାର ପ୍ରଗତି ହୋଇପାରିବ ? ଶିକ୍ଷାର ପ୍ରସାର ସମ୍ଭବ ନହେଲେ ଜାତି ନିଷ୍କ୍ରିୟ ହୋଇଯିବନିକି ?' ତଥାପି ସରକାରଙ୍କ ଉଦାସୀନ ନିଶ୍ଚୁପ ରହିବାର ପ୍ରସଙ୍ଗରେ ପ୍ରତିବାଦୀ ମନା ହୋଇ ନୀଳକଣ୍ଠ ବିଶ୍ୱନାଥଙ୍କ ସହର ବ୍ରହ୍ମପୁରଠାରେ ବିଶ୍ୱବିଦ୍ୟାଳୟ ଗଠନ ସପକ୍ଷରେ ଆନ୍ଦୋଳନ କଲେ । ଜନତାର ସମର୍ଥନରେ ବେସରକାରୀ ଭାବେ ନୀଳକଣ୍ଠଙ୍କ ଅଧ୍ୟକ୍ଷତାରେ ଏକ ବିଶ୍ୱବିଦ୍ୟାଳୟ କମିଟି ନବ ଓଡ଼ିଶାର ବୌଦ୍ଧିକ ଓ ଶୈକ୍ଷିକ ବ୍ୟବସ୍ଥାର ଉନ୍ନତି ପାଇଁ ଅଣ୍ଟା ଭିଡ଼ିଲା । ଏହାପରେ ବାଧ୍ୟ ହୋଇ ସରକାରୀମତେ 'ଓଡ଼ିଶା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଅନୁଧ୍ୟାନ କମିଟି' ୧୯୩୮ ମସିହା ମାର୍ଚ୍ଚ ୨ ତାରିଖରେ ଗଠିତ ହେଲା। ନୀଳକଣ୍ଠ ଏହି ସରକାରୀ କମିଟିର ଅଧ୍ୟକ୍ଷ ଓ କଟକ ଟ୍ରେନିଂ କଲେଜର ପ୍ରିନ୍ସିପାଲ ଶ୍ରୀ ମହେଶ ଚନ୍ଦ୍ର ପ୍ରଧାନ ସମ୍ପାଦକ ହେଲେ । ଉଭୟ ଓଡ଼ିଶା ଓ ଓଡ଼ିଶା ବାହାରୁ ନାନା ତଥ୍ୟ ସଂଗ୍ରହ କରି ବିଶ୍ୱବିଦ୍ୟାଳୟର ରୂପରେଖ, ଅର୍ଥ ବ୍ୟବସ୍ଥା, ବିଦ୍ୟାଧାରା, ସ୍ଥାନ ଓ ବିଧିବ୍ୟବସ୍ଥା ଆଦି ବିଷୟରେ ଏକ ବିବରଣୀ ନଥି (ରିପୋର୍ଟ ଫାଇଲ୍) ପ୍ରସ୍ତୁତ କରି ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ପାଖରେ ଦାଖଲ କଲେ । ପବନରେ ଇତିହାସ ଲେଖାଯାଏନି ସାମର୍ଥ୍ୟ ଓ କଲ୍ୟାଣର ମାନସିକତାରେ ଇତିହାସ ଆପେ ଗଢିହୋଇଯାଏ । ଓଡ଼ିଶା ପାଇଁ ବିଶ୍ୱବିଦ୍ୟାଳୟ କମିଟିର ଅଧ୍ୟକ୍ଷ ନୀଳକଣ୍ଠ ବିବରଣୀ ଚିଠା ଉପସ୍ଥାପନ ବେଳେ ଆପଣାର ପତ୍ରରେ ଏହି ଆଶା ବ୍ୟକ୍ତ କରିଥିଲେ । ୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାରତର ଯୋଗଦାନକୁ ପ୍ରତିବାଦ କରି ରାଷ୍ଟ୍ରବ୍ୟାପି କଂଗ୍ରେସ ମନ୍ତ୍ରିମଣ୍ଡଳ ସରକାରୀ ବ୍ୟବସ୍ଥାରୁ ଇସ୍ତଫା ଦେଇ ଓହରି ଆସିଲେ । ଓଡ଼ିଶାରେ ତାହା ଘଟିଲା ଓ ପ୍ରଦେଶ ରାଜ୍ୟପାଳଙ୍କ ଦପ୍ତରରେ ବିବରଣୀ ଉପସ୍ଥାପନ କରିବା ନିରର୍ଥକ ଭାବି ପ୍ରଶାସନ ଅଧିକାରୀ ତାହାକୁ ମୃତପ୍ରାୟ ପକାଇ ରଖିଲେ । ପରେ ଏ ବିବରଣୀ ଅନ୍ତର୍ଦ୍ଧାନ ହୋଇଗଲା । ତତ୍‌କାଳୀନ ରେଭେନ୍ସା ମହାବିଦ୍ୟାଳୟର ଅନେକ ବରିଷ୍ଠ ଅଧ୍ୟାପକ ପାଟନା ଓ ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ଗସ୍ତକରି ସମ୍ମାନ ପାଉଥିବାରୁ ଓ ବିଶାରଦୀ ଭାବେ ଲାଭବାନ ହେଉଥିବାରୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ ବିଶେଷ ଆଗ୍ରହୀ ନଥିଲେ ।

ମାତ୍ର ମହାକାଳ ହିଁ ନିୟତି ଖୋଲାଣର ହର୍ତ୍ତାକର୍ତ୍ତା । ୧୯୪୧ ମସିହା ନଭେମ୍ବର ମାସରେ ପଣ୍ଡିତ ନୀଳକଣ୍ଠଙ୍କ ତତ୍ତ୍ୱାବଧାନ, କୂଟନୀତିକ ଓ ସାଙ୍ଗଠନିକ ଉଦ୍ୟମ ଏବଂ ଯୋଗସୂତ୍ରକ୍ରମେ ପାରଳା ମହାରାଜାଙ୍କ ପ୍ରଧାନମନ୍ତ୍ରିତ୍ୱରେ ପୁଣିଥରେ ସ୍ୱତନ୍ତ୍ର ଓଡ଼ିଶା ପ୍ରାଦେଶିକ ଶାସନ ବ୍ୟବସ୍ଥାରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ନୀଳକଣ୍ଠଙ୍କ ପରାମର୍ଶରେ କଂଗ୍ରେସ ଛାଡି ଆସିଥିବା ବନ୍ଧୁ ପଣ୍ଡିତ ଗୋଦାବରୀଶ ମିଶ୍ର ମିଳିତ

ମନ୍ତ୍ରିମଣ୍ଡଳରେ ଶିକ୍ଷାମନ୍ତ୍ରୀ ହେଲେ । ଅନ୍ୟତମ ମନ୍ତ୍ରୀ ଭଦ୍ରକର ମହମ୍ମଦ ଅବଦୁଲ୍ ଶୋଭାନ୍ ଖାଁ ଉଚ୍ଚଶିକ୍ଷାର ପ୍ରସାର ପାଇଁ ନିଷ୍ଠାବାନ ଥିଲେ । ପାରଳା ରାଜା ଗଜପତି କୃଷ୍ଣଚନ୍ଦ୍ର ନିଜ ରାଜ୍ୟର କଲେଜକୁ ଓ୍ୱାଲ୍‌ଟିୟରଠାରେ ଥିବା ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧୀନରେ ରଖିବାକୁ ଅପସ୍ୱାଭିମାନର ବିଷୟ ବୋଲି ଭାବୁଥିଲେ । ଗୋପବନ୍ଧୁଙ୍କ ପ୍ରିୟ ଏବଂ ୧୯୪୦ ମସିହାରେ ରେଭେନ୍ସା ଛାତ୍ର ଆନ୍ଦୋଳନକୁ କେନ୍ଦ୍ରକରି ପାଟନା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟଙ୍କ ଦ୍ୱାରା ଅପମାନିତ ହୋଇ ଫେରିଥିବା ବିଶିଷ୍ଟ ଶିକ୍ଷାବିତ୍ ଓ ଅଧ୍ୟାପକ ବିପିନବିହାରୀ ରାୟ ଗୋପବନ୍ଧୁଙ୍କ ସ୍ୱପ୍ନର ଓଡ଼ିଶା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଦୃଢ ସଂକଳ୍ପମନା ହୋଇଉଠିଲେ (ଏଠାରେ ଉଲ୍ଲେଖଯୋଗ୍ୟ ଶ୍ରୀଯୁକ୍ତ ରାୟ ମିଳିତ ମନ୍ତ୍ରିମଣ୍ଡଳ ଗଠନ ପାଇଁ ୫୦ ହଜାର ଟଙ୍କା ପ୍ରଦାନ କରିଥିଲେ ଓ ପ୍ରାଦେଶିକ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ପାଇଁ ଇଚ୍ଛାବ୍ୟକ୍ତ କରିଥିଲେ ।) ୧୯୪୨, ସେପ୍ଟେମ୍ବର ୨ ତାରିଖରେ ନବଭାରତରେ 'ଉତ୍କଳରେ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ' ଶୀର୍ଷକରେ ସମ୍ବାଦ ଯୁବ ସାମ୍ବାଦିକ ଶ୍ରୀ ରାମଚନ୍ଦ୍ର ଦାଶଙ୍କ ଦ୍ୱାରା ପ୍ରକାଶ ପାଇଲା ଏବଂ ଓଡ଼ିଶାରେ ଶିକ୍ଷାର ସ୍ୱାତନ୍ତ୍ର୍ୟ ପାଇଁ ଚାରିଆଡୁ ସପକ୍ଷ ଜନମତ ଆସିଲା । ଜନମତକୁ ଆଧାର କରି ନୀଳକଣ୍ଠଙ୍କ ପ୍ରସ୍ତୁତ ବିଶ୍ୱବିଦ୍ୟାଳୟ କମିଟି ବିବରଣୀକୁ ପୁନର୍ବାର ଗୋଦାବରୀଶ ଓ ଶୋଭାନ୍ ଖାଁ ମହୋଦୟ ପ୍ରଧାନମନ୍ତ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ମନ୍ତ୍ରିମଣ୍ଡଳ ପାଖରେ ବିଚାର ନିମନ୍ତେ ଉପସ୍ଥାପନ କଲେ । ନୀଳକଣ୍ଠ, ଗୋଦାବରୀଶ, ଗଜପତି କୃଷ୍ଣଚନ୍ଦ୍ର, ଅଧ୍ୟାପକ ବିପିନବିହାରୀ ଓ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଶ୍ୟାମ ଚନ୍ଦ୍ର ତ୍ରିପାଠୀଙ୍କ ମାନସିକ ଚିନ୍ତାଧାରାର ସଂଯୋଗକ୍ରମେ ଓଡ଼ିଶା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରସ୍ତାବ ଯଥାଶୀଘ୍ର କାର୍ଯ୍ୟକାରୀ ହେବାରେ ବାଧା ରହିଲା ନାହିଁ । ପ୍ରାଦେଶିକ ମନ୍ତ୍ରିମଣ୍ଡଳ ଦ୍ୱାରା ଅନୁମୋଦିତ ଓଡ଼ିଶା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଚିଠାଟି ପ୍ରଧାନମନ୍ତ୍ରୀ ପାରଳା ମହାରାଜାଙ୍କ ଦୃଢ ସମର୍ଥନ ଓ ସୁପାରିଶ ଅନୁସାରେ ରାଜ୍ୟପାଳ ସାର୍ ଉଇଲିୟମ୍ ହଥର୍ଣ୍ଣ ଲୁଇସ୍ ନିଜର ସପକ୍ଷ ଓ ସହୃଦୟ ସମ୍ମତି ପ୍ରଦାନ କଲେ । ଫଳରେ ବିଶ୍ୱବିଦ୍ୟାଳୟ ସମ୍ବନ୍ଧୀ ଆଇନ୍ ସମ୍ମତ ବିଧେୟକ ପ୍ରଣୟନ ନିମିତ୍ତ ଶିକ୍ଷାମନ୍ତ୍ରୀ ଗୋଦାବରୀଶ ସେହି ସମୟର ଆଇନ ସଚିବ ଡବ୍ଲୁ ଡବ୍ଲୁ ଡାଜିଏଲ୍‌ଙ୍କୁ ନିର୍ଦ୍ଦେଶ ଦେଲେ ।

ଗ୍ରୀଷ୍ମକାଳୀନ ଅବକାଶ ମଧ୍ୟରେ ଡାଜିଏଲ୍ ସାହେବ ବିଶ୍ୱବିଦ୍ୟାଳୟ ଚିଠା ବିଧେୟକ ପ୍ରସ୍ତୁତ କଲେ ମଧ୍ୟ ବିଧାନସଭାରେ ଗୃହୀତ କରିବା କ୍ଷେତ୍ରରେ ବାଚସ୍ପତି ମୁକୁନ୍ଦ ପ୍ରସାଦ ଦାସ ପ୍ରଥମେ ସହମତ ନଥିଲେ । ମାତ୍ର ବାଚସ୍ପତିଙ୍କ ବିରୁଦ୍ଧରେ ଏଥିପାଇଁ ଅନାସ୍ଥାପ୍ରସ୍ତାବ ପ୍ରଧାନମନ୍ତ୍ରୀ ଆଣିବେ– ଏ ସମ୍ବାଦରେ ବିଚଳିତ ହୋଇ ଶ୍ରୀଯୁକ୍ତ ଦାସ ବିଶ୍ୱବିଦ୍ୟାଳୟ ବିଧେୟକ ବିଲ୍‌କୁ ଅଗତ୍ୟା ସବାଧ ସମର୍ଥନ କଲେ । ୧୯୪୩ ମସିହା ଜୁନ୍ ୩୦ ତାରିଖ ଦିନ ଉତ୍କଳ ବିଶ୍ୱବିଦ୍ୟାଳୟ ବିଲ୍ ବିଧାନସଭାରେ ଗୃହୀତ ହୋଇଥିଲା ଓ ଅଗଷ୍ଟ ଦୁଇ ତାରିଖରେ ଏହା ରାଜ୍ୟପାଳ ଲୁଇସ୍‌ଙ୍କ ଦ୍ୱାରା ସ୍ୱୀକୃତି ପାଇଲା । ବିଧେୟକ ଉପସ୍ଥାପନା କଲାବେଳେ ଶିକ୍ଷାମନ୍ତ୍ରୀ ଗୋଦାବରୀଶ ନୀଳକଣ୍ଠଙ୍କ ପ୍ରସ୍ତୁତ ବିବରଣୀକୁ ଧନ୍ୟବାଦର ସହିତ ଉଲ୍ଲେଖ କରି 'ଉତ୍କଳ ସମ୍ମିଳନୀ' ସବୁ ଓଡ଼ିଆ ଭାଷୀ ଅଞ୍ଚଳର ସହଯୋଗରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବାସ୍ତବ ଭିତ୍ତି ଥିବାରୁ ଏହି ପ୍ରତିନିଧି ସ୍ଥାନୀୟ ଅନୁଷ୍ଠାନର ସ୍ମୃତିରେ ଓଡ଼ିଶାର ବିଶ୍ୱବିଦ୍ୟାଳୟର ନାମ 'ଉତ୍କଳ ବିଶ୍ୱବିଦ୍ୟାଳୟ' ହେଲା ବୋଲି ସିଦ୍ଧାନ୍ତ ପ୍ରଦାନ କରିଥିଲେ ।

'ଉତ୍କଳ ବିଶ୍ୱବିଦ୍ୟାଳୟର ବିଧେୟକ' ସ୍ୱୀକୃତି ପାଇଲା ପରେ ଏହାର ପରିଚାଳନା ଓ କାର୍ଯ୍ୟକାରୀ ବିଧି ପ୍ରବିଧି ପ୍ରଣୟନ ଉପରେ ଗୁରୁତ୍ୱ ଦିଆଗଲା । କାର୍ଯ୍ୟନିର୍ବାହୀ ନିୟମାବଳୀ ବା ବିଧିଖସଡ଼ା (Statutes) ଓ ପାଠ୍ୟବିଧାନ (Academic Regulations) ପ୍ରଣୟନ କରିବା ଲାଗି ପାରଳା ମହାରାଜାଙ୍କ ବ୍ୟବସ୍ଥାକ୍ରମେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର କୁଳସଚିବ ମାକ୍ଲିନ ସାହେବ ଅନୁରୋଧିତ ହୋଇ ତିନିମାସ ମଧ୍ୟରେ ଓଡ଼ିଶାରେ ଆତିଥ୍ୟ ଗ୍ରହଣ କରି ନିୟମାବଳୀ ପ୍ରସ୍ତୁତ କଲେ । ବିଶ୍ୱବିଦ୍ୟାଳୟ ବିଧିଖସଡ଼ା ଅନୁସାରେ ଏହାର ସଂରଚନାଟି କୁଳାଧିପତି, ପ୍ରକୁଳାଧିପତି, କୁଳପତି, ସିନେଟ, ସିଣ୍ଡିକେଟ, ପାଠ୍ୟପରିଷଦ ଓ କୁଳସଚିବ ପଦବୀକୁ ଆଧାର କରି ଗଢିଉଠିଲା । ଏହି ବିଧିଖସଡ଼ାକୁ 'ଉତ୍କଳ ବିଶ୍ୱବିଦ୍ୟାଳୟ ଅଧିନିୟମ– ୧୯୪୩' (The Utkal University Act-1983) ଭାବରେ ବିବେଚନା

କରାଗଲା । ୧୯୪୩ ମସିହା ନଭେମ୍ବର ୨୭ ତାରିଖ ଦିନ ରେଭେନ୍ସା କଲେଜର ୧୫ ନମ୍ବର ପ୍ରକୋଷ୍ଠରେ ଏ ବିଶ୍ୱବିଦ୍ୟାଳୟର ପ୍ରଥମ ଦିବସ ସଂଚାଳିତ ହୋଇଥିଲା । ସେହି ସମୟର ରେଭେନ୍ସା ମହାବିଦ୍ୟାଳୟର ଅଧ୍ୟକ୍ଷ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏହି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଓ ତାଙ୍କ ସୁପାରିଶ୍‌ରେ ଇଂରାଜୀ ପ୍ରାଧ୍ୟାପକ ଭି.ଭି.ଜନ୍ ପ୍ରଥମ କୁଳସଚିବ ରୂପେ ଦାୟିତ୍ୱ ନିର୍ବାହ କରିଥିଲେ । ରେଭେନ୍ସାର ମୁଖ୍ୟକିରାଣୀ ଜଗନ୍ନାଥ ମିଶ୍ର ବିଶ୍ୱବିଦ୍ୟାଳୟ ଦପ୍ତରର ପରିଚାଳକ ଓ ୧୯୪୫ରେ ବାରିପଦାର ଗୋକୁଳଚନ୍ଦ୍ର ଶତପଥୀ ସହକାରୀ କୁଳସଚିବ ନିଯୁକ୍ତ ହୋଇଥିଲେ । ଉତ୍କଳ ସମ୍ମିଳନୀର ପ୍ରଥମ ସଭାପତି ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଉତ୍ତରପିଢି ମୟୂରଭଞ୍ଜର ରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓ ପ୍ରଥମ ପ୍ରକୁଳାଧିପତି (Pro-chancellor) ରୂପେ ମନୋନୀତ ହୋଇଥିଲେ । ରାୟ ବାହାଦୁର ବିପିନବିହାରୀ ରାୟ ଓ ସବୁଜକବି ତଥା ବିଖ୍ୟାତ ଅଧିବକ୍ତା ହରିହର ମହାପାତ୍ର ପ୍ରଥମ ସିଣ୍ଡିକେଟ୍ ସଭ୍ୟ ଭାବରେ ମନୋନୀତ ହୋଇଥିଲେ । ଗୋରାଚାନ୍ଦ ପଟ୍ଟନାୟକ ଓ ଲିଙ୍ଗରାଜ ପାଣିଗ୍ରାହୀ ପ୍ରତିଷ୍ଠାତା ସଭ୍ୟଥିଲେ । ୧୯୪୪ ମସିହା ଜୁଲାଇ ମାସରେ କୁଳାଧିପତି ହଥର୍ଣ୍ଣ ସାହେବ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ସିନେଟର ଆଜୀବନ ସଭ୍ୟ ଭାବରେ ଗ୍ରହଣ କରିଥିଲେ ଏବଂ ବିଶ୍ୱବିଦ୍ୟାଳୟଙ୍କୁ ପାରମର୍ଶିକ ପତ୍ର ଲେଖି ଜଣାଇଥିଲେ– ଏ ବିଶ୍ୱବିଦ୍ୟାଳୟ ସର୍ବଦା ପାଠ ବିଶାରଦ ଓ ପ୍ରକୃତ ଜ୍ଞାନୀଙ୍କୁ ସାଦର ଆମନ୍ତ୍ରଣ କରୁ ।

୧୯୬୬ ମସିହା ଜାନୁଆରୀ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟର ଅଧିନିୟମକ୍ରମେ ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର ପ୍ରାଣକୃଷ୍ଣ ପରିଜା, ପଣ୍ଡିତ ନୀଳକଣ୍ଠ ଦାସ ଓ ନ୍ୟାୟାଧୀଶ ଗୋପାଳ ଚନ୍ଦ୍ର ଦାସ ପ୍ରକୁଳାଧିପତି ହୋଇଥିଲେ । ଅଧିନିୟମରେ ସଂଶୋଧନ ଘଟି ଏହି ପଦବୀ ଉଠିଯିବା ଦ୍ୱାରା ବିଶ୍ୱବିଦ୍ୟାଳୟର କୁଳପତି ପଦବୀ ଅଧିକ କ୍ଷମତା ଓ ମର୍ଯ୍ୟାଦାସମ୍ପନ୍ନ ହେଲା । ୧୯୪୩ରୁ ୧୯୬୬ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ପ୍ରଶାସନର ସଂରଚନା ବିଧାନ ବା ଢାଞ୍ଚାଟି ଥିଲା– କୁଳାଧିପତି–ପ୍ରକୁଳାଧିପତି–କୁଳପତି । ୧୯୪୮ ମସିହାରୁ ୧୯୬୬ ପର୍ଯ୍ୟନ୍ତ କୁଳପତିମାନେ ୧୯୪୩ ଅଧିନିୟମ ଅନୁଯାୟୀ ସିନେଟଦ୍ୱାରା ନିର୍ବାଚିତ ହେଉଥିଲେ । ଏହି ନିର୍ବାଚନ ବିଧାନରେ ୧୯୪୮ ଓ ୧୯୫୫ ମସିହାରେ ଦୁଇଥର ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ନାମ କୁଳପତି ପଦମଣ୍ଡନ ନିମିତ୍ତ ପ୍ରସ୍ତାବିତ ହୋଇ ବି ସେ ସିନେଟ ଦ୍ୱାରା ନିର୍ବାଚିତ ହୋଇପାରି ନଥିଲେ । ଯିଏ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ଭିତ୍ତିସ୍ଥାପକ ସେ ଇତିହାସର ବିଡମ୍ବିତ ଅଧ୍ୟାୟର ଦୃଷ୍ଟାନ୍ତ ହୋଇଗଲେ । ଏହା ଥିଲା ସମୟର ରାଜନୈତିକ ବକ୍ରତିର ଗୋଟିଏ ମହାଖେଳ । ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ, ମହେଶଚନ୍ଦ୍ର ପ୍ରଧାନ ଓ ଡକ୍ଟର ପର୍ଶୁରାମ ମିଶ୍ର ସ୍ୱାଧୀନତା ପରବର୍ତ୍ତୀ କାଳରେ କୁଳପତି ଆସନ ମଣ୍ଡନ କଲେ । ୧୯୫୨ରୁ କୁଳପତି ରହିବାର ଅବଧି ତିନି ବର୍ଷକୁ ଖସି ଆସିଲା । ୧୯୫୫ରୁ ୧୯୬୬ ପର୍ଯ୍ୟନ୍ତ ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ପରେପରେ ଡକ୍ଟର ସଦାଶିବ ମିଶ୍ର, ରମାନାଥ ମହାନ୍ତି, ଜ୍ଞାନଚାନ୍ଦ (ପ୍ରଶାସକ), ଗୌତମ ମାଥୁର୍, ଡକ୍ଟର ବିଦ୍ୟାଧର ମିଶ୍ର, ଡକ୍ଟର ମହେନ୍ଦ୍ର କୁମାର ରାଉତ, ମହମ୍ମଦ ହବିବ୍, ଡକ୍ଟର ମନ୍ମଥନାଥ ଦାସ, ପି.କେ. ଦାଶ, ଡକ୍ଟର ସତ୍ୟାନନ୍ଦ ଆଚାର୍ଯ୍ୟ, ଡକ୍ଟର ଗୌରକିଶୋର ଦାସ, ଡକ୍ଟର ଗୋକୁଳାନନ୍ଦ ଦାସ, ଡକ୍ଟର ପାଣ୍ଡବ ନାୟକ, ଶ୍ରୀଯୁକ୍ତ ଅଶୋକ ତ୍ରିପାଠୀ/ଅରୁଣ ସାମନ୍ତରାୟ (ପ୍ରଶାସକ), ଡକ୍ଟର ଲକ୍ଷ୍ମୀନାରାୟଣ ମିଶ୍ର, ଡକ୍ଟର ବିନାୟକ ରଥ, ଡକ୍ଟର ପ୍ରଶାନ୍ତ କୁମାର ସାହୁ, ଡକ୍ଟର ଅଶୋକ କୁମାର ଦାସ ଓ ଡକ୍ଟର ସୌମେନ୍ଦ୍ର ମୋହନ ପଟ୍ଟନାୟକ କୁଳପତି ଆସନରେ ଅଧିଷ୍ଠିତ ହୋଇଛନ୍ତି । ଉଣାଅଧିକେ ଦୁଇତିନିଜଣଙ୍କୁ ଛାଡିଦେଲେ ଉତ୍କଳ ବିଶ୍ୱବିଦ୍ୟାଳୟ ଜ୍ଞାନୀ–ଗୁଣୀ–ସୁଦକ୍ଷ–ନୀତିପରାୟଣ କୁଳପତିମାନଙ୍କୁ ପାଇପାରିଛି । ପରିଣାମତଃ ଦୀର୍ଘ ୭୫ ବର୍ଷ ଧରି ଆଧୁନିକ ଓଡ଼ିଶାର ଶୈକ୍ଷିକ ମୂଲ୍ୟବୋଧକୁ ସମତୁଳିତ କରିଆସିଛି ଏବଂ ଜାତିକୁ ସମର୍ଥ ଓ ଦକ୍ଷ ନୂଆ ଚେତନାର ନୂଆ ପିଢି ଯୋଗାଇ ଆସିଛି ।

ଏଠାରେ ଉଲ୍ଲେଖଯୋଗ୍ୟ ୧୯୪୩ରୁ ୧୯୫୫ ମସିହା ପର୍ଯ୍ୟନ୍ତ ପ୍ରାୟ ପ୍ରଥମ ୧୨ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସରରେ ବା ବିଧିବ୍ୟବସ୍ଥାର ସଂଚାଳନରେ ବାହ୍ୟ ରାଜନୀତିର ଉତ୍କଟ ଉତ୍ପାତ ଦେଖାଯାଇନଥିଲା । ୧୯୫୫ରୁ ୧୯୬୬ ମସିହା ପର୍ଯ୍ୟନ୍ତ କାଳଖଣ୍ଡକୁ ଉତ୍କଳ ବିଶ୍ୱବିଦ୍ୟାଳୟର

ନୂଆକ୍ଷେତ୍ରୀୟ ପରିସର (କ୍ୟାମ୍ପସ୍) ନିର୍ମାଣର ଓ ଶିକ୍ଷାଦାନର ଉନ୍ନତିକରଣ ପର୍ଯ୍ୟାୟ ଭାବରେ ନିଆଯାଇପାରେ । ଏକଦା ଉଚ୍ଚଶିକ୍ଷାର ସହବନ୍ଧିତ ପରିଚାଳନା କରୁଥିବା ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତ୍ୟକ୍ଷ ଗବେଷଣା ଓ ସ୍ନାତକୋତ୍ତର ଶିକ୍ଷାଦାନର ବାଣୀପୀଠ ଭାବେ ସମାଦୃତ ହେଲା । ୧୯୬୬ରୁ ୧୯୮୩ ମଧ୍ୟରେ ଗୁଣାତ୍ମକ ଶିକ୍ଷାର ବିକାଶ ଘଟିଲେ ମଧ୍ୟ ବିଶ୍ୱବିଦ୍ୟାଳୟ ବ୍ୟାପାରଚକ୍ର ଭିତରକୁ କ୍ରମଶଃ ରାଜନୀତିକ ଚାପ ପ୍ରବେଶ କରିଛି । ଶିକ୍ଷକ-କର୍ମଚାରୀ-ଛାତ୍ର ରାଜନୀତିର ପଶାକାଠି ଚାଳନା ଭିତରେ ବିଶ୍ୱବିଦ୍ୟାଳୟ ଅସହାୟବୋଧର ଶୀକାର ଯେ ନହୋଇଛି ଏମନ୍ତ ନୁହଁ । ତଥାପି ସର୍ବଭାରତୀୟ ବୌଦ୍ଧିକ ପ୍ରତିଯୋଗିତାରେ ଉତ୍କଳ ବିଶ୍ୱବିଦ୍ୟାଳୟର ବିଦ୍ୟାର୍ଥୀମାନଙ୍କର ଗୁଣାତ୍ମକ ଓ ପରିମାଣାତ୍ମକ ସଫଳତା ଏହାର ମର୍ଯ୍ୟାଦା ଓ ଖ୍ୟାତିର କାରଣ ହୋଇପାରିଛି । ଓଡ଼ିଶା ଇତିହାସ, ଓଡ଼ିଶାର ମନ୍ଦିର, ଓଡ଼ିଶାର ଭୂଗୋଳ, ଓଡ଼ିଶାର ନଦନଦୀ, ଖଣିଜସ୍ଥିତି, ବାଣିଜ୍ୟିକ ସ୍ଥିତାବସ୍ଥା, କଳା-ସଂସ୍କୃତି-ସାହିତ୍ୟ, ପ୍ରତ୍ନତାତ୍ତ୍ୱିକ ଐତିହ୍ୟ ସହିତ ରାଜନୀତିକ-ଅର୍ଥନୀତିକ-ଦାର୍ଶନିକ ଭାବକଳ୍ପୀ ଦିଗଗୁଡ଼ିକୁ ନେଇ ଉଚ୍ଚମାନର ଗବେଷଣା ସଂପାଦିତ ହୋଇଛି । ୧୯୮୫ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟର ପରିଚାଳନାରେ ସିନେଟ୍/ସିଣ୍ଡିକେଟର ଉତ୍ତାପୀ ପ୍ରଭାବ ରହିଥିଲା । ମାତ୍ର ଐତିହାସିକ ମନ୍ମଥନାଥ ଦାସଙ୍କ କୁଳପତିତ୍ୱ କାଳରୁ ନୂତନ ସଂଶୋଧିତ ବିଶ୍ୱବିଦ୍ୟାଳୟ ଅଧିଖସଡ଼ା ଏକ ସମଭାଗିତା ଓ ଦାୟବଦ୍ଧତାର ପରିବେଶ ସୃଷ୍ଟି କରିପାରିଛି । ପରିଣାମସ୍ୱରୂପ ଶିକ୍ଷାଦାନ, ଗବେଷଣା, ଶିକ୍ଷକସମ୍ବଳ, ବିଦ୍ୟାର୍ଥୀ ସାଫଲ୍ୟ, ପାଠାଗାର-ଗବେଷଣାଗାର-ଛାତ୍ରାବାସ-ପ୍ରୟୋଗଶାଳା-କାମ୍ପ୍ୟୁଟରିକ ଓ ସଂଖ୍ୟାୟନୀ ପରିଚାଳନା ପଦ୍ଧତି ଇତ୍ୟାଦିର ଶୃଙ୍ଖଳିତ, ଉନ୍ନତ ଓ ବିକଶିତ ସ୍ଥିତାବସ୍ଥାକୁ ନେଇ ଏ ବିଶ୍ୱବିଦ୍ୟାଳୟ ରାଜ୍ୟର ଏକମାତ୍ର 'ଏ+' ମାନ୍ୟତାପ୍ରାପ୍ତ ଶିକ୍ଷାନୁଷ୍ଠାନ ହୋଇପାରିଛି ।

### (ତିନି-ଦୃଷ୍ଟାନ୍ତଧର୍ମୀ ବିକାଶ)

ସମ୍ପ୍ରତି ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ, ଫକୀରମୋହନ ବିଶ୍ୱବିଦ୍ୟାଳୟ, ରେଭେନ୍ସା ବିଶ୍ୱବିଦ୍ୟାଳୟ, ବିଜୁ ପଟ୍ଟନାୟକ ବୈଷୟିକ ବିଶ୍ୱବିଦ୍ୟାଳୟ ଓ ରମାଦେବୀ ବିଶ୍ୱବିଦ୍ୟାଳୟ ସ୍ଥାପନ ହେବା ଦ୍ୱାରା ଏହି ସର୍ବପ୍ରାଚୀନ ମାତୃକା ବିଶ୍ୱବିଦ୍ୟାଳୟର ନିୟାମକ କ୍ଷେତ୍ର ଓ ସହବନ୍ଧିତ ମହାବିଦ୍ୟାଳୟର ପରିସଂଖ୍ୟାନ କମିଯାଇଛି । ତଥାପି ରାଜ୍ୟର ୯ଟି ଜିଲ୍ଲା ଓ ହାରାହାରି ୨୪.୯୭୩ ବର୍ଗକିଲୋମିଟର ଅଞ୍ଚଳ ଭିତରେ ପ୍ରାୟ ୧୨୦ ଲକ୍ଷ ଲୋକଙ୍କୁ ଏ ବିଶ୍ୱବିଦ୍ୟାଳୟ ପ୍ରତ୍ୟକ୍ଷ ଭାବେ ଶିକ୍ଷା ଯୋଗାଇଦେଉଛି । ୩୮୧ ଗୋଟି ମହାବିଦ୍ୟାଳୟକୁ ଆପଣାର ଶିକ୍ଷା ବ୍ୟବସ୍ଥାରେ ସହବନ୍ଧନ ସୂତ୍ରରେ ଅଙ୍ଗୀଭୂତ କରିଥିବାରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଦେଶର ସର୍ବବୃହତ୍ ସହବନ୍ଧନସୂତ୍ରୀ ବିଶ୍ୱବିଦ୍ୟାଳୟ ଭାବରେ ସ୍ୱତନ୍ତ୍ର ଖ୍ୟାତି ଅର୍ଜନ କରିଛି । ୨୦୧୮ ଶିକ୍ଷାବର୍ଷରେ ଚଣ୍ଡୀଖୋଲଠାରେ ଦ୍ୱିତୀୟ କ୍ୟାମ୍ପସ୍ ହୋଇ ଉତ୍ତରପିଢ଼ିଙ୍କ ନିମନ୍ତେ ସଦ୍ୟତମ ବିଦ୍ୟାର ଅଧ୍ୟୟନ କ୍ଷେତ୍ର ସୃଷ୍ଟି କରିପାରିଛି । ଏତଦ୍‌ବ୍ୟତୀତ ଦେୟଭିତ୍ତିକ ପାଠ୍ୟଧାରା (୧୭ଟି ବିଷୟରେ) ପ୍ରଚଳନ ପୂର୍ବକ ପ୍ରଲୁବ୍ଧକର ଓ ସଦ୍ୟତମ ବିକଶିତ ଜ୍ଞାନର ଶିକ୍ଷାଦାନ ଉଭୟ ପୁରାତନ ଓ ନୂତନ କ୍ୟାମ୍ପସ୍‌ରେ ଦିଆଯିବାର ବ୍ୟବସ୍ଥା ହୋଇଛି । ଆସ୍ଥା ଓ ପସନ୍ଦଭିତ୍ତିକ ପାଠ୍ୟକ୍ରମ ସହିତ ଭବିଷ୍ୟ ସମୁଜ୍ଜ୍ୱଳଧର୍ମୀ ବିଦ୍ୟାର ଅଧ୍ୟୟନ ଉପରେ ଏ ବିଶ୍ୱବିଦ୍ୟାଳୟ ଗୁରୁତ୍ୱ ଦେଇପାରିଛି । ଭାଷା ଓ ସାହିତ୍ୟ ବିଭାଗ, ମନସ୍ତତ୍ତ୍ୱ ବିଭାଗ, ପଦାର୍ଥବିଜ୍ଞାନ ବିଭାଗ, ଇଂରାଜୀ ବିଭାଗ, ଦର୍ଶନ ବିଭାଗ ଓ ବାଣିଜ୍ୟ ବିଭାଗ ଉତ୍କର୍ଷ ଅଧ୍ୟୟନ କେନ୍ଦ୍ର ଓ ବିଶ୍ୱବିଦ୍ୟାଳୟ ଆୟୋଗଙ୍କ ଦ୍ୱାରା ସ୍ୱତନ୍ତ୍ର ଅନୁଦାନପ୍ରାପ୍ତ ବିଭାଗର ଗୌରବ ଲାଭ କରିଛି । ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ୫ଟି ସହବନ୍ଧିତ ମହାବିଦ୍ୟାଳୟ ୟୁଜିସିଙ୍କ ଦ୍ୱାରା ଦକ୍ଷ ଓ ଉତ୍କର୍ଷ ଶିକ୍ଷାନୁଷ୍ଠାନର (ସିପିଇ/CPE) ମାନ୍ୟତା ପାଇପାରିଛି, ଯାହାକି ବିଶ୍ୱବିଦ୍ୟାଳୟର ଗୁଣାତ୍ମକ ପରିଚାଳନାର ପରିଚୟକୁ ପ୍ରମାଣ କରୁଛି । ବିଗତ ୭୫ ବର୍ଷଧରି ଏ ବିଶ୍ୱବିଦ୍ୟାଳୟ ଦକ୍ଷ ବୈଜ୍ଞାନିକ, ସାହିତ୍ୟିକ, ପ୍ରଶାସକ, ରାଜନେତା, ଶିକ୍ଷା ବିଶାରଦ, ଗବେଷକ, ଡାକ୍ତର, ବୈଷୟକୀ ଜ୍ଞାନର ଯନ୍ତ୍ରୀ, କଳାକାର, ସାମ୍ବାଦିକ, ଶିଳ୍ପପତି, ପରିଚାଳନା ବିଦ୍ୟାଧୂରୀଣ ପରିଚାଳକ ଓ ଆତ୍ମନିର୍ଭରଶୀଳ ବ୍ୟକ୍ତିତ୍ୱ ନିର୍ମାଣ କରିଆସୁଛି । ଏ ବିଶ୍ୱବିଦ୍ୟାଳୟର ବିଦ୍ୟାର୍ଥୀ ଦେଶ ଓ ଦେଶ ବାହାରର ପ୍ରମୁଖ ବିଶ୍ୱବିଦ୍ୟାଳୟରେ ପ୍ରାଚାର୍ଯ୍ୟ ହୋଇପାରିଛନ୍ତି । ବିଶ୍ୱବିଦ୍ୟାଳୟ ଆଚାର୍ଯ୍ୟମାନେ ଅନ୍ୟ ବିଶ୍ୱବିଦ୍ୟାଳୟକୁ ପ୍ରାଚାର୍ଯ୍ୟ, ପ୍ରାଧ୍ୟାପକ ଓ କୁଳପତି ଭାବରେ ଆସନମଣ୍ଡନ କରିଛନ୍ତି । ଐତିହାସିକ ମନ୍ମଥନାଥ ଦାସ, ଗଣିତଜ୍ଞ ରାମନାଥ

ମହାନ୍ତି, ଦାର୍ଶନିକ ଗଣେଶ୍ୱର ମିଶ୍ର, ଗୌରାଙ୍ଗ ଚରଣ ରାୟ, ମନସ୍ତତ୍ତ୍ୱବିତ୍ ରାଧାନାଥ ରଥ, ରାଜନୀତିବିଜ୍ଞାନୀ ଶ୍ରୀରାମ ଚନ୍ଦ୍ର ଦାଶ, ଅର୍ଥଶାସ୍ତ୍ରୀ ସୁଧାକର ପଣ୍ଡା, ପ୍ରତ୍ନତତ୍ତ୍ୱବିତ୍ କରୁଣାସାଗର ବେହେରା, ଓଡ଼ିଶୀ ନୃତ୍ୟଶିଳ୍ପୀ ପ୍ରଫେସର ପ୍ରିୟମ୍ବଦା ମହାନ୍ତି ହେଜ୍‌ମାଦୀ, ବାଣିଜ୍ୟବିଦ୍ୟାର ସାହିତ୍ୟିକ ସୂର୍ଯ୍ୟନାରାୟଣ ଦାଶ, ସାହିତ୍ୟିକ ଡକ୍ଟର ଗଣେଶ୍ୱର ମିଶ୍ର, ଡକ୍ଟର ନିତ୍ୟାନନ୍ଦ ଶତପଥୀ, କୃଷ୍ଣପ୍ରସାଦ ମିଶ୍ର, ଗଣେଶ୍ୱର ମିଶ୍ର, ଫକୀରମୋହନ ସାହୁ, ବିଜୟକୁମାର ଶତପଥୀ, ଡକ୍ଟର ନାରାୟଣ ସାହୁ, ନୃତତ୍ତ୍ୱବିତ୍ ଲକ୍ଷ୍ମଣ କୁମାର ମହାପାତ୍ର, ବୈଜ୍ଞାନିକ ବସନ୍ତ କୁମାର ବେହୁରା, ଡକ୍ଟର ପ୍ରାଣକୃଷ୍ଣ ପରିଜା, ଡକ୍ଟର ସଦାଶିବ ମିଶ୍ର, ଡକ୍ଟର ଶିବପ୍ରସାଦ ଅଧିକାରୀ, ଡକ୍ଟର ଶିବପ୍ରସାଦ ରଥ, ଡକ୍ଟର ପ୍ରଦୀପ୍ତ କୁମାର ତ୍ରିପାଠୀ, ଡକ୍ଟର ପ୍ରଦୀପ କୁମାର ଚାନ୍ଦ, ଡକ୍ଟର ଅଲେଖ ଚନ୍ଦ୍ର ଷଡଙ୍ଗୀ, ଡକ୍ଟର ଗୋପୀନାଥ ମହାପାତ୍ର, ଡକ୍ଟର ପ୍ରଫୁଲ୍ଲ କୁମାର ମିଶ୍ର, ଡକ୍ଟର ମଧୁମିତା ଦାଶ, ଡକ୍ଟର ଅଜିତ କୁମାର ମହାନ୍ତି, ଡକ୍ଟର ଯତୀନ୍ଦ୍ର କୁମାର ମହାନ୍ତି, ଡକ୍ଟର ଯତୀନ କୁମାର ନାୟକ, ଡକ୍ଟର ପ୍ରକାଶ କୁମାର ସାହୁ ଓ ଡକ୍ଟର ରୀତା ରାୟ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ବିଶ୍ୱବିଦ୍ୟାଳୟର ଶିକ୍ଷକ ଓ ଛାତ୍ର ଭାବରେ ଶ୍ରୀଯୁକ୍ତ ସୁବାସ ପାଣି, ଶ୍ରୀଯୁକ୍ତ ଅଜିତ କୁମାର ତ୍ରିପାଠୀ ଓ ଶ୍ରୀଯୁକ୍ତ ତରୁଣକାନ୍ତି ମିଶ୍ର ମୁଖ୍ୟ ଶାସନ ସଚିବ ସ୍ତରକୁ ଭାରତୀୟ ପ୍ରଶାସନିକ ସେବାବୃତ୍ତିରେ ଯାଇପାରିଛନ୍ତି । ଅନୁରୂପ ଭାବରେ ଶ୍ରୀଯୁକ୍ତ ହୃଷୀକେଶ ପଣ୍ଡା, ଶ୍ରୀଯୁକ୍ତ ପ୍ରଫୁଲ୍ଲ ମିଶ୍ର ଓ ରୂପା ମିଶ୍ର ସର୍ବଭାରତୀୟ ପ୍ରଶାସନିକ ପ୍ରତିଯୋଗିତାରେ ପ୍ରଥମ ହୋଇ ଏ ବିଶ୍ୱବିଦ୍ୟାଳୟ ପ୍ରଜ୍ଞାବୋଧକୁ ରାଷ୍ଟ୍ରପ୍ରସାରୀ କରିପାରିଛନ୍ତି । ସାହିତ୍ୟିକ ଭାବରେ ତରୁଣକାନ୍ତି ମିଶ୍ର, ହୃଷିକେଶ ପଣ୍ଡା, ହୃଷିକେଶ ମଲ୍ଲିକ, ହରପ୍ରସାଦ ଦାସ, ଶତ୍ରୁଘ୍ନ ପାଣ୍ଡବ, ପ୍ରବାସିନୀ ମହାକୁଡ, ବାଉରିବନ୍ଧୁ କର, ସଂଘମିତ୍ରା ମିଶ୍ର, ସୁନୀତି ଦେବୀ, ବିଜୟ ନାୟକ, ଜଗଦୀଶ ମହାନ୍ତି, ଅପର୍ଣ୍ଣା ମହାନ୍ତି ପ୍ରମୁଖ ଏ ବିଶ୍ୱବିଦ୍ୟାଳୟକୁ ଗଣପ୍ରିୟ ଓ ଗଣସମ୍ମାନପ୍ରଦ କରିପାରିଛନ୍ତି ।

ମୋଟ ଉପରେ ଓଡ଼ିଶାର ବିକାଶଧାରାରେ ଓ ପ୍ରାଞ୍ଚିକ ପରିଚିତି ନିର୍ମାଣରେ ଆଲୋକ–ବର୍ତ୍ତିକାବତ୍ ଦାୟବଦ୍ଧ ଭୂମିକା ନିର୍ବାହ କରିଆସୁଥିବା ଉତ୍କଳ ବିଶ୍ୱବିଦ୍ୟାଳୟ ସମ୍ମାନନୀୟ ବିଶ୍ୱବିଦ୍ୟାଳୟ ଆୟୋଗ, ନୂଆଦିଲ୍ଲୀଙ୍କ ଦ୍ୱାରା ସ୍ୱତନ୍ତ୍ର ସୂଚକ ସ୍ୱାୟତ୍ୱ କ୍ଷମତାପ୍ରାପ୍ତ ବିଶ୍ୱବିଦ୍ୟାଳୟ ହୋଇପାରିଛି ।

**ନିଷ୍କର୍ଷ: ବାଣୀବିହାରର ଦେହରେ.. ମନରେ... ସଂଭାବନାର ସ୍ୱପ୍ନରେ...**

୧୯୬୨ରୁ ୨୦୧୮– ଦୀର୍ଘ ୫୬ ବର୍ଷର ଯାତ୍ରା ଶେଷ କରିଛି ବାଣୀତୀର୍ଥ ବାଣୀବିହାର । ୧୯୪୩ ମସିହା ନଭେମ୍ବର ୨୭ ତାରିଖରେ ରେଭେନ୍ସା ମହାବିଦ୍ୟାଳୟରେ ଜନ୍ମ ହୋଇଥିବା ଉତ୍କଳ ବିଶ୍ୱବିଦ୍ୟାଳୟ ତାରୁଣ୍ୟର ଚମକ ନେଇ ଆସିଥିଲା ୧୯୬୨–୬୩ରେ ବାଣୀପୀଠ ବାଣୀବିହାର କୋଳକୁ । ବିପୁଳାଚ ବକ୍ଷ ବିସ୍ତାରୀ ଉତ୍କଳର ଜ୍ଞାନଶକ୍ତିର ତାରୁଣ୍ୟକୁ ସଶ୍ରଦ୍ଧ ଦେହରେ ଧାରଣ କରି ନୂଆନୂଆ ସମ୍ଭାବନାର ପୋଷାକ ପିନ୍ଧାଇ ନୀତି ପରିଶୁଦ୍ଧ କରି ଉତ୍କଳ ବିଶ୍ୱବିଦ୍ୟାଳୟକୁ ବାଣୀବିହାର ପରିସର ଏକ ପ୍ରବୋଧିତ ସତ୍ତାରେ ପରିଣାମ ଦେଇଚାଲୁଥିଲା । ୧୯୮୦ ବେଳକୁ ଏହାର ଶିବସଂକଳ୍ପୀ ଅବଦାନ ଏହାକୁ ଓଡ଼ିଶାର ସାଧାରଣ ମାନସିକତାରେ ଏକ ପବିତ୍ର ଶିକ୍ଷାକ୍ଷେତ୍ରର ତୀର୍ଥପୁର ଭାବରେ ଗ୍ରହଣ କରିନେବାର ତରଙ୍ଗ ଖେଳାଇ ଦେଇଥିଲା । ନୃତତ୍ତ୍ୱ, ଦର୍ଶନ, ମନସ୍ତତ୍ତ୍ୱ, ପରିସଂଖ୍ୟାନ, ପ୍ରାୟୋଗିକ ଅର୍ଥନୀତି, ଇତିହାସ, ସଂସ୍କୃତ ଓ ରାଜନୀତିବିଜ୍ଞାନ– ଏପରିକରି ୮ଟି ବିଦ୍ୟାବୋଧକୁ ନେଇ ପରିକଳ୍ପିତ ବାଣୀବିହାର ବକ୍ଷକୁ ପରବର୍ତ୍ତୀ କାଳରେ ଆଉ ୧୯ଟି ବିଭାଗ ଆସିଛି । ଐତିହ୍ୟ, ସ୍ୱାଭିମାନ, ସାଂସ୍କୃତିକ ବାସନା ଓ ଭୌମିକ ଅସ୍ମିତାର ପ୍ରତୀକ ରୂପୀ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ (ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ପ୍ରଥମ ଅଧ୍ୟାପକତ୍ୱ ଓ ଡକ୍ଟର ବଂଶୀଧର ମହାନ୍ତିଙ୍କ ପ୍ରାଚାର୍ଯ୍ୟତ୍ୱକୁ ଆଧାର କରି) ପ୍ରଫେସର ଜାକିର୍ ହୁସେନ୍‌ଙ୍କ ପରାମର୍ଶରେ (ଭାରତର ରାଷ୍ଟ୍ରପତି) ୧୯୬୯ ମସିହାରେ ଏହାର କୋଳକୁ ବିଭାତିଗୁଣରେ ମଣ୍ଡନ କରିପାରିଲା । ମାତ୍ର ଗୋଟିଏ ସହସଂଯୁକ୍ତ ମହାବିଦ୍ୟାଳୟ (ମଧୁସୂଦନ ଲ' କଲେଜ)କୁ ନେଇ ଓ ପରେ ପାଞ୍ଚଗୋଟି ମହାବିଦ୍ୟାଳୟକୁ ନେଇ ଶିକ୍ଷାନିବନ୍ଧୀ ବିଶ୍ୱବିଦ୍ୟାଳୟ ରୂପେ ଆପଣାକୁ ପରିଚିତ କରାଇବାର ରୁଦ୍ରସଂକଳ୍ପ ନେଇଥିବା ଉତ୍କଳ–ବିଶ୍ୱବିଦ୍ୟାଳୟ ସଂପ୍ରତି ଭାରତୀୟ ଶିକ୍ଷାଧାରାରେ ବହୁ ପାକ୍ଷିକ ଶିକ୍ଷାଢାଞ୍ଚାର

ମହାବିଦ୍ୟାଳୟକୁ ଅନୁବନ୍ଧନ ସୂତ୍ରରେ ବାନ୍ଧିରଖି ସର୍ବୋତ୍ତମ ସହବନ୍ଧନ–ନିୟାମକୀ ବିଶ୍ୱବିଦ୍ୟାଳୟର ସୁଖ୍ୟାତି ପାଇପାରିଛି । ପ୍ରତିବର୍ଷ ୫୦୦୦ରୁ ଊର୍ଦ୍ଧ୍ୱ ଯୁବପିଢିଙ୍କୁ ଜୀବନ ବିତାଣର ମହତ୍ତମ ସ୍ୱପ୍ନ, ନୀଳାଭ ଚେତନା, ତରଙ୍ଗାୟିତ ଉତ୍ସାହ ଓ ପ୍ରୋତ୍ସାହନଶୀଳ ଆତ୍ମନିର୍ଭରଶୀଳତାର ବିଶ୍ୱାସ ଏ ଶିକ୍ଷାତୀର୍ଥ ବିତରି ଦେଉଛି । ପ୍ରାୟୋଜନିକ ଓ ଆନୁଷଙ୍ଗିକ ସୁବିଧା–ସୁଯୋଗ–ସୁଲଭତା ଥିବା ୧୪ଗୋଟି ଛାତ୍ର–ଛାତ୍ରୀ ନିବାସ, ବିଶ୍ୱବିଦ୍ୟାଳୟର ପ୍ରାଣପ୍ରତିଷ୍ଠାତା ଗଜପତି କୃଷ୍ଣଚନ୍ଦ୍ରଙ୍କ ନାମରେ ଥିବା ସୁରୁଚିସମ୍ପନ୍ନ ପ୍ରେକ୍ଷାଳୟ, ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ନାମରେ ପ୍ରତିଷ୍ଠିତ ପାଠାଗାର, ବିଜୁ ପଟ୍ଟନାୟକଙ୍କ ନାମରେ ନାମିତ କ୍ରୀଡାପ୍ରାଙ୍ଗଣ, ସୁଲଭ ବ୍ୟାୟାମଶାଳା, ଆଭ୍ୟନ୍ତରିକ କ୍ରୀଡାକ୍ଷେତ୍ର ପ୍ରାଶାସନିକ ଅଟ୍ଟାଳିକା ସହିତ ବିଭିନ୍ନ ବିଭାଗର ଅଟ୍ଟାଳିକାକୁ ନେଇ ସର୍ବମୋଟ ସର୍ବାଧୁନିକ ସୁବିଧାଲବ୍ଧ ୫୪ଗୋଟି ଅଟ୍ଟାଳିକା ପ୍ରସ୍ତୁତିକୁ ନେଇ ବାଣୀବିହାରର ପରିସର ଏବେ ଜାତୀୟ ଚରିତ୍ର, ଅନ୍ତର୍ଜାତୀୟ ପ୍ରଜ୍ଞାଶକ୍ତି, ନବନ୍ୟାୟିକ ଗବେଷଣାତ୍ମକ ସିଦ୍ଧାନ୍ତ, ନବଚେତନା ନିର୍ମାଣର ବୃହତ୍ତମ କାର୍ଯ୍ୟଶାଳା ଓ ଭବିଷ୍ୟ ଉତ୍ତରଦାୟାଦ ପ୍ରସ୍ତୁତିର ମୂଲ୍ୟବୋଧକର ଶିଳ୍ପଶାଳାରେ ରୂପାନ୍ତରିତ ହୋଇଯାଇଛି । ପ୍ରାକ୍ତନ କୁଳପତି ବିଶିଷ୍ଟ ପ୍ରୋତ୍ସାହୀ ଶିକ୍ଷାବିତ୍ ଡକ୍ଟର ଅଶୋକ କୁମାର ଦାସଙ୍କ ତତ୍ତ୍ୱାବଧାନରେ ୧୯୧୬ ମସିହାରେ ଜାତୀୟ ମୂଲ୍ୟାଙ୍କ ମାନ୍ୟତା ନିର୍ଦ୍ଧାରଣ ଓ ଅଧିସ୍ୱୀକୃତି ପ୍ରଦାନକାରୀ ପରିଷଦ (ନାକ୍–ୟୁଜିସି)ଙ୍କ ତୁଲ୍ୟମାନକରେ ବାଣୀବିହାର–ଉତ୍କଳ ବିଶ୍ୱବିଦ୍ୟାଳୟ ଏ+ ଆସ୍ଥାମୂଲ୍ୟାଙ୍କ ପାଇ ଏହାର ସତେଜ ଉଜ୍ଜୀବନତାକୁ ଜାତୀୟସ୍ତରରେ ସଗୌରବ ପ୍ରମାଣ, ବିସ୍ତାର ଓ ପ୍ରତିଷ୍ଠା ଦେଇପାରିଛି । କେଉଁଠିକାର ବିଦ୍ୟାର୍ଥୀ– ବାଣୀବିହାରର/ କେଉଁଠିକାର ଗବେଷକ–ବାଣୀବିହାରର/କେଉଁଠିକାର ଆଚାର୍ଯ୍ୟ–ବାଣୀବିହାରର/କେଉଁଠିକାର ବୃତ୍ତିଧାରୀ– ବାଣୀବିହାରର ଏପରି ଏକ ପରିଚିତି ଦେବାର ଆତ୍ମବିଶ୍ୱାସସମ୍ପନ୍ନ ପରିଚୟ ଓଡ଼ିଆ ଜାତିକୁ ଓଡ଼ିଶାଠିଁ ଭୂଗୋଳରେ ବାଣୀବିହାର–ଉତ୍କଳ ବିଶ୍ୱବିଦ୍ୟାଳୟ ଦେଇପାରିଛି ଓ ଓଡ଼ିଶୀ ପ୍ରଜ୍ଞାର ଦକ୍ଷତାକୁ ନାନା ବାଗରେ ଖେଳାଇପାରିଛି । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ (ୟୁଜିସି) ବିଶ୍ୱବିଦ୍ୟାଳୟ ଉତ୍କର୍ଷବର୍ଗୀୟ ତାଲିକା–୧ରେ ଅନ୍ତର୍ଭୁକ୍ତ ହୋଇ ଉତ୍କଳ ବିଶ୍ୱବିଦ୍ୟାଳୟ ସର୍ବଭାରତୀୟ ସ୍ତରରେ ୨୫ଗୋଟି ଉତ୍ତମ ଓ ଉନ୍ନତ ଅନୁଷ୍ଠାନ ମଧ୍ୟରେ ଅନ୍ୟତମ ଓ ଅନନ୍ୟତମ ହୋଇପାରିଛି । ଦୀର୍ଘ ୭୫ ବର୍ଷଧରି ନିରବଚ୍ଛିନ୍ନ ପ୍ରକ୍ରିୟାରେ ଉନ୍ନତ–ଶିକ୍ଷାଦାନ ଓ ଗବେଷଣାତ୍ମକ ମାନକ ରକ୍ଷା କରି ଆସୁଥିବାରୁ ଆଜି ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଶାର ପ୍ରଜ୍ଞା ପରିସର ଭିତରକୁ ଜାତୀୟ ଓ ଅନ୍ତର୍ଜାତୀୟ ମେଧାଶକ୍ତିଙ୍କୁ ଆକର୍ଷି ଆଣିବାରେ ସଫଳ ଓ ସମର୍ଥ ହୋଇପାରିଛି ।

ଶିକ୍ଷକ, କର୍ମଚାରୀ ଓ ମୌଳିକ ଆନୁଷଙ୍ଗିକ ବ୍ୟବସ୍ଥାର ଅଭାବସତ୍ତ୍ୱେ ଓଡ଼ିଶାର କର୍ମସଂସ୍କୃତି, ଜ୍ଞାନସଂସ୍କୃତି ଓ ବୋଧସଂସ୍କୃତିର ମୂଳ–ବାଣୀ–ପିଣ୍ଡ ଭାବେ ୧୯୪୩ ମସିହାର ପ୍ରତିଷ୍ଠାକାଳୀନ ସ୍ୱପ୍ନକୁ ସଶକ୍ତ ମଞ୍ଜୁର ଦେଇ ଗଢିଚାଲିଛି ଏବଂ ବାଣୀବିହାର ଓଡ଼ିଶୀ ଭାବନା ଓ ବିଶ୍ୱାସର ବିହାର–ଏହି କଥାକୁ ସସଂକଳ୍ପ ସୂଚେଇ ଚାଲିଛି । ସେଦିନ ହଥର୍ଣ୍ଣ ସାହେବ କହିଥିଲେ– ଏ ବିଶ୍ୱବିଦ୍ୟାଳୟ ଓଡ଼ିଶାର ଆକାଂକ୍ଷା ଓ ଚେତନାର ଶକ୍ତି ହେବ । ହବାକ୍ ସାହେବ ମଧ୍ୟ ଓଡ଼ିଶା ନିମିତ୍ତ ଏକ ଜ୍ଞାନ ନିର୍ମାଣର ବିଶ୍ୱବିଦ୍ୟାଳୟ ପାଇଁ ଆଶାବ୍ୟକ୍ତ କରି ଦର୍ଶାଇଥିଲେ– ନୂଆ ଜୀବନର ଓ ନୂଆ ସକାଳର ସଂସର୍ଗୀ ସଙ୍କେତ ହେବା ଭଳି ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷାଭାଷୀମାନେ ଇଚ୍ଛନ୍ତି ।

ପ୍ରଫେସର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

